ବୈଷ୍ଣବ କବି ଦାଶରଥିଦାସଙ୍କ ବିରଚିତ

# ବ୍ରଜବିହାର



ପ୍ରକାଶକ

ଶ୍ରୀହରିସଂକୀର୍ତ୍ତନ ପ୍ରକାଶନୀ

ଓଡ଼ିଆ ବଜାର, କଟକ-୧

୧୯୮୨

ଶ୍ରୀହରିସଂକୀର୍ତ୍ତନ ଗ୍ରନ୍ଥମାଳା-୧୪

ବୈଷ୍ଣବ କବି ଦାଶରଥିଦାସଙ୍କ ବିରଚିତ

# ବ୍ରଜବିହାର



ପ୍ରକାଶକ
ଶ୍ରୀହରିସଂକୀର୍ତ୍ତନ ପ୍ରକାଶନୀ
ଓଡ଼ିଆ ବଜାର, କଟକ-୧
୧୯୮୬

ନୂତନ ସଂସ୍କରଣ

# କବି ପରିଚୟ

ଓଡ଼ିଶାର ପୁରପଲ୍ଲୀରେ ପ୍ରତ୍ୟେକ ଭକ୍ତଙ୍କ କଣ୍ଠରେ ସ୍ଥାନ ପାଇଛି ଦାଶରଥି ଦାସଙ୍କ 'ବ୍ରଜବିହାର' କାବ୍ୟ । କବି ରଣପୁରରେ ସିଷ୍ଟି କରଣ କୁଳରେ ଜନ୍ମ ଗ୍ରହଣ କରିଥିବା ବିଷୟ ସେ ନିଜେ ସ୍ୱୀକାର କରିଛନ୍ତି । ଯଥା—

କାଶ୍ୟପ ଗୋତ୍ରେ ହୋଇଜାତ । ସିଷ୍ଟି କରଣ କୁଳେ ଖ୍ୟାତ ॥

ରଣପୁର ମଣ୍ଡଳେ ମୋର ବାସ । ନାମ ବିଦିତ ଦାଶରଥି ଦାସ ॥

ଦାଶରଥି ଦାସ ଗଜପତି ଗୋପୀନାଥ ଦେବ ( ଖ୍ରୀ ୧୭୨୦-୨୭ ) ଓ ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ ( ଖ୍ରୀ ୧୭୨୭-୩୭ ) ଙ୍କ ସମସାମୟିକ କବି ଥିବା ବିଷୟ ସେ ନିଜ କାବ୍ୟରେ ଉଲ୍ଲେଖ କରିଛନ୍ତି । କବି ବ୍ରଜବିହାର କାବ୍ୟ ଗୋପୀନାଥ ଦେବଙ୍କ ତିନି ଅଙ୍କ ଅର୍ଥାତ ଖ୍ରୀ ୧୭୨୦ରେ ଆରମ୍ଭ କରି ରାମଚନ୍ଦ୍ର ଦେବଙ୍କ ଆଠ ଅଙ୍କ ବା ଖ୍ରୀ ୧୭୩୧ରେ ସମାପ୍ତ କରିଥିଲେ ବୋଲି କାବ୍ୟର ତୃତୀୟ ଓ ଶେଷ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି ।

"ଗୋପୀନାଥ ଦେବ ତିନି ଅଙ୍କ ମାର୍ଗଶୀର ।
ପାଢ ଭଗବାନପଦଭ୍ରମରବର ॥
ସଦାବର୍ତ୍ତି ସଦାମତି ହରି ଭଗତି ।
ଭୋଗମଣ୍ଡପଗୁଣ୍ଡିଚାମୋହନ କୀର୍ତ୍ତି ॥
ଏହି ସମୟେ ଏ ବୋଲି ହେଲା ସମ୍ପୂର୍ଣ୍ଣ ।"

"ଚାରିସହସ୍ର ଆଠଶତ ବତିଶ । କଳିଯୁଗ ଭୋଗ ଏତେ ଦିବସ ॥
ଶକ ଅବଦ ଷୋଳଶ ତେପନ । ରାମଚନ୍ଦ୍ର ଦେବ ମହାରାଜନ ॥
ଆଠ ଅଙ୍କ କୁମାର ପୌର୍ଣ୍ଣମୀରେ । ବ୍ରଜ ବିହାର ଗ୍ରନ୍ଥ ସମ୍ପୂର୍ଣ୍ଣରେ ॥"

କବିଙ୍କୁ ବ୍ରଜରସିକ ଭକ୍ତ ଶିରୋମଣି ରୂପେ ଓ ଏକ ଆଦର୍ଶ ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ରୂପେ ଗଢ଼ିବାରେ ମୂଳ ପୁରୁଷ—ଗୁରୁ କୃଷ୍ଣ ଦାସ । ତେଣୁ କାବ୍ୟର ବହୁ ସ୍ଥାନରେ ତାଙ୍କୁ ଭକ୍ତି ଅର୍ଘ୍ୟ ଅର୍ପଣ କରିଛନ୍ତି । ଯଥା "ଗୁରୁଦେବ କୃଷ୍ଣଦାସ ପଦେ ସେବି" ( ୨ୟବୋଲି ) "କୃଷ୍ଣଦାସ ଗୋସାଇଁ ଚରଣ ଆଶ୍ରୟେ । ଦାଶରଥି ଦାସ ସେ ସ୍ମରି ହୃଦୟେ ॥" (୪ର୍ଥବୋଲି) "ଶ୍ରୀଗୁରୁ କୃଷ୍ଣ ଗୋସାଇ ଚରଣ ପ୍ରସାଦୁଁ । ଏହି ପ୍ରେମଲତା ବିସ୍ତାର କରି ହୃଦୟ-କନ୍ଦୁ ॥ ଦୟାକରି ମୋତେ କର୍ଣ୍ଣରନ୍ଧ୍ରେ ହୃଦୟ ସ୍ଥଳରେ । କୃଷ୍ଣ ନାମବୀଜ ରୋପି ମୋତେ କରୁଣା ଜଳରେ" ॥ ଇତ୍ୟାଦି···କବିଙ୍କ ପ୍ରଦତ୍ତ ଗୁରୁ ପ୍ରଣାଳୀରୁ ସେ ବକ୍ରେଶ୍ୱର ପରିବାର ଓ ରାଧାକାନ୍ତ ମଠ ସହିତ ସମ୍ବନ୍ଧାନ୍ୱିତ ବୋଲି ଜଣାଯାଏ । ରାଧାକାନ୍ତ ମଠର ମହନ୍ତ ପରମ୍ପରାରେ ବକ୍ରେଶ୍ୱର ପଣ୍ଡିତ>ଗୋପାଳ ଗୁରୁ ଗୋସ୍ୱାମୀ>ଧ୍ୟାନଚନ୍ଦ୍ର ଗୋସ୍ୱାମୀ>ବଳଭଦ୍ର ଗୋସ୍ୱାମୀ ଥିବା ବେଳେ କବିଙ୍କ ପରମ ଗୁରୁଦେବ ହୋଇଛନ୍ତି ଧ୍ୟାନଚନ୍ଦ୍ର ଗୋସ୍ୱାମୀଙ୍କ ଶିଷ୍ୟ ପୁରୁଷୋତ୍ତମ ଦାସ ଗୋସ୍ୱାମୀ । କବି ଏହି ଗୁରୁ ପ୍ରଣାଳୀ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀଚୈତନ୍ୟ ଦେବଙ୍କ ସମସାମୟିକ ଓ ପରବର୍ତ୍ତୀ କାଳରେ ଚୈତନ୍ୟ ପନ୍ଥୀ ନିଜଗୁରୁବର୍ଗଙ୍କର ମହିମା ଆଖ୍ୟାନରେ ବହୁ ଗୀତିକେ ଉପାଦାନ ଭାବେ ଦେଇଛନ୍ତି । ଯଥା—

"ସଦା ଶରଣ ଚରଣ ତଳେ ତାହାର । ବକ୍ରେଶ୍ୱର ପଣ୍ଡିତ ସେବକ ଯାହାର ॥
ସେହୁ ସଖୀ ଭାବରେ ଗାନ୍ଧାର ରସରେ । ନାମେ ନୃତ୍ୟ ଚଉବଂଶେ ବିହାର କରେ ॥
ମୁଁ ଆଶ୍ରିତ ଅବଲମ୍ବ ତାଙ୍କ ଚରଣେ । ଗୁରୁ ଗୋପାଳ ଗୋସାଇଁ ଜୀବ କାରଣେ ॥
ଏହୁ ଗୋସାଇଁ ଷଣ ଭଙ୍ଗୁର ବପୁରେ । ମହାପ୍ରଭୁ ନାମ ଉଚ୍ଚେ ପ୍ରଚାର କରେ ॥
ଭାଲେ ହରି ପାଦାକୃତ ତିଳକ ରଚେ । ଅଭିରାମ ଦଣ୍ଡବତ ମରନ୍ତୁ ବାଛେ ॥
ଏହି ପରମ୍ପରକୁ ନିତ୍ୟେ ମୋ ସୁମରଣ । ଧ୍ୟାନାନନ୍ଦ ଆଶ୍ରମ ସେଣେ ଚରଣ ॥
ଏହାଙ୍କର ମହିମା ଜଗତେ ବିଦିତ । କୃଷ୍ଣ ଚରଣ ଧ୍ୟାନ ସଦା ପ୍ରମୋଦିତ ॥
ପରାତ୍ପର ଗୁରୁ ଏହୁ ଶରଣ ମୁହିଁ । ପୁରୁଷୋତ୍ତମ ଦାସ ଯାର ଅନୁଗାମୀ ॥
ଏହୁ ହରି ଭକତି ଶାସ୍ତ୍ରରେ ବିଜ୍ଞତା । ପ୍ରାଣୀ ନିସ୍ତାରଣେ କୃଷ୍ଣରସେ ଷମତା ॥
ଗୁରୁ ପରମଗୁରୁ ପାଦେ ମୋ ବିଶ୍ୱାସ । ଏହାଙ୍କର କୃପାପାତ୍ର ଶ୍ରୀକଣ୍ଠ ଦାସ ॥
ରାଧାଗୋବିନ୍ଦ ସେବାପାଠୀ ଦଣ୍ଡିବେ । ସାଧୁସେବା କୃଷ୍ଣଯାତ୍ରା ମହୋତ୍ସବେ ॥
ସବ ଗୋଷ୍ଠୀ ରଚନ ମୋ ପିଣ୍ଡ କାରଣ । ସଦା ଗୁରୁ ଗୋସାଇଁ ଚରଣେ ଶରଣ ॥"

ଦାସରଥି ଦାସଙ୍କ 'ବ୍ରଜବିହାର' ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସଂକ୍ଷିପ୍ତ ଭାବରେ ଏବଂ ଶ୍ରୀରାଧା ଓ ଗୋପୀମାନଙ୍କ ସହିତ କୃଷ୍ଣଲୀଳାଦି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ କାବ୍ୟର ମଙ୍ଗଳାଚରଣରେ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ବନ୍ଦନା କରିଛନ୍ତି ଏହି ବନ୍ଦନାରେ ସେ ସାକ୍ଷାତ୍ରୂପ କୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କୁ ଅନୁସରଣ କରିଛନ୍ତି । କବିରାଜ ଗୋସ୍ୱାମୀ ଚରଣାମୃତରେ ମଙ୍ଗଳାଚରଣରେ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ଯୁଗପତ୍ ଉଦୟମାନ ଚନ୍ଦ୍ର ସୂର୍ଯ୍ୟ ରୂପ ବର୍ଣ୍ଣନା କରି ଏକ ଅଦ୍ଭୁତ ଶ୍ଲୋକ ରଚନା କରି ତାହାର ପୟାର ଅନୁବାଦ ମଧ୍ୟ ନିଜେ ରଚନା କରିଛନ୍ତି । ଯଥା—

"ବ୍ରଜ ସେ ବିହରେ ପୂର୍ବେ କୃଷ୍ଣ ବଳରାମ । କୋଟି ସୂର୍ଯ୍ୟ ଚନ୍ଦ୍ର ଜିଣି ଦୋହାର ନିଜଧାମ ॥
ସେଇ ଦୁଇ ଜଗତରେ ହଇଲେ ଦୟାସ୍ଥ । ଗୌଡ଼ ଦେଶେ ପୂର୍ବ ଶୈଳେ କଇଲ ଉଦୟ ॥
ଶ୍ରୀକୃଷ୍ଣ ଚୈତନ୍ୟ ଆର ପ୍ରଭୁ ନିତ୍ୟାନନ୍ଦ । ଯାହାର ପ୍ରକାଶେ ସର୍ବ ଜଗତ ଆନନ୍ଦ ॥
ସୂର୍ଯ୍ୟ ଚନ୍ଦ୍ର ହରେ ଯୈଛେ ସବ ଅନ୍ଧକାର । ବସ୍ତୁ ପ୍ରକାଶିୟା କରେ ଧର୍ମର ପ୍ରଚାର ॥
ଏଇ ମତ ଦୁଇ ଭାଇ ଜୀବେର ଅଜ୍ଞାନ । ତମୋ ନାମ କରି କରେ ବସ୍ତୁ ତତ୍ତ୍ୱ ଜ୍ଞାନ ॥"

ଏଇ ପ୍ରସଙ୍ଗରେ କବିରାଜ ଗୋସ୍ୱାମୀ ଭାଗବତ ଧର୍ମପ୍ରୋଜ୍ଝିତ କୈତବୋଽତ୍ର ଶ୍ଳୋକ ଉଦ୍ଧାର କରି ଭାଗବତ ଧର୍ମ ହେଉଛି ଅକୈତବ ଶୁଦ୍ଧ କୃଷ୍ଣଭକ୍ତି ଧର୍ମ ବୋଲି ପ୍ରତିପାଦନ କରିଛନ୍ତି । କବି ଦାସରଥି ଦାସ ମଧ୍ୟ ସ୍ୱକୀୟ ଦୃଷ୍ଟି କୋଣରୁ ଏହି ବିଷୟକୁ ରୂପଦାନ କରିଛନ୍ତି । ଯଥା—

"ଭାଗବତ ଭକ୍ତିଯୋଗ ସୂର୍ଯ୍ୟ ଉଦୟ କରାଏ ।
କ୍ଷୁଦ୍ର ଦୀକ୍ଷା ଖଦ୍ୟୋତକ ପାଷାଣ୍ଡ ପଳାଏ ॥
ଉଦେ ଦ୍ୱିଜରୂପେ ନବଦ୍ୱୀପେ ନଦିଆ ନଗରେ ।
ନିଜ ପାର୍ଷଦ ଦେବଗଣ ଯେନ ସଙ୍ଗରେ ॥
ଶାସ୍ତ୍ର ଅନୁସାରେ ଦୃଷ୍ଟାନ୍ତରେଣ ଜାଣିବା ॥
ନିତ୍ୟାନନ୍ଦ-ଚୈତନ୍ୟ ଜିଣି ନୃପେନ ଚନ୍ଦ୍ରମା ।
ନିଜ ମଣ୍ଡଳରେ ସ୍ଥିତ ପାର୍ଷଦ ସଙ୍ଗରେ ॥
କେତେବେଳେ ପ୍ରାଚୀ କେତେବେଳେ ପଶ୍ଚିମ ଦିଗରେ ॥
ଲୋକ ପାବନ ନିମନ୍ତେ କରି ପୃଥ୍ୱୀ ପର୍ଯ୍ୟଟନ ।
କଲି ପୂର୍ବ ସନ୍ଧ୍ୟାରେଣ ପୁଷ୍ପବନ୍ତ ଦରଶନ ॥"

ଏହାପରେ କବି ଶ୍ରୀଚୈତନ୍ୟ ଦେବଙ୍କୁ ଏକ ନଦୀ ଓ ବୋଇତାଳ ବା ନାବିକ ରୂପେ ବର୍ଣ୍ଣନା କରିଛନ୍ତି । ଏହି ଦୁଇଟି କଳ୍ପନାର ମୂଳ ଉତ୍ସ ହେଉଛି ଲୋଚନ ଦାସ ଓ ନରୋତ୍ତମ ଦାସଙ୍କ ପଦ୍ୟାବଳୀ । ଶ୍ରୀଲୋଚନ ଦାସ ନିତ୍ୟାନନ୍ଦଙ୍କ ମହିମା ବର୍ଣ୍ଣନା ପ୍ରସଙ୍ଗରେ ପଦ୍ୟାବଳୀରେ ଲେଖିଛନ୍ତି—

ନିତାଇ ଗୁନମନି ଆମାର ନିତାଇ ଗୁନମନି । ଆନିୟା ପ୍ରେମେର ବନ୍ୟା ଭସାଲ ଅବନୀ ॥

ପ୍ରେମେର ବନ୍ୟା ଲୟା ନିତାଇ ଆଇଲା ଗୌଡ଼ଦେଶେ । ଡୁବିଲେ ଭକତ ଜନ ଦୀନ ହୀନ ଭସେ ॥

ନୀଳାଚଳରୁ ପ୍ରେମବନ୍ୟା ଧରି ନିତ୍ୟାନନ୍ଦ ଗୌଡ଼ଦେଶକୁ ଆସିଥିଲେ ମଧ୍ୟ ଶ୍ରୀଲୋଚନ ଦାସ ନୀଳାଚଳରେ ପ୍ରବାହିତ ସେହି ନଦୀ ସମ୍ବନ୍ଧରେ କବିତାରେ କିଛି ଉଲ୍ଲେଖ ନଥିଲେ ବି ଦାଶରଥି ଦାସଙ୍କ ରଚନାରେ ତାହାର ପୂର୍ଣ୍ଣଚିତ୍ର ମିଳିଥାଏ ।

"ସ୍ୱନାମରେ ନଦୀ ହୋଇ କାନ୍ତ ବଣରେ ॥

ଲୋକ ପାବନୀ ଅବନୀ-ସାଗର ଭେଦ । ବନ୍ଦେ ଭକ୍ତ ବଇଷ୍ଣବ ଚନ୍ଦ୍ର ସଂପାଦ ॥
ଊର୍ଦ୍ଧ୍ୱପୁଣ୍ଡ୍ର ପୁଲିନ ଚନ୍ଦନାଦି ପଙ୍କେ । ନଳିନାକ୍ଷ ମାଳା ମୋହେ ହୃଦୟ ଅଙ୍କେ ॥
ମତ୍ସ୍ୟ କଚ୍ଛପାଦି ରୂପ ଅନନ୍ତ ଧରଇ । ସ୍ରୋତ ଅବ୍ୟ ପ୍ରଭୁ କୀର୍ତ୍ତନ କରଇ ॥
ସ୍ତମ୍ଭ ସ୍ୱେଦ ରୋମାଞ୍ଚ ସ୍ୱରଭଙ୍ଗ କମ୍ପ । ବିବର୍ଣ୍ଣ ଅଶ୍ରୁ ଲୟ ସାତ୍ତ୍ୱିକ ରୂପ ॥
ନଦୀର ହୁକାଣିରେ ସ୍ତମ୍ଭ ଧରଣେ ସ୍ୱେଦ । ବରଷାରେ ପୁଲକ ସ୍ୱରଭଙ୍ଗେ ନାଦ ॥
କମ୍ପ ତରଙ୍ଗ ଅଶ୍ରୁ ପୂରି ଧାର ବହେ । ସିନ୍ଧୁ ସଙ୍ଗମେ ପ୍ରଳୟ ଦେହ ହଜାଏ ॥
ହରି ଭାବରେ ଅଷ୍ଟ ସାତ୍ତ୍ୱିକ ବିକାର । ମୂର୍ତ୍ତିମନ୍ତ ନଦୀ ବଇଷ୍ଣବ ଆକାର ॥

ଏହିପରି ଭାବରେ ଶ୍ରୀଚୈତନ୍ୟ ଦେବଙ୍କ ଏକ ନଦୀ ସହିତ ତୁଳନା କରିବା ପରେ କବି ତାଙ୍କୁ ଏକ ବୋଇତାଳ ବା ନାବିକ ରୂପେ ବର୍ଣ୍ଣନା କରିଛନ୍ତି । ଶ୍ରୀନରୋତ୍ତମ ଠାକୁର ତାଙ୍କ ହାଟ ପତ୍ତନରେ ନାବିକ ହରିଦାସ ନବଦ୍ୱୀପରୁ କ୍ରମେ ନୀଳାଚଳରେ ନାମହାଟ ବସାଇବା ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀଚୈତନ୍ୟ ଦେବଙ୍କୁ ସାଗର, ହରିନାମକୁ ନୌକା ଓ ଭକ୍ତ ମାନଙ୍କୁ ମଗର ସହିତ ତୁଳନା କରିଛନ୍ତି । କିନ୍ତୁ ପଣ୍ଡିତ ଦାଶରଥି ଦାସଙ୍କ କବିତାରେ ତାହାର ହୋଇଛି ବ୍ୟତିକ୍ରମ । ଯଥା—

"ସେହିରୂପେ କୃଷ୍ଣ ଚଇତନ୍ୟ ସଂସାର ସାଗରେ । ନିଜ ମଣ୍ଡଳେ ବୋଇତ ପାରିଷଦଙ୍କ ସଙ୍ଗରେ ॥
ଫେଡ଼ି ଭକତି ଭଣ୍ଡାର ଭାବ ଭକତି ଧନ ଦେଖି ଦିଏ । ନିର୍ଧନକୁ ହରି ନାମଧନ ନିରନ୍ତର ଦିଏ ॥
କଳିଯୁଗ ଜନ ଭକ୍ତି ସାଧନ ଶୂନ୍ୟ ହୋଇଥିଲେ । ଚଇତନ୍ୟ ବୋଇତାଳ ସାଧବରେ ପୂର୍ଣ୍ଣହେଲେ ॥
ପ୍ରଥମେଣ ନବଦ୍ୱୀପେ ସଞ୍ଚରିଣ ନଦିଆ ନବଦ୍ୱୀପେ । ତହୁଁ ଚଳେ ନୀଳାଚଳ ଭକତ କଳାପେ ॥
ପୁଣି ଦକ୍ଷିଣ ଗମନ ସେତୁବନ୍ଧ ପରିଯନ୍ତେ । ଦୀନଜନ ତାରେ କୃଷ୍ଣନାମାମୃତ ସଦାବ୍ରତେ ॥
ତହୁଁ ପୁରୁଷୋତ୍ତମେ ଆସି ଚଳେ ବୃନ୍ଦାବନ । ସେହୁ ବ୍ରଜବାସୀ ଜନେ ଦେଲା ବହୁ ଭକ୍ତି ଧନ ॥
ନୀଳାଚଳେ ନିଶ୍ଚଳେ ରହେ ଜନନୀ ବଚନେ । ଧନ୍ୟ ଧନ୍ୟ କଳିଯୁଗ ଜନେ ଦେଖିଲ ନୟନେ ॥

ନରୋତ୍ତମ ଦାସଙ୍କ କବିତାରେ ହାଟ ବର୍ଣ୍ଣନା ମୁଖ୍ୟସ୍ଥାନ ଗ୍ରହଣ କରିଥିଲାବେଳେ କବି ଦାଶରଥିଙ୍କ ବର୍ଣ୍ଣନାରେ ବୋଇତ ଓ ବୋଇତାଳଙ୍କ କଳ୍ପନା ଏକ ବିଶେଷ ଭୂମିକା ଗ୍ରହଣ କରି ଓଡ଼ିଆ ନୌବାଣିଜ୍ୟ ସଂସ୍କୃତିକୁ ଅଧିକ ସ୍ପୃହମନ୍ତ କରିଛି ।

——*——

# ଭୂମିକା

## ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ

ଶ୍ରୀରାଧାଗୋବିନ୍ଦଙ୍କର ବ୍ରଜବିହାର ହିଁ ପ୍ରେମଭକ୍ତିର ନିଗୂଢ଼ତତ୍ତ୍ୱ । ସ୍ୱୟଂ ଶ୍ରୀକୃଷ୍ଣ ଶ୍ରୀମତୀଙ୍କ ପ୍ରେମରେ ବିମୁଗ୍ଧ ହୋଇ ତାହାଙ୍କ ଭାବରେ ଆପଣାକୁ ଋଣୀ ମନେ କରି ଉକ୍ତ ଋଣ ପରିଶୋଧ ଏବଂ କଳିପ୍ରପୀଡ଼ିତ ମାନବମାନଙ୍କ ଉଦ୍ଧାର ଏହି ଉଭୟ କାର୍ଯ୍ୟ ନିମନ୍ତେ ଶ୍ରୀକୃଷ୍ଣ ଚୈତନ୍ୟରୂପେ ନବଦ୍ୱୀପ ଧାମରେ ଅବତୀର୍ଣ୍ଣ ହୋଇଥିଲେ । ସ୍ୱୟଂ ଆଚରଣ କରି ମନୁଷ୍ୟକୁ ଧର୍ମଶିକ୍ଷା ଦେବା ତାହାଙ୍କର ଏକ ଗୌଣ ଉଦ୍ଦେଶ୍ୟ ଥିଲା ଏବଂ ସେ ସେହିପରି ଭାବରେ ଆଚଣ୍ଡାଳକୁ ହରିନାମ ମହାରତ୍ନ ପ୍ରଦାନ କରି ପଶୁପକ୍ଷୀ ସହିତ ସମସ୍ତ ଭାରତକୁ ପ୍ରେମ-ଭକ୍ତି ରସରେ ପ୍ଲାବିତ କରିଥିଲେ । ନବଦ୍ୱୀପଧାମରେ ଶ୍ରୀମାନ୍ ଗୌରାଙ୍ଗ ମହାପ୍ରଭୁ ପ୍ରଥମ ଚତୁର୍ବିଂଶ ବର୍ଷ ବାଲ୍ୟଲୀଳା ଓ ଗାର୍ହସ୍ଥ୍ୟ ଲୀଳାରେ ଅତିବାହିତ କରି ପରେ ସନ୍ନ୍ୟାସ ଗ୍ରହଣପୂର୍ବକ ତୀର୍ଥରାଜ ଶ୍ରୀପୁରୁଷୋତ୍ତମ ଧାମରେ ପ୍ରକଟଲୀଳାର ଶେଷ ଚବିଶ ବର୍ଷ କଟାଇ ଥିଲେ ଏବଂ ସେଥିମଧ୍ୟରେ ଛ'ବର୍ଷ ନାନା ତୀର୍ଥ ଭ୍ରମଣ କରିଥିଲେ । ଅତଏବ ସମସ୍ତ ଉତ୍କଳରେ ଯେ ତାଙ୍କ ପ୍ରବର୍ତ୍ତିତ ବିଶୁଦ୍ଧ ପ୍ରେମଭକ୍ତିମାର୍ଗ ବିସ୍ତୃତ ହୋଇଥିଲା ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ଏବଂ ତାହାର ଚିହ୍ନ ମଧ୍ୟ ଅନେକ ସ୍ଥାନରେ ଅକ୍ଷୁଣ୍ଣ ରହିଅଛି, କିନ୍ତୁ ଦୁଃଖର ବିଷୟ ଏହି ଯେ ସ୍ୱୟଂ ଭଗବାନ ତାଙ୍କ ପୂର୍ଣ୍ଣତମ ଅବତାର କାଳରେ ଯେଉଁ ସ୍ଥାନକୁ କର୍ମକ୍ଷେତ୍ରରେ ପରିଣତ କରିଥିଲେ ସେହି ଉତ୍କଳର ସନ୍ତାନମାନେ କାଳର ପ୍ରବଳ ସ୍ରୋତରେ ଭାସି ଯାଇ ତାଙ୍କ ନିରୂପିତ ସ୍ଥାନରୁ ବହୁଦୂରରେ ନିକ୍ଷିପ୍ତ ହେଉଅଛନ୍ତି । ନିଜ ଘରର ପୈତୃକ ଅମୂଲ୍ୟ ରତ୍ନରାଶି ତାଙ୍କ ହସ୍ତଗତ ହୋଇପାରୁ ନାହିଁ । କାହାରି କାହାରି ହସ୍ତଗତ ହେଲେ ମଧ୍ୟ ସେମାନେ ଚିହ୍ନି ନ ପାରି ସ୍ପର୍ଶମଣିକୁ କାଚ ମଣି ଦୂରରେ ନିକ୍ଷେପ କରୁଅଛନ୍ତି । ଅସ୍ମଦ୍ ଦେଶରେ ଅନେକେ ସଙ୍କୀର୍ତ୍ତନ କରନ୍ତି ଏବଂ ସଙ୍କୀର୍ତ୍ତନ ପ୍ରାରମ୍ଭରେ "ସଙ୍କୀର୍ତ୍ତନୈକପିତରୌ" ବୋଲି ଗୌର ନିତାଇଙ୍କୁ ଉଦ୍ଦେଶ କରିଥାଆନ୍ତି, କିନ୍ତୁ ପଚାରିଲେ ଗୌର ନିତାଇ କିଏ ଥିଲେ ଏବଂ ତାଙ୍କ ନାମ କାହିଁକି ପ୍ରଥମରେ ନେଉଅଛ, ଏହାର ଉତ୍ତର କିଛି ଦେଇ ପାରନ୍ତି ନାହିଁ । ଅତଏବ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ନିଜ ପିତାର ନାମ ଆମ୍ଭମାନଙ୍କୁ ଅଜଣା । ଏହାଠାରୁ ଅଧିକ ଶୋଚନୀୟ ବିଷୟ କଣ ହୋଇପାରେ ? ଉତ୍କଳର ଶତକଡ଼ା ୯୦ କି ୯୫ ଜଣ ଶ୍ରୀ ଗୌରପ୍ରବର୍ତ୍ତିତ ବୈଷ୍ଣବଧର୍ମରେ ଦୀକ୍ଷିତ, ସେହି ସମ୍ପ୍ରଦାୟରେ ମନ୍ତ୍ରାଦି ଗ୍ରହଣ କରି ଥାଆନ୍ତି, କିନ୍ତୁ କି ଗୁରୁ କି ଶିଷ୍ୟ ସମସ୍ତେ ପ୍ରକୃତ ତତ୍ତ୍ୱର କିଛିମାତ୍ର ଆଲୋଚନା କରନ୍ତି ନାହିଁ । ଏହା କହିବାଦ୍ୱାରା ଆମ୍ଭେ ଆପଣାକୁ ଜଣେ ଅଭିଜ୍ଞ ବୋଲି ମଣୁଅଛୁଁ, ଏହା ଯେପରି କେହି ମନେ ନ କରନ୍ତି । ଆମ୍ଭେ ମଧ୍ୟ ସମସ୍ତଙ୍କ ଭିତରେ ଜଣେ ।

ବର୍ତ୍ତମାନ ଆମ୍ଭମାନଙ୍କର ଏହି ଅଧୋଗତି ହୋଇଥିଲେହେଁ ଆମ୍ଭର ପୂର୍ବପୁରୁଷମାନେ ଭଗବତ୍ କୃପାରୁ ସେ ବିଷୟରେ ବହୁ ଅଭିଜ୍ଞତା ଲାଭ କରିଥିଲେ, ସେଥିର ପ୍ରମାଣ ଭୂରି ଭୂରି ରହିଅଛି । ପ୍ରାଚୀନ କବି-ମାନଙ୍କ ସଙ୍ଗୀତ ଏବଂ ଅପ୍ରକାଶିତ ଓ ପ୍ରକାଶିତ ଗ୍ରନ୍ଥାବଳୀ ତାହାର ଉତ୍ତମ ପ୍ରମାଣ ଦେଉଅଛି । ସେମାନେ ଶ୍ରୀରୂପସନାତନାଦି ଛ ଗୋସ୍ୱାମିଙ୍କ କୃତ ବୈଷ୍ଣବଗ୍ରନ୍ଥରାଶି ଏବଂ ଶ୍ରୀବୃନ୍ଦାବନ ଦାସ, ଶ୍ରୀ ଲୋଚନ ଦାସ ଓ ଶ୍ରୀକୃଷ୍ଣ ଦାସ କବିରାଜଙ୍କ କୃତ ଚୈତନ୍ୟ ଭାଗବତାଦି ଉତ୍ତମରୂପେ ଅବଗାହନ କରି ନିଜଭାଷାରେ ଉକ୍ତ ଶାସ୍ତ୍ରାନୁମୋଦିତ ଗ୍ରନ୍ଥାଦି ପ୍ରଣୟନ କରିଥିଲେ । କିନ୍ତୁ ଉକ୍ତ ଗ୍ରନ୍ଥମାନ ଏପର୍ଯ୍ୟନ୍ତ ଦୁର୍ଦୈବବଶତଃ ମୁଦ୍ରାଙ୍କିତ ହୋଇ ନ ଥିବାରୁ ଜନସାଧାରଣଙ୍କ ଦୃଷ୍ଟିରେ ପଡ଼ୁନାହିଁ । ସେ ସମସ୍ତ ମୁଦ୍ରାଙ୍କିତ ହେଲେ ନିଶ୍ଚୟ ଉତ୍କଳର ଧର୍ମୋନ୍ନତି ସାଧିତ ହେବ ଏହାହିଁ ମୋହର ଅନ୍ତରବୁଦ୍ଧିର ଦୃଢ଼ ଧାରଣା ।

ସେହି ସକଳ ଗ୍ରନ୍ଥ ମଧ୍ୟରୁ ଏହି ବ୍ରଜବିହାର ଗୋଟିଏ ପରମ ଉପାଦେୟ ଗ୍ରନ୍ଥ । ଏହାର ପ୍ରଣେତା ଭକ୍ତକବି ଶ୍ରୀ ଦାଶରଥି ଦାସ ଅଟନ୍ତି । ତାହାଙ୍କର ବାସସ୍ଥାନ ରଣପୁର, ସେ ପରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିଥିବାର ଏହି ଗ୍ରନ୍ଥରେ ଉଲ୍ଲେଖ ଅଛି । କବି ଯେ ଜଣେ ଉଚ୍ଚଦରର ଭକ୍ତ ଥିଲେ ଏହା ତାହାଙ୍କ ରଚିତ ଗ୍ରନ୍ଥହିଁ କହି ଦେଉଅଛି । ସେ ମାଧ୍ୱାଚାର୍ଯ୍ୟ ସମ୍ପ୍ରଦାୟଭୁକ୍ତ ବକ୍ରେଶ୍ୱର ପଣ୍ଡିତଙ୍କ ପରିବାରଭୁକ୍ତ ଥିଲେ, ଏଠାରେ ବକ୍ରେଶ୍ୱର ପଣ୍ଡିତ ଯେ କିଏ ଥିଲେ ତାଙ୍କ ପରିଚୟ ପାଇଁ ମୁଁ ଦୁଇ ଧାଡ଼ି ଶ୍ରୀଚୈତନ୍ୟଚରିତାମୃତରୁ ଉଦ୍ଧୃତ କରି ଦେଖାଉ ଅଛି । କାରଣ ମାଦୃଶ ଜନ ପକ୍ଷରେ ବକ୍ରେଶ୍ୱରଙ୍କ ଗୁଣ ବର୍ଣ୍ଣନକରିବା ବିଡ଼ମ୍ବନା ମାତ୍ର ।

ପ୍ରଭୁ କହିଲେନ "ତୁମି ମୋର ପକ୍ଷେ ଏକ ପାଖା,
ଆକାଶେ ଉଡ଼ିଯାଁ ଯାଙ୍ଗ ପାଇଲେ ଆର ପାଖା ।"

ଶ୍ରୀଭଗବାନଙ୍କ ଶ୍ରୀମୁଖନିଃସୃତ ଏହି ପଂକ୍ତିଦ୍ୱୟ ମହାନୁଭବ ବକ୍ରେଶ୍ୱର ପଣ୍ଡିତଙ୍କର ମହିମା ଅତି ଉଚ୍ଚରେ ଘୋଷଣା କରୁଅଛି । ବକ୍ରେଶ୍ୱର ପଣ୍ଡିତ ୭ ଦିନ ୭ରାତି ଅବିଶ୍ରାନ୍ତ କୀର୍ତ୍ତନରେ ନର୍ତ୍ତନ କରି ପାରୁଥିଲେ । ପରମାର୍ଥତଃ ଗ୍ରନ୍ଥକର୍ତ୍ତା ଉକ୍ତ ପରିବାରଭୁକ୍ତ ଅଟନ୍ତି । ଅତଏବ ତାଙ୍କର ଗ୍ରନ୍ଥ ମଧ୍ୟ ବଂଶାନୁରୂପ ହୋଇଅଛି ।

ମୁଁ ଏହି ଗ୍ରନ୍ଥର ଖଣ୍ଡିଏ ତାଳପତ୍ରଲେଖା ପୁସ୍ତକ ଢେଙ୍କାନାଳ ରାଜବଂଶର ରାଜଗୁରୁଙ୍କ କଣ୍ଠ ଓ ମଠରୁ ପ୍ରାପ୍ତହୋଇ ପାଠ କରି ଦେଖିଲି ଯେ ଗ୍ରନ୍ଥର ରଚନାପ୍ରଣାଳୀ ଅତି ସରସ ଓ ସରଳପଦାବଳୀରେ ବିମଣ୍ଡିତ, ଅତଏବ ଏହାର ମୁଦ୍ରାଙ୍କନ କରାଇବାକୁ ମୋର ବାସନା ହେଲା । ଏଥିରେ ଲିପିଗତପ୍ରମାଦ ସନ୍ଦର୍ଶନ କରି ଅନ୍ୟ ପୁସ୍ତକ ଅନ୍ୱେଷଣ କରନ୍ତେ ଆଉ ଦୁଇଖଣ୍ଡି ମଧ୍ୟ ପ୍ରାପ୍ତହେଲା । ଉକ୍ତ ତିନିଖଣ୍ଡି ପୁସ୍ତକ ମିଳାଇ ଅସଙ୍ଗତ ଓ ବର୍ଣ୍ଣାଶୁଦ୍ଧି ସଂଶୋଧନ ବିଷୟରେ ଯଥାସାଧ୍ୟ ଯତ୍ନ କରିବାକୁ ତ୍ରୁଟି କରିନାହିଁ । ତଥାପି ଯେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇଅଛି ଏହା ମୁଁ କହି ନ ପାରେ । ଆଉ ମୁଁ ବୋଧ କରେଁ ଏ ଗ୍ରନ୍ଥ ଗୋସ୍ୱାମୀକୃତ ଗ୍ରନ୍ଥମାନଙ୍କର ଭାବାନୁମୋଦିତ କିନ୍ତୁ ଗୋସ୍ୱାମୀ ଗ୍ରନ୍ଥମାନଙ୍କରେ ମୋର ସବିଶେଷ ପାରଦର୍ଶିତା ନ ଥିବାରୁ ଏହା ଗୋସ୍ୱାମିମାନଙ୍କ କୃତ ବୈଷ୍ଣବଗ୍ରନ୍ଥର ସମ୍ପୂର୍ଣ୍ଣରୂପେ ଭାବାନୁମୋଦିତ କି ନା ଦୃଢ଼କରି କହି ନ ପାରେ ।

ଏହି ପୁସ୍ତକର ମୁଦ୍ରାଙ୍କନ ବ୍ୟୟଭାର ପରମମାନନୀୟା ଢେଙ୍କାନାଳ ରାଜମାତା ମହୋଦୟା ବହନ କରିଥିବାରୁ ତାହାଙ୍କଠାରେ କୃତଜ୍ଞତା ପାଶରେ ଚିରକାଳ ଆବଦ୍ଧ ରହିଲି ଏବଂ ପଣ୍ଡିତ ଶ୍ରୀ ବିଶ୍ୱନାଥ ନନ୍ଦ, ପଣ୍ଡିତ ଶ୍ରୀ ରାମଚନ୍ଦ୍ର ନନ୍ଦ ଓ ପଣ୍ଡିତ ଶ୍ରୀ ଭଜନାନନ୍ଦ ସାହୁ ଏମାନେ ଏ ପୁସ୍ତକ ସଂଶୋଧନାଦି କାର୍ଯ୍ୟରେ ଯଥାସାଧ୍ୟ ସାହାଯ୍ୟ ପ୍ରଦାନ କରି ମୋହର ଚିରସ୍ମରଣୀୟ ହୋଇଅଛନ୍ତି ।

ପରିଶେଷରେ ବକ୍ତବ୍ୟ ଏହି ଯେ—ମହାନଦୀ ଓ କାଠଯୋଡ଼ୀର ବନ୍ଧ ଯେପରି ବହୁଜନସଂଗୃହୀତ କେତେକ ପ୍ରସ୍ତରଖଣ୍ଡର ସମଷ୍ଟିରେ ନିର୍ମିତ ହୋଇ କଟକ ନଗରୀକୁ ରକ୍ଷା କରିବାଦ୍ୱାରା ମହଦୁପକାର ସାଧନ କରିଅଛି, ତଦ୍ରୂପ ମୁଁ ଜନସାଧାରଣର ଉପକାରାର୍ଥେ ପ୍ରାଚୀନ ଉପାଦେୟ ଗ୍ରନ୍ଥମାନ ପ୍ରକାଶ କରୁଥିବା ମହାନୁଭବ ବ୍ୟକ୍ତିମାନଙ୍କର ପଥାନୁସରଣପୂର୍ବକ ଖଣ୍ଡିଏ ଖଣ୍ଡିଏ ପ୍ରସ୍ତରର ନ୍ୟାୟ ଏହା ପ୍ରକାଶ କରିବାକୁ ଆରମ୍ଭ କଲି; କିନ୍ତୁ ଏହା ଜନସାଧାରଣରେ ଆଦୃତହୋଇ କେତେଦୂର କାର୍ଯ୍ୟକାରକ ହେବ କହି ନ ପାରେ ।

ପ୍ରକାଶଥାଉକି—ଏହି ପୁସ୍ତକ ବିକ୍ରୀତ ହୋଇ ଯେଉଁ ଅର୍ଥ ଲାଭ ହେବ ତଦ୍ଦ୍ୱାରା ଅପରାପର ପ୍ରାଚୀନ ବୈଷ୍ଣବଗ୍ରନ୍ଥମାନ ପ୍ରକାଶ କରିବାର ବାସନା ରହିଲା ।

ଢେଙ୍କାନାଳ,
୧୩-୯-୧୯୦୯ } ଶ୍ରୀ ପାର୍ବତୀଚରଣ ଦାସ

ଶ୍ରୀବ୍ରଜେନ୍ଦ୍ରନନ୍ଦନୋ ଜୟତି ।

# ବ୍ରଜ ବିହାର

## ପ୍ରଥମ ବୋଲି

ଶ୍ରୀକୃଷ୍ଣାୟ ନମଃ

କିଂ ତାତ ବେଦାଗମଶାସ୍ତ୍ରବିସ୍ତରୈସ୍ତୀର୍ଥୈରନେକୈରପି କିଂ ପ୍ରୟୋଜନମ୍ ।
ଯଦ୍ୟାତ୍ମନୋ ବାଞ୍ଛସି ମୁଖ୍ୟକାରଣଂ ଗୋବିନ୍ଦ ଗୋବିନ୍ଦ ଇତି ସ୍ଫୁଟଂ ରଟ ॥

ରାଗ-ଚକ୍ରକେଳି

ଶ୍ରୀକୃଷ୍ଣ ସଚ୍ଚିଦାନନ୍ଦ କାରଣ ।
ଜନନିସ୍ତାରଣ ଭବତାରଣ ॥
ତିନି ଶକ୍ତି ହେତୁ ଲୀଳା ବିଧାନ ।
ତହିଁ ମଧ୍ୟେ ନର ଲୀଳା ପ୍ରଧାନ ॥
ବ୍ରଜବିହାରେ ଗୋବିନ୍ଦ ଚରିତ ।
ବିଷ୍ଣୁପଦସଙ୍ଗୀ ଗଙ୍ଗା ସରିତ ॥
ସ୍ନାନେ ପାନେ ଦରଶନେ ପବିତ୍ର ।
କର୍ଣ୍ଣେ ଆସ୍ୱାଦେ ନିସ୍ତାରେ ଜଗତ ॥
ରସ ପରମହଂସ ସଙ୍ଗତାରେ ।
ବେଦେ ବିଦିତ ବ୍ରହ୍ମାଣ୍ଡ ଭିତରେ ॥
ପରୀକ୍ଷିତ ଭଗୀରଥେ ବୁହାଇ ।
ବ୍ରହ୍ମଶାପେ ଲୋକେ କୀର୍ତ୍ତି ରୁହାଇ ॥
ପ୍ରସ୍ନଦାୟିନୀ ଗଜେନ୍ଦ୍ରଦଶନେ ।
ମେରୁଚ୍ଛୋଟ ଶୁକମୁଖବଚନେ ॥
ବ୍ୟାସକୃତ ପ୍ରବାହେଣ ବାହାର ॥
ନାମ ମହିମା ଅଗାଧ ତାହାର ॥
ସୃଷ୍ଟି ମଧ୍ୟରେ ଅବାଧେ ବହଇ ।
କାଳ ଅନଳ ଲୀଳା ନିବାରଇ ॥
ସଚ୍ଚିଦ୍ ଆନନ୍ଦ ମୂଳ ଆଧାର ।
ସାଙ୍ଗୋପାଙ୍ଗ ଗିରି ନଦୀ ଅପାର ॥
ଚଉଷଠିରେ ଅଗାଧ ସରୁଛି ।
କେନ୍ଦ୍ର କେତେଦୂରେ ମିଶି ପୂରୁଛି ॥
ନାମ ରୂପ ଗୁଣ ଲୀଳା ସଲିଳ ।
ବର୍ଣ୍ଣ ତରଙ୍ଗ ଭଙ୍ଗୀସ କଲ୍ଲୋଳ ॥

ମତ୍ସ୍ୟ କଚ୍ଛପଗଣ ପାରିଷଦ ।
ବ୍ରଜବାସିଜନ ପଦ୍ମ କୁମୁଦ ॥
ଭୃଙ୍ଗ ସାତ୍ତ୍ୱିକ ଭାବକୁ ବିକାର ।
ହଂସ ବକ ଚକ୍ରବାକ ଆକାର ॥
ଶ୍ଳୋକ-ଛନ୍ଦ-ବୃତ୍ତ-ସ୍ରୋତ ଭଜାଣି ।
ରାଗ ସ୍ୱର ଏ ଫେଣ ବିମ୍ବ ଜାଣି ॥
କୂଳ ଧର୍ମ କର୍ମ ବେନି ସ୍ଥାବର ।
ଶ୍ରୁତି ସ୍ମୃତି ପୁରାଣ ଏ ଆବର ॥
କର୍ଣ୍ଣ ଜିହ୍ୱା ଏ ରସ ଆସ୍ୱାଦନେ ।
ତୃଷ୍ଣା ହରଇ ଏ ନାମ ଗାୟନେ ॥
ସତ୍ତ୍ୱ ରଜ ତମ ଘାଟ ଯହିଁରେ ।
ମନ୍ତ୍ରଯନ୍ତ୍ରାଦି ପାବଛି ତହିଁରେ ॥
ଯାତ୍ରା ମହୋତ୍ସବ ଯୋଗ ମହତ୍ତ୍ୱ ।
ସ୍ନାନ କୀର୍ତ୍ତନେ ପାଇ ଫଳ ଏଥି ॥
ସାଧୁଗୋଷ୍ଠୀରେ ସମ୍ପ୍ରୀତି ବଢ଼ଇ ।
ଧର୍ମ କର୍ମ ବେନି କୂଳ ବୁଡ଼ଇ ॥
ପାପ-ପାଦପ ମୂଳ ଉପୁଡ଼ଇ ।
ମନ୍ଦ ଆଶାତୃଷ୍ଣା ପକ୍ଷୀ ଉଡ଼ାଇ ॥
ମୋହଜାଲ ମାୟାଲତା ଛିଡ଼ଇ ।
ଭବବନ୍ଧ ଭାଙ୍ଗି ସୁଖେ ମାଡ଼ଇ ॥
କାଳସର୍ପ ପାଷଣ୍ଡ ଦେଶ ଭାସେ ।
ଯମ ଯାତନା-ଦାବ ତାପ ନାଶେ ॥
ସନ୍ଥ ଦେହେଁ ପଞ୍ଚରସ ଉପୁଜେ ।
ଏଣୁ ସୁଜନ ଜନ ନିତ୍ୟ ଭଜେ ॥

ଗୁରୁ ପାଦାଶ୍ରୟ ଅବଲମ୍ବନରେ ।
ଧୀର ସ୍ୱରୂପ ସାଧୁଜନ ବନ୍ଦନରେ ॥
ସିଦ୍ଧ ବଚନ ଲୋଚନେ ଦେଖଇ ।
ଅନ୍ୟ ପୁଣ୍ୟ ନଦୀ ତୁଚ୍ଛ ଲେଖଇ ॥
ଭବସଙ୍ଗମ ସାଗରେ ପୂରଇ ।
ଏଣେ ସଂସାର ପ୍ରଳୟ କରଇ ॥
ବ୍ରଜେ ମାନସିକ ସେବାବଲମ୍ବେ ।
ଅନ୍ତେ ରାଧାଗୋବିନ୍ଦ ପାଦ ଲଭେ ॥
ସାଧୁଜନେ ଏ ନଦୀ ଜଳେ ବୁଡ଼ି ।
ଯେତେ ସଞ୍ଚିଲ ବୀଜ କୂଟ ଏଡ଼ି ॥
କୃଷ୍ଣଚରିତ ଗଙ୍ଗା ଏକମତେ ।
ସାଧୁଜନେ ବିସ୍ତରି ଏକଚିତ୍ତେ ॥
ହରି ଲୀଳା କାରୁଣ୍ୟ ଜଳବତ ।
କୁଶାଗ୍ରରେ ମୁନି ମୁଖେ ବିଦିତ ॥
ହେତୁ ନ ପାଇ ଅଳପ ବୁଦ୍ଧିରେ ।
କେତେ ଜାଣନ୍ତି ବିସ୍ତରି ସୁଧୀରେ ॥
ବ୍ୟାସ ନାରଦ ଆଦି ଅଗୋଚର ।
ମୋର ହୋଇବ କାହୁଁ ସେ ଗୋଚର ॥
ମୋର ବଚନ ପବିତ୍ର ନିମନ୍ତେ ।
ଭବସାଗର ତରଣ ଏମନ୍ତେ ॥
ଏଣୁ ନରଙ୍କ ହିତ କରେ ମନ ।
ହସ୍ତେ କରାଇ ଜଳଧି ମନ୍ଥନ ॥
ଗୁନ୍ଥି ତୁଳସୀ କୋଇଲି ସୂତାରେ ।
ଦେବେ ଘେନନ୍ତି ଯେସନ ମଥାରେ ॥
ସେହି ପ୍ରକାରେ ଗୁନ୍ଥି ବ୍ରଜଲୀଳା ।
ସାଧୁଜନେ କରିବେ ଗଳେ ମାଳା ॥
ମୋର ବଚନ ଦୋଷ ନ ବିଚାରି ।
କୃଷ୍ଣକଥା ବୋଲି ଥିବ ଆଦରି ॥
ଜନ ପରିହାସରେ ଯେହୁ ରତ ।
ଏହି ଲକ୍ଷଣ ଜାଣିବା ମହତ ॥
ଯତନରେ ଆତଯାତ ଜଗତ ।
ଗୃହୀଜନ ଚେତାଇବା ନିମନ୍ତେ ॥
ଅନ୍ୟ କଳ୍ପନା ମନରେ ନ ଧରି ।
ଜନାଶ୍ରୟ ନିମନ୍ତ୍ରଣ ପରିହରି ॥

ଏଣୁ ସାଧୁଙ୍କ ଚରଣେ ବନ୍ଦଇ ।
ଦେଶଭାଷାରେଣ ପଦ ଛନ୍ଦଇ ॥
ବିଷ୍ଣୁଜନ ହୋଇବେ ପରସନ୍ନ ।
ବ୍ରଜଚରିତ ଦୀପ ଦରଶନ ॥
ନଳକୁବେର ନାରଦ ସମ୍ବାଦ ।
କୃଷ୍ଣ ଅମୃତ ମହାରସସ୍ୱାଦ ॥
ଏକଦିନେ ନାରଦ ତପୋବନ୍ତ ।
ନଳକୁବେର ପୁରେ ଉପଗତ ॥
ପୂର୍ବେ ଅସଦ ଅଙ୍ଗ ତାର ଗୁହାଁ ।
ଗୋପେ ଯାମଳାତରୁ ଶାପ ପାଇ ॥
କୃଷ୍ଣ ଅଙ୍ଗ ଲାଗି ହେଲେ ମୁକତ ।
ଏବେ ଜାଣିବା କେମନ୍ତ ଚରିତ ॥
ବିଜେ କଲେ ଏହା ମୁନି ବିଚାରି ।
ବୀଣାବାଦ୍ୟେ ହରିନାମ ଉଚ୍ଚାରି ॥
କୃଷ୍ଣ ଗୁଣଭୂଷଣ କଣ୍ଠତଟେ ।
ଭକ୍ତିଭାବରେ ଜଗତ ଉଚ୍ଚାଟେ ॥
ହରିରସରେ ରସି ଗରଗର ।
ତନୁ ପୁଲକ ଅଶ୍ରୁ ଜରଜର ॥
ଭାବବିକାରେ ମନର ପ୍ରମୋଦେ ।
ଲୟ ଲଗାଇ ପ୍ରେମ ଗଦଗଦେ ॥
ଆସି ପ୍ରବେଶ ଅଳକା ଭୁବନେ ।
ଅତି ମନୋହର ନଦୀ କାନନେ ॥
ବନ ଭ୍ରମନ୍ତେଣ ନଳକୁବେର ।
ଦେଖି ନମିଲେ ମୁନିଙ୍କ ପୟର ॥
'ନମସ୍କରିଲି ନମସ୍କରିଲି' ବୋଲନ୍ତି ।
ପାଦଧୂଳି କପୋଳରେ ବୋଳନ୍ତି ॥
ପୁଣି ପୁଣି ଉଠି ବନ୍ଦେ ଚରଣ ।
ପାଦେ ପଡ଼ି ଫୁକାରଇ ଶରଣ ॥
ତନୁ କଦମ୍ବ କୁସୁମ ସଂଜାତ ।
ପ୍ରେମ ଆନନ୍ଦ ଲୋତକ ପୂରିତ ॥
ମନ ବୁଦ୍ଧି ଏକଲୟେ ମିଶାଇ ।
ପୂଜା କଲେ ଦିବ୍ୟାସନେ ବସାଇ ।
ପାଦ ଉଦକ ଷେପି ଶିରେ ସିଞ୍ଚି ।
କର ଯୋଡ଼ି ରହିଲେ ପଛ ଘୁଞ୍ଚି ॥

ଧନ୍ୟ ଦିବସ ଆଜ ଏ ମୋହର ।
ବହୁପୁଣ୍ୟ ଦରଶନ ମନୋହର ॥
ମୁନି ନିର୍ମଳଭାବ ତାର ଦେଖି ।
କୋଳେ ଲଗାଇ ଆଲିଙ୍ଗନେ ସୁଖୀ ॥
ବହୁ ପ୍ରଶଂସି କଲ୍ୟାଣ ବଚନେ ।
ବ୍ରଜବାସୀ ତୁ ଯାମଳା ଅର୍ଜୁନେ ॥
ଭକ୍ତଜନ ଇଚ୍ଛନ୍ତି ଯା ସୁଖରେ ।
ଭାଗ୍ୟେ ଲଭିଲୁ ତୁ ଦୁଃଖ ଦଶାରେ ॥
କୃଷ୍ଣ ଅଙ୍ଗ ଲାଗି ହେଲୁ ପବିତ୍ର ।
ଏବେ ଦୁର୍ଲଭ ଏ ତୋର ଚରିତ୍ର ॥
ବ୍ରଜମଣ୍ଡଳେ ଯେ ଦିନେ ରହଇ ।
ଫଳ ଅଶେଷ କହି ତ ନୁହଇ ॥
ମୋକ୍ଷ ହେବେ ପାପୀ ତୋର ଦର୍ଶନେ ।
ବର ମାଗ ତୁ ବୋଲନ୍ତି ପ୍ରସନ୍ନେ ॥
ଶୁଣି ନଳକୁବର ଲମ୍ବେ ପାଦେ ।
ବୋଲେ ସବୁ ତୋ ଚରଣ ପ୍ରସାଦେ ॥
ସାଧୁଜନଙ୍କ ପ୍ରସାଦ ଅମୂଲ୍ୟ ।
ଶାପ ଦେଲେ ହୋଇଲା ବର ତୁଲ୍ୟ ॥
ଜଳକ୍ରୀଡ଼ାରେ ଯେମନ୍ତ ଯୁବତୀ ।
ତୋର ବିମୁଖେ ଦେଖି ଏହୁ ଗତି ॥
ବ୍ରହ୍ମା ଶଙ୍କର ଭାବନ୍ତି ଯାହାକୁ ।
ଅଙ୍ଗ ସ୍ପର୍ଶେ ଲଭିଲୁଁ ତାହାକୁ ॥
ଏଣୁ ସାଧୁଙ୍କ ଦର୍ଶନ ଉତ୍ତମ ।
ଏହି ହେତୁ ଲଭେ ପୁରୁଷୋତ୍ତମ ॥
ଏବେ ପ୍ରସନ୍ନେ ବର ଯାଚୁ ଯେବେ ।
ମୁହିଁ କଥାଏ ମାଗୁଅଛି ତେବେ ॥
ବ୍ରଜବିହାର ଚରିତ କହିବ ।
ଯେଉଁରୂପେ ମୋର ମନେ ରହିବ ॥
ହରି ଚରିତ ତୋ ମୁଖୁଁ ଶୁଣିବି ।
ନିଶି ଦିବସେ ହୃଦରେ ଗୁଣିବି ॥
କିଛି ଜାଣିଲି ନାହିଁ ଗୋପେ ରହି ।
ଅଣହେତୁରେ ବୃକ୍ଷତନୁ ବହି ॥
ଲୀଳା ଦେଖି ନୋହିଲି ସାମରଥ ।
ଏବେ ପୂରାଅ ମୋର ମନୋରଥ ॥

କେସନ୍ତ ବ୍ରଜପୁରୀ ସୀମା ଯେମନ୍ତ ।
ନରନାରୀମାନେ ତହିଁ କେମନ୍ତ ॥
ନନ୍ଦ ଯଶୋଦା କି ପୁଣ୍ୟ ଆଚରି ।
ପୁତ୍ର କରି ପାଇଲେ ଶ୍ରୀହରି ॥
ମାରି ପୁତନା ଆଦି କେଶୀଯାଏ ।
କଂସ ହେତୁ ଏ କେବଣ ଉପାଏ ॥
ବ୍ରଜକାମିନୀ ବିହାର ଲାଳସେ ।
ଅତି ଅଶକତ କାମ ଲାଳସେ ॥
ରାଧାଚନ୍ଦ୍ରାବଳୀ ସଙ୍ଗେ ରମଇ ।
ଏଥି ମଧ୍ୟେ ଉତ୍ତମ କେ ଯେନଇ ॥
କାହା ଭାବେ ହୁଅଇ ହରି ବଶ ।
କେଉଁରୂପ କଂସ ତତ୍ତ୍ୱ ନିର୍ଯାସ ॥
କଂସ କଂସ ରସେ ହରି ଆରାଧି ।
ଲୀଳା ମାନୁଷ ଭାବେ କଂସ ବୁଦ୍ଧି ॥
ତାତ ଜନନୀଙ୍କ ସ୍ନେହ କେମନ୍ତ ।
କୁଳବଧୂ କେବଣ ଭାବ ରତ ॥
ମିତ୍ର ସୁହୃଦ ସଖା ଭାବେ କେହୁ ।
ଦାସ ଭାବେଣ ସେବଛନ୍ତି କେହୁ ॥
ସ୍ୱୟଂ ଈଶ୍ୱର ବୋଲି କି ଜାଣନ୍ତି ।
କିବା ନନ୍ଦସୁତ ବୋଲି ମଣନ୍ତି ॥
ମୋତେ ସଂଶୟ ନ ରଖି କହିବ ।
ଶୁଣି ଚିତ୍ତ ବିଚଳିତ ନୋହିବ ।
ଯେବେ ଯେନିଲ ମୁନି ମୋର ସେବା ।
ଏହି ବର ମାଗୁଛି ମୋତେ ଦେବା ॥
ଶୁଣି ନାରଦ ପ୍ରସନ୍ନ ବଦନ ।
ଶୁଣ କହିବା କୁବେର ନନ୍ଦନ ॥
ଆମ୍ଭ ଶରଧା କହି ଲୋଡ଼ୁ ଯାହା ।
ବର କରି ମାଗିଲୁ ତୁହି ତାହା ॥
ଧନ୍ୟ ଦିବସ ଆଜ ଏ ଆମ୍ଭରେ ।
ବ୍ରଜ ଚରିତ କହିବା ତୁମ୍ଭରେ ॥
ଦେବେ ଅଗୋଚର ଯେଉଁ ଚରିତ ।
କହି ପାରିବ କେ ପୂର୍ଣ୍ଣ କରିତ ॥
ଠିକଠିକ କରି ତୋତେ କହିବା ।
ଶ୍ରୋତା ବକତା ପବିତ୍ର ହୋଇବା ॥

ବ୍ରଜମଣ୍ଡଳ ଚଉରାଶି କୋଶ ।
ଶୁଦ୍ଧ ନଦୀ ଅବନୀ ବନ ଦେଶ ॥
ତ୍ରିଭୁବନ ମଧ୍ୟରେ ବିଚିତ୍ର ।
ସ୍ୱର୍ଗ ବାରସ୍ୱଣ୍ଡ ପୁର କଞ୍ଚନ ॥
ରତି ମନସିଜ ନାରୀ ପୁରୁଷ ।
ସଦା ସମ୍ପଦ ଉଚ୍ଛବ ହରଷ ॥
ଦୟାଶୀଳ ଶାନ୍ତ ଧୀର ଧାର୍ମିକ ।
ସଦଗୋଷ୍ଠୀ ସଦାଗୃହରେ ବିବେକ ॥
ଅତି ଗହନ ମଥୁରା କଟକ ।
କଂସରାଜାର ନଗର ଛଟକ ॥
ନନ୍ଦଗ୍ରାମ ଦଧିଗ୍ରାମ ଯାବଟ ।
ଅତି ଉତ୍ତମ ଯମୁନାର ତଟ ॥
ନନ୍ଦନଗର ବେଢି ଗୋପପୁର ।
ଦଧିଗ୍ରାମେ ବୃଷଭାନୁ ନଗର ॥
ଯାବଟେଣ ଚନ୍ଦ୍ରସେଣ ଉଆସ ।
ଠାବେ ଠାବେ ଲଗି ନିତ ସୁଆଁସ ।
ନବଲକ୍ଷ ଅଷ୍ଟାଦଶ ପାଟକ ।
ଚାରି ବିଚିତ୍ର ମଧ୍ୟରେ ହାଟକ ॥
ମଣିମୟ ମୁକୁଟ ରତ୍ନହାର ।
ମୋତି ସୀମନ୍ତୀ ରତ୍ନଝୁମ୍ପାସାର ॥
ହେମ କଟକ କର୍ଣ୍ଣ ଅବତଂସ ।
ନାନା ରତ୍ନନିର୍ମିତ ଶଶିଅଂଶ ॥
ଗୃହସରି ଦୋସରି ମୋତିମାଳା ।
ନାନା ପଦକ କଟୀରେ ମେଖଳା ॥
ତାଡ଼ ଚୁଡ଼ୀ ବିଦ ମୁଦି କଙ୍କଣ ।
ପାଦେ ନୂପୁର ବାଜେ ରୁଣଝୁଣ ॥
ରୂପ ଉପମେ ଶୋଭା ଅଳଙ୍କାର ।
ଚୁଆ ଚନ୍ଦନ ସୁଗନ୍ଧ କର୍ପୂର ॥
ପରିଧାପନ ଦେବାଙ୍ଗ ବସନ ।
ପୁଷ୍ପ ତାମ୍ବୂଳ ଅମିୟ ଅଶନ ॥
ଚିତ୍ରଶାଳେ ଚିତ୍ରକାମ ପିତୁଳ ।
ଗଜଦନ୍ତ ପଲଙ୍କ ଖଟଦୋଳି ॥
ଅଗୁରୁ ଧୂପ ଧୂଆଁ ଗନ୍ଧ ଆମୋଦେ ।
ସଦା ବସନ୍ତ ମଳୟ ପ୍ରମୋଦେ ॥

ଚୂନ ଚିକଣ ଧବଳ ସଦନେ ।
ପୁର ନିର୍ମିତ ଅଗୁରଚନ୍ଦନେ ॥
ଝରା ବଉଳା କମ କନ୍ତି କତି ।
ହେମ କଳସ ବସେ ପନ୍ତି ପନ୍ତି ॥
ନେତପତାକା ବାତେ ବାଙ୍କ ବାଙ୍କ ।
ଶ୍ୱେତପାରୁଆଗଣ ଝାଙ୍କ ଝାଙ୍କ ॥
ଢସାବାଡ଼ ପୁଷ୍ପବାଗ ଗବାକ୍ଷ ।
ଲୀଳାପ୍ରାଙ୍ଗଣ ସ୍ଫଟିକ ପାବଚ୍ଛ ॥
ଚନ୍ଦ୍ରାତପ ଚିତ୍ରପଟ ମଶାରି ।
ଝୁମ୍ପାସାର ମୁକୁତା କେଶ କେଶ ॥
ପୁଷ୍ପମାଳା କୁରୁବେଲ ଚାମର ।
ନାନା ମଣ୍ଡଣି ଉତ୍ସବ ସମ୍ଭାର ॥
ରାଜ ନଗର ଦାଣ୍ଡ ସିଂହାସନ ।
ପାତ୍ର ମନ୍ତ୍ରୀ ଅମାତ୍ୟଙ୍କ ସଦନ ॥
ଧାଡ଼ ଧାଡ଼ ଶୋଭା ପୁରପଙ୍କତି ।
ମେଢ଼ ମଣ୍ଡପ ଅଟାଳି ଜଗତି ॥
ପୀଢ଼ ପହଣ୍ଡ ପ୍ରାସାଦ ପ୍ରାକାର ।
ନଦୀ ସରୋବର କୂପ ଅପାର ॥
ନାନା ଉପବନ ପୁଷ୍ପକାନନ ।
ଦେଖି ସବୁରି ପ୍ରସନ୍ନ ଆନନ ॥
ଗୋପେ ଷୋଳସହସ୍ର ଘର ଆହିର ।
ସୁଖ ସମ୍ପଦେ ଧନରେ କୁବେର ॥
ଦାଣ୍ଡ ପରିମଳ ଛରାଚନ୍ଦନ ।
ବ୍ରହ୍ମା କରେ ଯେଉଁ ପୁର ବନ୍ଦନ ॥
ତହିଁ ମହିମା କେ ଅବା କହିବ ।
ଯହିଁ ଦେହ ଧରି ହରି ରହିବ ॥
ନନ୍ଦବନରେ ବେଢିଣ ନଗର ।
କାଠ କରଣ ଜାଳନ୍ତି ଅଗୁର ।
ଘନସାର ପୂର୍ଣ୍ଣଦୀପ ଦିହୁଡ଼ି ।
ତରୁମୂଳେ ପଦ୍ମାରମାର ଏଡ଼ି ॥
ସୁନା ରୁପା ଚରଣେ ମଡ଼ାମଡ଼ି ।
ହୀରା ମାଣିକ୍ୟ ଯାଇ ଗଡ଼ାଗଡ଼ି ॥
ଧୂଳି ହୋଇ ମିଳଇ ପୁଷ୍ପରଜ ।
ପଙ୍କ ତହିଁରେ ଗନ୍ଧ ମଳୟଜ ॥

ଅତିଶୋଭା ସୁକୁମାରୀ ଆଭୀରୀ ।
ଅତିରଙ୍ଗେ ନବ ତନୁ ଶାମଳୀ ।
ସୁବାସିତ ଜଳେ ଅଙ୍ଗ ପଖାଳି ।
ଜଗମୋହିନୀ ନନ୍ଦନ ସଖାଳି ॥
ମୁଖ ଶୋଭାବନ ପୂର୍ଣ୍ଣ ଇନ୍ଦୁଆ ।
ପରିଧାନ ଗୁରୁ ସରୁ ସିନ୍ଦୁଆ ॥
ହାସ ବିଳାସେ ଅଚନ୍ତା ଅଦକ ।
ହେମହାରେ ରତ୍ନମୟ ପଦକ ॥
ଅଙ୍ଗ ଅନୁରୂପେ ଆୟୁ ଅନେକ ।
କାନ୍ତି ଉପମେ ବସନ କନକ ॥
ଫୁଲବନ ଲାଗି ପାଦ ଥକାଇ ।
ଥିଥୁ କରଣ ଅମିୟ ପକାଇ ॥
ଝିନବସନେ ଫୁଟି ଅଙ୍ଗ ଦିଶେ ।
ଲୋଭୀ ମଧୁପ ତନୁପ୍ରାନ୍ତେ ବାସେ ।
ସମ ନୁହେଁ କୋମଳାଙ୍ଗେ ଶିରୀଷ ।
ରୂପ ଦେଖିଲେ ଟଳିବେ ଗିରିଶ ॥
ତିନିପୁରେ ଅପୂର୍ବ ଯେ ଦୁର୍ଲଭ ।
ଗୋପ ଭବନେ ସେ ଅତିସୁଲଭ ॥
ରୂପ ଗୁଣ ଶୋଭା ଦ୍ରବ୍ୟ ଧନାଢ୍ୟ ।
ଲତା ପୁଷ୍ପ ବନତରୁ ଫଳାଢ୍ୟ ॥
ସ୍ୱାଦ ସଉରଭ ରସ ପୂରିତ ।
ନାନା ବିଳାସେ ଗାନ୍ଧାର ଚରିତ ॥
ଚିନ୍ତାମଣି ଖଣ୍ଡି ଆଣି ଯହିଁରେ ।
କିସ ଅପୂର୍ବ ଅବା ସେ ତହିଁରେ ॥
କାମଧେନୁ ଯହିଁରେ ପଲ ପଲ ।
ବିହ କାତର ରହିଁ ଜଳ ଜଳ ॥
ନାହିଁ ପ୍ରଚଣ୍ଡ ବାତ ଉତପାତ ।
କାହିଁ ଅକାଳବୃଷ୍ଟି ବଜ୍ରଘାତ ॥
ନାହିଁ ଅନ୍ୟମରଣ ଯମଦର୍ପ ।
ନାହିଁ ଅଗ୍ନି ପ୍ରବଳ ଭୂମିକମ୍ପ ॥
ନାହିଁ ବ୍ୟାଘ୍ର ଭଲ୍ଲୁକ ଦର୍ପ ଭୟ ।
ନାହିଁ ଦାନବ ଧାଡ଼ି ଅପଚୟ ।
ନାହିଁ ଦୁଃଖ ଦାରିଦ୍ର୍ୟ ବ୍ୟାଧିକର ।
ନାହିଁ ମିଥ୍ୟା ଛଦ୍ମ ଅନ୍ୟାୟର ॥

ନାହିଁ ଦୁଷ୍ଟ ପାଷଣ୍ଡ ପାପକର୍ମ ।
ନାହିଁ ପରଧନରେ ଲୋଭଭ୍ରମ ॥
ନାହିଁ ମୋହ ଅଜ୍ଞାନ ଅହଙ୍କାର ।
ନାହିଁ ରାଗ ଶୋକ କ୍ରୋଧ ବିକାର ॥
ନାହିଁ ହାନି ବିୟୋଗ ଅପଯଶ ।
ନାହିଁ ଅଧର୍ମ ଅନ୍ୟାୟ ବିରସ ॥
ସର୍ବ ସମ୍ପୂର୍ଣ୍ଣ ସର୍ବ ଐଶ୍ୱର୍ଯ୍ୟ ।
ସର୍ବ ଶୁଭ ସୁନ୍ଦର କୃଷ୍ଣତେଜ ॥
ସର୍ବସାର ସର୍ବପୂର ବରଣୀ ।
ଶୋଭା ପାଉଅଛି ବହି ଧରଣୀ ॥
ଜାତି ପଦ୍ମିନୀ ଯହିଁ ପରିବାସ ।
ବ୍ରହ୍ମା ବାସବ ସେବେ ଅନୁସର ।
ତହିଁ ନାୟିକା ନାୟକ ମହିମା ।
କିସ କହିବା କେ ଦେବା ଉପମା ॥
ଯେଉଁ ଭୁବନେ କୁବେର ଭଣ୍ଡାରୀ ।
କିସ ଲୋଡ଼ିବା ଧନେ ଗରପୁରୀ ॥
ଶୋଭା ସୁକୁମାରପଣେ ଗଛନ୍ତି ।
କାମ ଅସୁନ୍ଦର ବୋଲି ବାଛନ୍ତି ॥
ଯହିଁ ସ୍ଥାବରମାନେ କଳ୍ପତରୁ ।
ଫଳପୁଷ୍ପ ଗୁଣ କେ କହିପାରୁ ॥
ଯହିଁ କପଟପତଙ୍ଗ ବ୍ରହ୍ମାଦି ।
ବେଦଉପାଧି ଶେଷ ସେ ସମ୍ବାଦ ॥
ଯହିଁ ଭୁବନ ଜ୍ୟୋତି ଆହ୍ଲାଦେ ।
ଶଶୀ ତପନ ଗଗନରେ ଦେଉ ।
ଯହିଁ ବିହାରେ ଗୋଲୋକନାୟକ ।
ତହିଁ ସର୍ବସୁଖ ରସଦାୟକ ॥
ଗାଈ ଗୋଷ୍ଠିକରେ ପାଇ ଗୋରସ ।
ଏକଆରକେ ଅଧିକ ସରସ ।
ଶରଗୋଷ୍ଠିକର କ୍ଷୀର କୁଣ୍ଡାଏ ।
ଦୁଧ ଅଞ୍ଜଳରୁ ସର ମେଣ୍ଟାଏ ॥
ଛେନା ଗୋଟିକା ଅଧାମ ଭେଟଇ ।
ଘୋଳଦଧି ହୋଇ କାହୁଁ ଛୁଟଇ ॥
ଯେତେ ଦଧି ଲବଣିହିଁ ତେତିକ ।
ଘୃତ ହୁଅଇ ପୁଣ ସେ ତେତିକ ॥

ପୁର ଅଗଣା ନୋହଇ ଯେ କୁହଇ ।
କାଠ କୋଷ୍ଟ ବଣିଜରେ ସରଇ ॥
ଯେଉଁ ଭୁବନକୁ ଲକ୍ଷ୍ମୀ ଆଶ୍ରିତ ।
ଅଣିମାଦି ଅଷ୍ଟସିଦ୍ଧି ସେବିତ ।
ତହିଁ ମହିମା କେ କହି ପାରଇ ॥
ନିତି ନିରୂପ ନଦୀ ଧରଇ ।
ଗାଙ୍କ ପ୍ରଥମ ଶର ଦୁହିଁ ମଧ୍ୟ ।
ନଦୀ ହୋଇ କାଳନ୍ଦୀ ମିଶି ବହି ॥
ମୁ ନ କରନ୍ତି ଗୋକୁଳ ଅଙ୍ଗନା ।
କୁଚକୁଙ୍କୁମ ମୋରଜମଣ୍ଡନା ॥
ଗଙ୍ଗା ସରସ୍ୱତୀ ମିଶି ବହିଲେ ।
କୃଷ୍ଣ ପାଦପଦ୍ମୁ ଆଶ୍ରି ରହିଲେ ॥
ବୃନ୍ଦାବନ ଆଦି ନାମ କାନନ ।
ପୁଷ୍ପ ବାଟିକା ଶୋଭା ଉପବନ ॥
ଧର୍ମଜନଙ୍କ ସର୍ବଦା ସଦନ ।
ଫୁଲଧନୁ ଧର ଜନି ମଦନ ॥
ବସ୍ତ୍ର ଆଦିକ ହୋଇଲେ ବଳଇ ।
ନେଖାଜି ମରମେ ବଶିଷ୍ଟ ଛନ୍ଦଇ ॥
ଯେତେ ଜୀବର ତହିଁରେ ନିବାସ ।
ନ ଲାଗଇ କ୍ଷୁଧା ତହିଁ ପିପାସ ॥
ଦୁଷ୍ଟଦାନବ ଧାଡ଼ି ନ ପଡ଼ଇ ।
ମନ୍ଦ ଚନ୍ଦ୍ରଲୋଣ କନ୍ଦ ଛୁଡ଼ଇ ॥
ବ୍ରହ୍ମା ଇନ୍ଦ୍ର ଲଘୁ ହେଲେ ଯହିଁରେ ।
ଆଉ କାହାର ଗରବ ତହିଁରେ ॥
କୂଟ ଚକ୍ରୀ କଂସବଂଶ ନାଶ ।
ଯମଦୂତ ଡରନ୍ତି ଦୂରୁଁ ପାଶ ॥
ଯେତେକ ଅଛନ୍ତି ବ୍ରହ୍ମାଣ୍ଡ ଅଶେଷ ।
ତହିଁ ମଧ୍ୟରେ ଏ ପୁର ବିଶେଷ ॥
ନନ୍ଦ ଯଶୋଦା ନାମେ ରାଜା ରାଣୀ ॥
ଧର୍ମପରାୟଣ ବେନି ପରାଣୀ ।
ଦେବ ବ୍ରାହ୍ମଣ ଚରଣେ ଭକତ ।
ପୁତ୍ରବିହୀନେ ହୋଇଛି ଅଗତି ॥
ତୀର୍ଥବ୍ରତ ବୃନ୍ଦା ପୁଣ କୁହନ ।
ବିଷ୍ଣୁ ସେବନ ଅତିଥି ଅର୍ଚ୍ଚନ ॥

ସେବା ଦୟା ଶାନ୍ତି ଗୁଣ ବହଇ ।
ଦୁଃଖୀ ଦୁଃଖ ଦେଖି ସୁଖୀ ନୁହଇ ॥
ଶମ୍ଭୁ ଶିରେ ଗୋଦୋହନ କରାଇ ।
ମଧୁ ଘୃତରେ ମଣ୍ଡଳ କୁରାଇ ॥
ଲକ୍ଷ କୋଟି କୋଟି ଚମ୍ପା ଚଢ଼ାଇ ।
ଦିବ୍ୟ ଦେଉଳ ମଣ୍ଡପ ଗଢ଼ାଇ ॥
ନାନାଭୋଗ ନିଯୋଗରେ ସେବାଇ ।
ଦେବେ ପୁତ୍ର ହୋଇ ଲୋଡ଼େ ଲୋଭାଇ ॥
ବ୍ରତପରାୟଣ ହରିଶରଣ ।
ଯେତେକ ଦେବେ ତୃପ୍ତି ବିପ୍ରବରଣ ॥
ଅନ୍ନ ବସନ ପାଣି ପଣା ଛନ୍ଦ ।
ଜପ କରେ ମନେ ନେ ଇଷ୍ଟମନ୍ତ୍ର ॥
ହରି ଚରିତ ବଂଶ ଜାଣି ଦିବା ।
ଶତ ଶତ ବ୍ରାହ୍ମଣ ଧୃତ ସେବ ॥
ନିତ୍ୟ ପୁରାଣ ଶ୍ରବଣ କରଇ ।
ଅନେକ ବଇଷ୍ଣବ ଚିହ୍ନ ବହଇ ॥
କୂପ ପୋଖରୀ ଅନେକ ଖୋଳାଇ ।
ରାଜଦାଣ୍ଡରେ ମଣ୍ଡପ ତୋଳାଇ ॥
ଉପଭୋଗ୍ୟ ତରୁ ଲୋଟା ଲଗାଇ ।
ଭେଖୀ ଯୋଗିଙ୍କି ମଣ୍ଡଣା ଘୋଟାଇ ॥
ନିତି ପୁଛଇ ଶୁଣି ଧର୍ମ କଥା ।
ପରଦୁଃଖ ଶୁଣିଲେ ପାଇ ବ୍ୟଥା ॥
ତିନି ବେଳ ସ୍ନାନ ଏକ ଭୋଜନ ।
ନିଶି ଉଜାଗର ନାମ କୀର୍ତ୍ତନ ॥
ଘନସାରରେ ଜାଳନ୍ତି ଜାଗର ।
ସିଂହାସନେ ଶାଳଗ୍ରାମ ଆଗର ॥
ଶୁଚିମନ୍ତ ତପସ୍ୱୀ-ଆଶ୍ରୟର ।
ଧୀର ଧାର୍ମିକ ମହତ ବଗୁର ॥
ଋଷିମାନେ ହୁଅନ୍ତି ଉପଗତ ।
ଦେଖି ନନ୍ଦର ଭକତି ବହୁତ ॥
ଶୁଦ୍ଧ ମନରେ କଲ୍ୟାଣ ବାଞ୍ଛନ୍ତି ।
ବିଷ୍ଣୁ ପୁତ୍ର ହେଉ ବୋଲି ଇଚ୍ଛନ୍ତି ॥
ବେଳୁ ବେଳୁଁ ଭାଗ୍ୟ ଆସି ଭେଟଇ ।
ପୂର୍ବେ ସଞ୍ଚିଥିଲା ପୁଣ୍ୟ ଖଟଇ ॥

ରାମ କୃଷ୍ଣ ବେନି ପୁତ୍ର ହୋଇଲେ ।
ଦେଖି ଜଗଜନ ମୋହିତ ହେଲେ ॥
ଦ୍ୱାପରରେ ବସୁଦେବ ଘରଣୀ ।
ନନ୍ଦପୁରେ ଥିଲା ନାମ ରୋହିଣୀ ॥
ନିତି ଆରାଧେ ଜଣାଏ ତରୁଣୀ ।
ରଖ ଦୁର୍ଗା ଗୋ ଦୁର୍ଗତିତାରିଣୀ ॥
ଏହିମତ ନିରନ୍ତରେ ଜଣାଇ ।
ମହାମାୟା ଗୁଣକୀର୍ତ୍ତି ଭଣାଇ ॥
ଏକଦିନେ ରଜନୀ ନିଦ୍ରାଗତେ ।
ସ୍ୱପନରେ ଦେଖେ ଦେବୀ ଅଗ୍ରତେ ॥
ସିଂହବାହିନୀ ସିଦ୍ଧନାରାୟଣୀ ।
ତନୁ ତପତକାଞ୍ଚନକୁ ଜିଣି ॥
ପୂର୍ଣ୍ଣଶରଦଚନ୍ଦ୍ରମା ବଦନ ।
ହୀରା କୁନ୍ଦକଳୀ ପନ୍ତି ରଦନ ॥
ନୀଳ ନଳିନ ଲୋଚନେ ଅଞ୍ଜନ ।
ଚାରୁ ଚଞ୍ଚଳ ଚାହାଣି ଖଞ୍ଜନ ॥
ଗଣ୍ଡେ ମକରକୁଣ୍ଡଳ ନାଚଇ ।
ଶଶି-ପାଶେ ଦୁଇ ଗ୍ରହ ପାଞ୍ଚଇ ॥
ଚାରୁ ଚିକୁରେ କୁସୁମେ ସାଜଇ ।
ମୋତିସିମନ୍ତ ଜାଲି ବିରାଜଇ ॥
ଗଭା କେତକୀ ପାଖୁଡ଼ା ବେଢ଼ାଇ ।
ହେମପାଟି ଚନ୍ଦ୍ରଝମ୍ପା ଚଢ଼ାଇ ॥
ତିଳଫୁଲ ନାସେ ମୋତି ଝଲକେ ।
ବିମ୍ବଅଧରେ ତାମ୍ବୂଳ ବଳକେ ॥
କମ୍ବୁକଣ୍ଠେ ରୂପସରି ଶୋଭିତ ।
ହୀରାମାଳ ପଦକହିଁ ଲମ୍ବିତ ॥
ତାଡ଼ ଚୁଡ଼ି ଚନ୍ଦ୍ରିକା ଚଉଭୁଜେ ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜେ ॥
ଅଙ୍ଗ ସୁରଙ୍ଗ ପଟେ ଝଟ ଝଟ ।
ହେମମେଖଳା କଟେ କଟୀତଟ ॥
ପାଦେ ରୁଚିର ନୂପୁର ବିରାଜେ ।
ସିଂହ ଚଳନ୍ତେ ରୁଣୁ ଝୁଣୁ ବାଜେ ॥
ସିଦ୍ଧଯୋଗିନୀ ଜଗତବନ୍ଦିନୀ ।
ନନ୍ଦପୁରେ ବିଜେ ଗିରିନନ୍ଦିନୀ ॥
ଦଶଦିଗରେ ସୁଗନ୍ଧ ଚହଟ ।
ହସି କହନ୍ତି ରୋହିଣୀ ନିକଟ ॥
କୋଳେ ଦେଖନ୍ତି ଅଛନ୍ତି କୁମର ।
ଅତି ବିଚକ୍ଷଣ ରୂପେ ସୁନ୍ଦର ॥
ତୁ ଯେ କରୁ ମୋ ଚରଣେ ବନ୍ଦନ ।
ଏହି ହେଉ ତୋର ନିଜ ନନ୍ଦନ ॥
ପୂର୍ବେ ବସୁଦେବର ବୀର୍ଯ୍ୟେ ଜାତ ।
ଦେବକୀର ଗର୍ଭେ ହେଲା ସମ୍ଭୂତ ॥
ଏବେ ପ୍ରସନ୍ନ ହୋଇ ତୋତେ ଦେଲି ।
ପୁତ୍ର କରି ଏହାକୁ ପାଳ ବୋଲି ॥
ଏତେ ବୋଲି କୋଳେ ଦେଲେ ନନ୍ଦନ ।
ତହୁଁ ଚଳିଲେ ନନ୍ଦ ସନ୍ନିଧାନ ॥
ରତ୍ନ ପଲଙ୍କ ଧବଳ ମନ୍ଦିରେ ।
ମନ୍ଦ ପବନ ବୋହଇ ମନ୍ଦିରେ ।
ଚନ୍ଦ୍ରାତପ ଉପରେ ଅଛି ଖଞ୍ଜି ।
ହୀରା ମାଣିକ୍ୟ ମାଳା ପୁଞ୍ଜି ପୁଞ୍ଜି ॥
ନେତ ତୂଳି ଅପସରି ଆଉଜି ।
ଜାଗି ବସି ଗୋବିନ୍ଦ ନାମ ଭଜି ॥
ମାଣିକ୍ୟର ଦୀପାବଳୀ ଜଳଇ ।
ନାନା ସୁଗନ୍ଧେ ଆମୋଦ କରଇ ॥
ଉଠ ଉଠ ନନ୍ଦ ଦେବୀ ବୋଲଇ ।
ନନ୍ଦ ଦେଖି ପାଦେ ଗଡ଼ ଘାଲଇ ॥
ଏବେ ପୁତ୍ର ତୋର ପୁରେ ଜନମ ।
ସଙ୍କର୍ଷଣ ବୋଲିଣ ଦେବୁ ନାମ ॥
ରୋହିଣୀର କୋଳରେ ପୁତ୍ର ଅଛି ।
ଅଚେତରେ ସେ ସୁନ୍ଦରୀ ଶୋଇଛି ॥
ଏବେ ପୁତ୍ରକୁ ଯାଇଣ ସମ୍ଭାଳ ।
ମନ ସଂଶୟରେ କିଛି ନ ଭାଳ ॥
ଉଠି ନନ୍ଦ ଦେବୀ ମୁଖ ଅନାଇ ।
କରଯୋଡ଼ି ବିନୟରେ ଜଣାଇ ॥
ଏବେ ହୋଇଲା ରୋହିଣୀ ସୌଭାଗ୍ୟ ।
ଯଶୋଦାର କି ହୋଇଛି ଅଭାଗ୍ୟ ॥
ଓଷା ବାର କରି ତୋତେ ଜୁହାରି ।
ଶୁଣୁ ନାହୁଁ କି ତାହାର ଗୁହାରି ॥

ଦେବୀ କୋଇଲେ ଶୁଣ ମୋର ପିତା ।
ମୁହିଁ ହୋଇବି ତାର ନିଜ ସୁତା ॥
ଆଜିଁ ବରଷେ ସାତଦିନ ଅନ୍ତେ ।
ବିଷ୍ଣୁ ସମାନ ଜାତ ହେବ ସୁତେ ॥
ଏତେ କହିଣ ଅନ୍ତର ହୋଇଲେ ।
ନନ୍ଦ ଯଶୋଦାଙ୍କୁ ଗାଇ କହିଲେ ॥
ନିଦ୍ରା ଅଳସ ଭୁମ୍ବର କାଳକ ।
ଏବେ ରୋହିଣୀର ହେଲା ବାଳକ ॥
ବେଗେ ଯାଇ ସୁସ୍ଥ କର କୁମର ।
[illegible] ବୋଲନ୍ତି କି କଥା ଭ୍ରମର ॥
ଷାଠି ବରଷ ହେଲା ପୁତ୍ରର ଛନ୍ଦ ।
ସୁଖ ହୋଇଲା ବଷାଦନରେ ନିଲଛନ୍ଦ ।
ନ ଦିଶଇ ଗର୍ଭ ହେବା ମଞ୍ଜାର ।
ମୋତେ ଉପହାସ କର ପରୁର ॥
ଅସମ୍ଭବ ନ ଆସଇ ମନକୁ ।
ଏହା ନ କହି ମହତ ଜନକୁ ॥
ନନ୍ଦ ବୋଲନ୍ତି ନୁହଇ ଏମନ୍ତ ।
ଆମ୍ଭ ଭାଗ୍ୟେଁ ପ୍ରାପତ ହେଲା ପୁତ୍ର ॥
ତୁମ୍ଭ ଗର୍ଭେ ହୋଇବେ ଆଜ ସୁତ ॥
ଦୁର୍ଗା କହିଗଲେ ମୋତେ ଗୁପତେ ॥
ଏହି ସମୟେ ବାଳକ କାନ୍ଦିଲା ।
ପୁରଜନଙ୍କ ଶ୍ରବଣେ ଭେଦିଲା ॥
ଚେଇଁ ସ୍ୱପନେ ଉଠିଲା ରୋହିଣୀ ।
ସତ ଦେଖିଲା କୋଳେ ପୁତ୍ରମଣି ॥
ତନୁ ଧବଳ କୋମଳ ସୁନ୍ଦର ।
ରୂପ କାମଜିଣି କି ମନୋହର ॥
ଚନ୍ଦ୍ରବଦନ ଘୂର୍ଣ୍ଣିତ ଲୋଚନ ।
କୁଆଁ କୁଆଁ ଉଚ୍ଛୁଳଇ ବଚନ ॥
ପୁରଜନ ସେ ଉବୁଡ଼ା ଉବୁଡ଼ ।
ଲହି କାଟି ଉଞ୍ଚାଇଲେ ଅନୁଡ଼ ॥
ପୁର ସାନନ୍ଦ ବହୁତ ଉତ୍ସବେ ।
ନନ୍ଦ ନନ୍ଦନ ପାଇଲେ ଅକ୍ଷୋଭେ ॥
କଂସ ଭୟେ ଗୁପତ କଲେ ତହିଁ ।
କେତେ ଦିନ ଏମନ୍ତେ ଗଲା ବହି ॥

ଜ୍ୟୋତିର୍ମୟୀ ଦିଶିଲେ ନନ୍ଦ ଆଗେ ।
ପ୍ରଭୁ କାମିନୀ ତ୍ରିଭୁବେଗ ସଙ୍ଗେ ॥
ଗର୍ଭ ହୋଇଲା ଦେବୀ ଯଶୋବନ୍ତୀ ।
ଦିନୁ ଦିନୁ ତନୁ ଶୋଭା ଦିଶନ୍ତି ॥
ମାସ ଭାଦ୍ରବ କୃଷ୍ଣଅଷ୍ଟମୀରେ ।
ଗର୍ଭ ପ୍ରସବ ଅର୍ଦ୍ଧ ରଜନୀରେ ।
ନନ୍ଦ ଦେଖିଲେ ଶୟନେ ସ୍ୱପନ ।
ନବଘନିଁ ନୀଳମଣି ଲପନ ॥
ପିତା ପିତା ବୋଲି କୋଳେ ଚଗିଲେ ।
ଦାଢ଼ି ଧରିଣ ଗେଲ ଆଉଁସିଲେ ॥
କଂସ ଭୟେ ମୁଁ ଅଇଲି ପଳାଇ ।
ତୋର ମିତ୍ର ନେଲା ଝିଅ ବୋହୁରାଇ ।
ପୁଅ ଗୋଟିଏ ଦେଇ ଆସୁଥିଲା ।
ବଡ଼ି ଯମୁନା ଛଡ଼ାଇ ରଖିଲା ॥
କଂସ କଚାଡ଼ିଲା ଝିଅ ଶିଳାରେ ।
ବିଦ୍ୟୁ ଜିଣି ଗଲା ଶୂନ୍ୟ ହେଲାରେ ।
ପୁଣି କହିଗଲା ସତ୍ୟ ବଚନ ।
ତୋର ଶତ୍ରୁ ଜାତ ଗୋପଭୁବନ ॥
ନନ୍ଦ ଉଠିଲା ସ୍ୱପନ ତେଜିଣ ।
ଯଶୋଦାର କୋଳେ ଦେଖେ ନଂଦନ ॥
ଦେଖିଥିଲା ସ୍ୱପନ ଯେଉଁ ରୂପ ।
ତକ୍ଷଣେ ଦେଖିଲା ସେହି ସ୍ୱରୂପ ॥
ବାଳପୁଅ କୁଆଁ କୁଆଁ ଡାକଇ ।
ପରଜନ ନାମେ ନଂଦ ହାଁକଇ ॥
ଚେତ ଉଠିଣ ଦେବୀ ଯଶୋବନ୍ତୀ ।
ପୁତ୍ର ମୁଖ ଚାହିଁ ଦୁଃଖ ଲେଖନ୍ତି ॥
ପରିଜନ ପୁରେ ହେଲେ ଗହଳ ।
ଧୂପ ଦହୁଡି ଜଳଇ ବହଳ ॥
ହେମ ଶାମୁକାରେ ନାଭି ଛେଦିଲେ ।
ନାନା ସୁଗନ୍ଧରେ ଅଙ୍ଗ ଶୋଧିଲେ ॥
ତୀର୍ଥ ଜଳରେ କରାଇ ସ୍ନାହାନ ।
ଅଙ୍ଗ ପୋଛି ସରୁ ଝିନ ବସନ ॥
ଅଗ୍ନି ଆରାଧି ଶ୍ରୀଅଙ୍ଗ ତାପିଲେ ।
କର ପଲ୍ଲବ ହୃଦରେ ରୂପିଲେ ॥

ମଙ୍ଗଳପାଠ ନାରୀପୁଣ ଗଇଲେ ।
କରେ ବୋଲଣ ଗନ୍ଧ ଚଢାଇଲେ ॥
ପୋଖଣ୍ଡକ ସମ୍ଭାଳଣ ବସାଇ ।
ଅଗ୍ନି ସ୍ଥାପିଣ ଅଙ୍ଗରେ ଘଷାଇ ॥
ବୃଦ୍ଧ ପୋଖଣ୍ଡ ଧାନୀକି ଲୋଡାଇ ।
ଦୂଧ ଦଅନ୍ତି ଭୁଲାରେ ବୁଡ଼ାଇ ॥
କେହୁ ବୋଲେ ଧରିବ ଜନ୍ମପାଣି ।
କେହୁ ଘୋରନ୍ତି ଘୋରସଜ ଆଣି ॥
ବିଧିମତେ ରସାୟନ ଦଅନ୍ତି ।
ଦୁଧ ସଙ୍ଗତେ ଗୋଳଣ ପିଆନ୍ତି ॥
ମହାଜାଲ ଗୁଣିଆଁ ମୁଦ୍ରା ବାନ୍ଧ ।
ଭୂତ ପ୍ରେତ ଡାକିନୀକି ନିରୋଧ ॥
ପୁର ନଗର ଉତ୍ସବେ ହରଷ ।
ଏକ ଆରକେ ଶରଧା ସରସ ॥
ହରି ମଙ୍ଗଳ ଆନନ୍ଦ ଅବନୀ ।
ଶୁଭେ ଆକାଶୁଁ ଦୁନ୍ଦୁଭିର ଧ୍ୱନି ॥
ଘୋର ତମ ନାଶି ଉଦେ ତପନ ।
ବିକଶିତ ପଦ୍ମିନୀ ଲପନ ॥
ଯହୁଁ ଗୋପୀଏ ବାରତା ପାଇଲେ ।
ଅସମ୍ଭାଳେ ଶରଧାରେ ଧାଇଁଲେ ॥
ଯେହୁ କହିଲ ପାଇଲ ବଧାଇ ।
ଏକ ଆରକେ ଦଅନ୍ତି ସଧାଇ ॥
ହାତେ କଙ୍କଣ ମଥାରେ ବସନ ।
ହାର କୁଣ୍ଡଳ ପଦକ ଭୂଷଣ ॥
କେହୁ କରାଇ କନକ ସ୍ନାହନ ।
କେହୁ ଦେଲ ଧନରତ୍ନ ବାହାନ ॥
ବୃଦ୍ଧକାଳେ ନନ୍ଦ ପୁଅ ପାଇଛି ।
ତେଣୁ ସବୁରି ଆନନ୍ଦ ହୋଇଛି ॥
ନନ୍ଦ ଆସ୍ଥାନ କରିଛି ବାହାରେ ।
ଘନ ଘନ ଲୋକ ପୂରେ ତହିଁରେ ॥
ଏକ ଆରକେ କରନ୍ତି ପ୍ରଶଂସା ।
ଏତେକାଳେ ହୋଇଲା ଶୁଭଦଶା ॥
ଆମ୍ଭମାନଙ୍କ ଭାଗ୍ୟ ବିକଶିଲା ।
ଗୋପପୁରେ ମଙ୍ଗଳ ପ୍ରକାଶିଲା ॥

ଶୁଣି ନନ୍ଦର ତନୁ ପୁଲକଇ ।
ଅଶ୍ରୁଜଳ ନୟନୁ ନିକଳଇ ॥
ଅନ୍ତଃପୁରେ ବାହାର ପରିଜନ ।
କର ଯୋଡ଼ି ଜଣାଏଁ ହେ ରାଜନ ॥
ବିଧିମତେ ବିଧାନ ହେଲା ସର୍ବ ।
ପୁଅ ପୋଖଣ୍ଡୀଙ୍କର ସର୍ବଶୁଭ ॥
ହେମଘଟରେ ଅମୃତ ପୂରାଇ ।
ଶିରେ ନଡ଼ି ସ୍ନାହାନ କରାଇ ॥
ଭୃତଜନମାନେ ଧନ ପାଇଲେ ।
ଯେତେ ଭଣ୍ଡାରେ ସଞ୍ଚିତ ବନ୍ଧିଲେ ॥
ଜୂର କଲେକ ଘାଟ ବାଟ ତୋଠ ।
ସର୍ବତନ୍ତରେ ଆନନ୍ଦ ଉଚ୍ଛାଟ ॥
ଗୋପମ୍ବର୍ଗ ଆସନ୍ତି ହରଷେ ।
ଅର୍ଘ ସ୍ଥାଳୀ କରେ ଅଙ୍ଗ ସୁବାସେ ॥
ଦେଖି ଅନ୍ତଃଶାଳରେ ନନ୍ଦନ ।
ପ୍ରତ୍ୟକ୍ଷରେ ଜାତ କି ଏ ମଦନ ॥
ନୈସ ନିଷ୍ଠଳ କରଣ ନରୋପେ ॥
ପ୍ରାଣମରକତ ଲିଙ୍ଗ ସ୍ୱରୂପେ ॥
ତନୁ ଅତସୀକୁସୁମ କୋମଳ ।
ନୀଳ ଉତ୍ପଳ ନୟନଯୁଗଳ ॥
ନୀଳମଣି ଦର୍ପଣ ବିଧୁମୁଖ ।
ଦେଉଅଛି ନୟନେ ସୁଧା ସୁଖ ॥
ତିଳପୁଷ୍ପ ନାଶା ଗଣ୍ଡ ମୁକୁର ।
ଘନଭ୍ରୂକୁଟୀ କୁଟିଳ ଚିକୁର ॥
ସୌମ୍ୟ କପୋଳ ସୁରେଖ ଭ୍ରୂଲତା ।
କର୍ଣ୍ଣ କଣଳସୁଧାର ସୃରଚା ॥
କମ୍ବୁକଣ୍ଠ ହୃଦୟ ଯେ ବିଶାଳ ।
କରପଦ୍ମ ଦୁଇବାହୁ ମୃଣାଳ ॥
କଟୀ ଡମ୍ବରୁ ପାଦ କୋକନଦ ।
ଗୋପୀ ଦେଖିଣ ବଢ଼ିତ ଆନନ୍ଦ ॥
ଶୋଇଛନ୍ତି ଉତ୍ତାନଶାୟୀ ହୋଇ ।
ଯହିଁ ନୟନ ପିଚ୍ଛ ନ ଚଳଇ ॥
ବାଳ ଲୋଚନେ ଅଳପ ଅନାଇ ।
ବ୍ରଜନାରୀଙ୍କ ମନକୁ ମଜାଇ ॥

କର ଏକତାଳି କର ମଞ୍ଜାଳେ ।
ପୁଣି ଚରଣ ସଞ୍ଚାଳି ପ୍ରଚାଳେ ॥
ଖଣେଯେ ରହନ୍ତି ଖଣକେ କାନ୍ଦନ୍ତି ।
ସ୍ତନ ବଦନେ ଯଶୋଦା ଦିଅନ୍ତି ॥
କୋଳେ ଧରି ମାଏ ଦୁଧ ପିଆନ୍ତି ।
ଗୋପୀ ମାନଙ୍କୁ ବଧାଇ ଦିଅନ୍ତି ॥
ହାର ଅଳଙ୍କାର ଧନ ସୁବର୍ଣ୍ଣ ।
ଅତି ଉତ୍ସବ ନନ୍ଦର ଭୁବନ ॥
ଜଗି ପାଳନ୍ତି ସେ ପୁଅ ଚୋଖଣ୍ଡି ।
ଯେତେବେଳେ ଯେ ବଧାଈ ଉକତି ॥
ତାଳୁମୂଳେ ତଇଳ ଦେଇ ଘଷି ।
ଅଙ୍ଗେ କୁଙ୍କୁମ ନାନାଗନ୍ଧେ ପିଷି ॥
ଅତି କୋମଳ କନ୍ଦୁଳ ମୂରତି ।
ଟୋପୀ ଡେକଲେ ମଦନ ପୀରତି ॥
ଧାଈ ପରିବାରିଗଣେ ଅଣାଇ ।
ନାତି କୁମର ଚରଗ୍ରୁ ବେପାର ॥
ନିଶି ଦିବସେ ଜଗିଣ ପାଳନ୍ତି ।
ଅଗ୍ରଧୂପେ ଶୀକର୍ପୂର ଜାଳନ୍ତି ॥
ନାନା ମଣ୍ତ୍ରଣି ସୂତିକା ମନ୍ଦିରେ ।
ବାତଭେଦ ନାହିଁ ସୂଚସନ୍ଧିରେ ॥
ଠୁଣଝୁଣ ଝୁମ୍ପୁକା ରଙ୍ଗଝୁମ୍ପା ।
ହେମ କମ କମଳ ଥୋପା ଥୋପା ॥
ପାଟସୁତାରେ ଗୁନ୍ଥାଇ କେଣ୍ଡୁଆ ।
ଦୁଇ ପାଶେ ପହଞ୍ଚାଇ ମେଣ୍ଡୁଆ ॥
ପେଣ୍ଡି ପେଣ୍ଡି ସେ ହେଙ୍ଗୁଳ କଉଡ଼ି ।
ଲେଣ୍ଡି ଲେଣ୍ଡି ଓହଳେ ଧାଡ଼ି ଧାଡ଼ି ॥
ଗୁହିଁ ଖେଳନ୍ତି ପଦ ପାଣି ଗୁଳି
କରବର ହସନ୍ତି ନେହ ଡାଳି ॥
ଦିନୁଦିନ ଅନୁଆନ କୁମର ।
ହେତୁ କରି ଶୁଣ ନଳକୂବର ॥
ଲାହୁଲେଶଖଣ୍ଡି ଝଡ଼ ପଡ଼ିଲା ।
ସେକବାରେ ଘାଏ ଶୁଙ୍ଖି ଝଡ଼ିଲା ॥
ମୂଳେ ଦରଜ ବ୍ୟଥା ଥିଲା ରହି ।
ତହିଁ ମକ୍ଷିକା ପାଦ ଦେଲା ନେଇ ॥

ଚମକିବା ଦାରେ ମହୀ ଅସ୍ଥିର ।
ଟଳଟଳ ବନଗିରି କନ୍ଦର ॥
ଉପସର୍ଗ ବୋଲି ଲୋକେ କଳେଲେ ।
ଭୂମିକମ୍ପ ବୋଲି କେହୁ ଭାଳିଲେ ॥
କେହୁ ବୋଲନ୍ତି କୁମର ଦମକେ ।
ମହୀହାଲୋଳ ହୋଇଲା ଚମକେ ॥
ଶୁଣି ଉପହାସ କଲେ ବଚନ ।
ବିପ୍ରବରଣ ଦେବତା ଅର୍ଚ୍ଚନ ॥
ଗୋପେ ଅଛଲା ଏମନ୍ତ ପୁତନା ।
ପୁତ୍ରବନ୍ଧନେ କ୍ଷୀରପୀନସ୍ତନା ॥
ରୂପେ ସୁନ୍ଦର ଅଖିଳ ମୋହନା ।
ରୂପ ଦେଖି ଭଳେବ ସୁରମୁନି ॥
ଲୋକେ ପଚାରିଲେ ରହି କହଇ ।
ପୁତ୍ର ମଲା ସ୍ତନ ସହି ନହଇ ॥
ବହି ଦେଇ ହରିଲା ମୋ ବଳୁକ ।
ତୁମ୍ଭ କାହାର ବାଳକ ଅଛୁକ ॥
ଧାଈ ହୋଇଣ ସ୍ତନ ପିଆଇବି ।
ବଳ ପ୍ରାକର୍ମ ଯଶ ଦିଆଇବି ॥
ଶୁଣି ଆଗସରି ଗୋପୀ ଧାଇଁଲେ ।
ଯାଇଁ ଯଶୋଦା ଆଗରେ କହିଲେ ॥
ମାଏ ଲୋଡ଼ୁ ଯେ ଥିଲା ଦୁଧଧାଈ ।
ଯୋଗେ ଦୁଆରେ ଜଣେ ଅଛି ରହି ॥
ଆଜ୍ଞା ହୋଇଲେ ଛାମୁକୁ ଆସିବ ।
ଦେଖନ୍ତେଣ ତୁମ୍ଭ ମନ ତୋଷିବ ॥
ଶୁଣି ଦେବୀ ବୋଇଲେ ଆସ ଯେନ ।
ଆଗସରି ଧାଇଁଲେ ଜଣ ତିନ ॥
ମାୟୀତରୁଣୀ ବେଗେ ଘେନିଗଲେ ।
ଯଶୋଦାଙ୍କ ଛାମୁରେ ନେଇ କଲେ ॥
ଦେବୀ ଚରଣ ତଳେ ଗଡ଼ଧାଳି ।
ସ୍ତନ ଧରି ବୋଲଇ ମଲି ମଲି ।
ସ୍ତ୍ରୀଏ ଜାଣଇ ସ୍ତ୍ରୀଙ୍କ ବେଦନା ।
ପୁଅ ପିଆଇ ଏ ଦୁଃଖ ଛେଦନା ॥
ସ୍ତନପିଡ଼ାରେ ଲୋଡ଼ଇ ମରି ତ ।
ପଛେ ଜାଣିବ ତ ସବୁ ଚରିତ ॥

ଏତେ କହି ପୁଅକୁ କୋଳକୁଁ ନେଲା ।
କୋଳେ ବସାଇ ମୁଖେ ସ୍ତନ ଦେଲା ॥
ମାୟାରୂପେ ମାରି ତ ଅଛୁ ଆସି ।
ଜାଣି ଧଇଲେ ସ୍ତନ ତା ଆନେକ୍ଷାଶି ॥
ବିଷ କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ।
ଦଇତୁଣୀ ନାଶି ଗୋପୀ ତୋଷିଲେ ॥
ଗୁଡ଼ ଗୁଡ ବୋଲି ରଡ଼ି ଗ୍ରାଞ୍ଜିଲା ।
ଛିଣ୍ଡି ଗୋପପୁର ମାଡି ପଡ଼ିଲା ॥
ଦଇତୁଣୀଜନ୍ମ ହେଲା ନିସ୍ତାର ।
ଦେତାଯୋଜନ ତନୁ ତା ବିସ୍ତାର ॥
ଖଣ୍ଡପର୍ବତ ପ୍ରାୟ ସ୍ତନ ଦୁଇ ।
ନାଲଶିଖୀ ମଧ୍ୟେ କି ବିହରଇ ॥
ଜଳବିହୀନ ହ୍ରଦ ତା ଉଦର ।
ଜାନୁଯୁଗଳ କି ବୃକ୍ଷ ଆକାର ॥
ପାଦ ଦିଶଇ ଉପୁଡା ସ୍ଥାବର ।
ଲମ୍ବି ଅଛଇ ପୁଣି ଦୁଇ କର ॥
ଖଳଶିଳାକୁ ଜିଣି ତନୁ ଝଳି ।
ତାଳତରୁପରାଏ ରୋମାବଳୀ ॥
ଗିରି ଗୁହାପ୍ରାୟ ନାଶାବିବର ।
କେଶ ଖାଙ୍କର ଦିଶେ ଭୟଙ୍କର ॥
ଦେଖି ଗୋପୀ ଗୋପାଳ ଯେ ଡରିଲେ ।
ଭୟେ ଘୁଞ୍ଚି ଅପସରି ରହିଲେ ॥
ଦେଖି ଯଶୋଦା ଦେହେ ଜ୍ଞାନ ନାହିଁ ।
ତରଛରେ ପଡ଼ିଲା ମୋହ ଯାଇଁ ॥
ଚେତ ଲୋଡ଼ି ଉଠେ ନିଜକୁମରେ ।
ପୌର୍ଣ୍ଣମାସୀ ଭଗବତୀ ସୁମରେ ॥
ଜୟ ସିଦ୍ଧଯୋଗିନୀ ଯୋଗମାୟା ।
ସଦାକାଳେ ତୁ କରୁ ମୋତେ ଦୟା ॥
ପାଦେ କରୁଅଛି ତୋର ବନ୍ଦନ ।
ତୋର ଦେଲାର ଏ ମୋର ନନ୍ଦନ ॥
ମହା ବିପଦ କଷଣୁ ତାରିବୁ ।
ଶୋକ ସମୁଦ୍ରରୁ ପାରି କରିବୁ ॥
ମୂର୍ତ୍ତିମନ୍ତରେ ଦେଖା ପୌର୍ଣ୍ଣମାସୀ ।
ଯଶୋଦାକୁ ସେ ବଚନେ ଆଶ୍ୱାସି ॥

ଦେଖା ବୀରକୁ ଯାଇ ଆଜ୍ଞା ଦେଲେ ।
ପୁତ୍ର ଲୋଡ଼ି ଆଣ ବୋଲି ବୋଇଲେ ॥
ଗୋପ ଭଲ ମନ୍ଦ ତୋତେ ଲାଗଇ ।
ସେହିଦିନୁ ବୀର ଗୋପେ ଜଗଇ ॥
ତିନିକୋଶ ଅନ୍ତରେ ନନ୍ଦବଳା ।
ପୂତନାର ହୃଦରେ କରେ ଖେଳା ॥
ଶିଶୁସିଂହ ବିହରେ ବନ ମଧ୍ୟେ ।
କରି-କୁମ୍ଭ ବସେ କି ଜିଣି ଯୁଦ୍ଧେ ॥
ପୌର୍ଣ୍ଣମାସୀ କୋଳରେ ବୀର ଦେଲେ ।
ଯଶୋବନ୍ତୀକି ପୁତ୍ର ସମର୍ପିଲେ ॥
କୋଳେ ଧରି ମାଏ ମନେ ଅତ୍ରତେ ।
ପୁତ୍ର ପାଇଲେ ନ ଯାଇ ପରତେ ॥
ମୁଖେ ଚୁମ୍ବ ଦେଇଣ ଆଉଁସିଲେ ।
ଭୟମନେଣ ମନ୍ଦିରେ ପଶିଲେ ॥
ନିଜରୂପ ଧରି ମଲା ପୂତନା ।
ଦେଶ ବିଦେଶ ଭାଜି ହେଲା ଚୂନା ॥
ପୀଢ଼ ପ୍ରାସାଦ ଅଟ୍ଟାଳ ଭାଜିଲା ।
ଯେତେଠାରେ ତନୁ ତାର ବାଜିଲା ॥
ଦେଖିବିସ୍ମୟ ଚିତ୍ତ ନନ୍ଦରାଏ ।
ଦଇତୁଣୀକୁ ଦହନ କରାଏ ॥
ଅଙ୍ଗ ସଉରଭେ ଦିଗ ପୂରିଲା ।
ମାୟାଜାଳ ପଟଳ ତରିଗଲା ॥
ସାତ ପାଞ୍ଚ କରନ୍ତି ଅନୁମାନ ।
ବଡ ଆଶ୍ଚର୍ଯ୍ୟ ଏ ନନ୍ଦ ନନ୍ଦନ ॥
ଅଦଭୁତେ ମଲା ମାୟା-ରାକ୍ଷସୀ ।
କେହୁ ବୋଲଇ କଂସ ଥିଲା ପେଷି ॥
ସ୍ତନେ ବିଷ ଭରି ମାରେ ବାଳକ ।
ଧର୍ମ ସହିବଇଁ କେତେ କାଳକ ॥
ସେହି ସ୍ତନ୍ୟ ବିଷ ଦେହେ ପଶିଲା ।
ତେଣୁକରି ଏ ଅସୁରୀ ମରିଲା ॥
ନନ୍ଦ କରିଅଛି ଯେତେ ସୁକୃତ ।
ପୁତ୍ରଠାରେ ସେ ହୋଇଲା ଉଦ୍ଧତ ॥
ଯାକୁ ଦେବାସୁର ନଜରେ ଡରନ୍ତି ।
ନାମ ଶୁଣି ବୀରମାନେ ଥରନ୍ତି ॥

ଯୋଗ ଦେଖନ୍ତ ଯେଷ ଝନାଷ୍ଟ ହୋଇଲା ।
ଏକାଜଣେ ଥାଇ ପୁଣ ବୋଇଲା ॥
ମୋର ଦର୍ଶନରେ ଏମନ୍ତ ଦିଶୁଛି ।
ଏହି ବନକୁ ଆରିଷ୍ଟି ପଡ଼ୁଛି ॥
କଂସ ଗୋପଙ୍କୁ ଅହନ୍ତା କରିବ ।
ଆମ୍ଭ ଧନ ସମ୍ପଦନ୍ତି ହରିବ ॥
ଗୁପତେରେଣ ଅସୁର ପେଷିବ ।
ଗୋପପୁରେ ଜନସବୁ ନାଶିବ ॥
ଶୁଣି ଆରସରି ବୋଲେ ଆରେକ ।
ଯେହ୍ନୁ ରଖିଲେ ବିପଦୁଁ ବାରେକ ॥
ଶଏ ଥର ହୋଇଲେ ସେ ରଖିବେ ।
ପ୍ରତି ପାଳିବାକୁ ଜଣେ ଯୋଖିବେ ॥
ଏବେ ଏହାକୁ କେହ୍ନୁ ଥିଲ ଜାଣି ।
ମଲା ଜନ୍ମରୁ ଯିନା ପରମାଣି ॥
ଏହି ରୂପେଟି ଧର୍ମ ହେବେ ସାହା ।
ଜୟ ହୋଇବ ଚିନ୍ତା କଲେ ତାହା ॥
ଯଶୋଦାର ଶୋକ ଦେଖି ଥୋକାଏ ।
ପ୍ରବୋଧନ୍ତି କୁହନ୍ତି ଶୁଣ ମାଏ ॥
ତୋର ଶିତଳ ଅଟଇ ଉଦର ।
ଏତେ ଆପଦୁଁ ତରିଲା କୁମର ॥
ଧର୍ମେ ଥିଲାକୁ ଯେ କଷ୍ଟ ନୋହିଲା ।
ମନ୍ଦ ଚିନ୍ତି ପ୍ରାଣେ ନାଶ ଲଭିଲା ॥
ଶୋକଭର ହୋଇ ଦେଖି ଯଶୋଦା ।
ଉରପର ବସନ ଲୁହେ ଓଦା ।
ଦମଦମ ହୋଇ ଭୟେ କାତର ।
ଛନଛନ ମନ ବୁଦ୍ଧି ପାତଳ ॥
ମୁହିଁ କେମନ୍ତ ମାଏ ନୋ ଜାଣିବ ।
ଦଇତୁଣୀ ମାୟା ବୋଲି ମଣିବ ॥
ତାର ପୁତ୍ର ମଲା ବୋଲି କହିଲା ।
ସ୍ତନଭର ମୋର ସହି ନୋହିଲା ॥
ଯହିଁ ବାଳକ ଥିବ ମୁଁ ରହିବ ।
ଧାଇ ହୋଇଣ ସ୍ତନ ପିଆଇବ ॥
ତାର ବଚନେ ମୋହିତ ହୋଇଲି ।
କୋଳୁଁ ପୁତ୍ର ନେଲା କଷ୍ଟ ନୋହିଲ ॥

ଦେଖୁଁ ଦେଖୁଁ ଅନ୍ତରିକ୍ଷେ ପଡ଼ିଲା ।
ବଧ ସ୍ନେହେ ଖାଇଣ ଲୋଡ଼ିଲା ॥
ମୁହିଁ ବଡ ଅଭାଗିନୀ ମଞ୍ଚରେ ।
କହ୍ନୁଁ କହ୍ନୁଁ ଲୁହ ନେବ ସଞ୍ଚାରେ ॥
ଅପୁତ୍ରିକ ହୋଇଣ ଦିନ ଗଲା ।
ପୁଅ ଗୋଟିଏ ବୃଦ୍ଧକାଳେ ହେଲା ॥
ତାକୁ ଅନୁଦିନଠାରୁ ଆରିଷ୍ଟି ।
ଭଲା ଘଟଣା କଲା ପରମେଷ୍ଠୀ ॥
ଜଇଥିବାର ମୋର ଅକାରଣ ।
ବେଗ ହୋଇ ହେଉ ମୋର ମରଣ ॥
ବଜ୍ରାଲାଞ୍ଛରେ ପୁତ୍ର ଦେହ ଝାଡ଼ ।
ଶାନ୍ତି କରାଇ ଗ୍ରହପୁତ୍ର ଲୋଡ଼ ॥
ଯଶୋଦାର ବୋଲେ ପୁଅ ନରପତି ।
ଏକ ଆରେକ କୁହା କୁହି ଗୋପୀ ॥
ତୁମ୍ଭେ କି ବୋଲ ସଖି ଗୋ ବୋଲୁଛ ।
ବାଳପୁଅ ସଙ୍ଗରେ କି ଗଣୁଛ ॥
ତ୍ରିଭୁବନ ବାଳକର ଏ ରତି ।
ଅଭିନବ ମନସିଜ ମୂରତି ॥
ନେତ୍ର ଫୁଲଶର ଭ୍ରୂରୁ କୋଦଣ୍ଡ ।
ଅଙ୍ଗେ ଭେଦଣ କଲା ଖଣ୍ଡ ଖଣ୍ଡ ॥
ମୋର ମର୍ମ ହେଉଅଛି ଯେମନ୍ତ ।
କହି ନୋହିବ ବଚନ ତେମନ୍ତ ॥
ତୁମ୍ଭ ମନକୁ ତୁମ୍ଭେ ପରମାଣ ।
ମୁଁ ତ ଧରି ନ ପାରଇ ପରାଣ ।
ବାଳପୁଅ ବୋଲି କରି ହରଷେ ।
କ୍ଷୀର ସଙ୍ଗତେ ପରାଣ ଶୋଷେ ଏ ॥
ଦୀପ ଅନଳ ପତଙ୍ଗ ସମାନ ॥
ସମିଧର ବଳେ ଦହେ ଭୁବନ ।
ଅନଙ୍ଗର ଅଙ୍ଗ ଯେବେ ନ ଥିଲା ।
ତପିଗଣେ ମନସିଜ୍ଜ ମର୍ଦ୍ଦିଲା ॥
ଅଙ୍ଗ ବହୁଛି ଅନଙ୍ଗ ବଚନ ।
ଯୁବା ଯୁବତୀ ମୋହିବା କଞ୍ଚିତ ॥
ଏକ ଯୁବତୀଏ ଥାଇ ବୋଇଲା ।
ତୋର କଥା ଏ ମନକୁ ନଇଲା ॥

ଏ ତ ଅପୂର୍ବ ମଦନମୋହନ ।
ସେ ତ ହରି ନେତ୍ରାନଳେ ଦହନ ॥
ଏ ତ ଚାହିଁଲେ ହରି ହେବ ଦହି ।
ଜଗଜ୍ଜନ ମନକୁ ଅଛି ମୋହି ॥
କାମ ସମାନେ କୁରୂପ କରୁଛି ।
ମରକତ ବୋଲି କାଚ ଧରୁଛି ॥
ଏକ ଗୋପୀଏ ବୋଇଲା ମିତଣୀ ।
ଏବେ ଚେତିଲି ତୁମ୍ଭ ତହୁଁ ଶୁଣି ॥
ଦିନାନ୍ତର ତଳରେ ନଦୀକୂଳେ ।
ସ୍ନାନ ସୁବେଶ ସଖୀଗଣ ମେଳେ ॥
ମୁନିଗଣ ଆସନ୍ତେଣ ଚାହିଁଲୁଁ ।
ଭୟେ ସଲଜ୍ଜଭାବରେ ରହିଲୁଁ ॥
ଶୋଭା ସୁନ୍ଦର ଆମ୍ଭ ରୂପ ଦେଖି ।
ଜଣେ ପଚାରିଲେ ତହିଁ ନିରେଖି ॥
ଋଷିଗଣକୁ ପ୍ରଶଂସି କହନ୍ତି ।
ଦେଖ ସୁନ୍ଦରୀ ରୂପେ ରୂପବନ୍ତୀ ॥
ତିନିପୁରେ ନାହିଁ ରୂପ ସମାନେ ।
ଶୁଣି ବୋଇଲେ ସଙ୍ଗ ମୁନିମାନେ ॥
ହରି ଅଙ୍ଗସଙ୍ଗ ହେବ ଯହିଁରେ ।
ରୂପ ସୁନ୍ଦର ଲୋଡ଼ା କି ତହିଁରେ ॥
ଏତେ ବୋଲି ନ ଚାହିଁ ଗଲେ ଫେଲି ।
ପଛେ ଥିଲା ଜଣକୁ ପଚାରିଲି ॥
କାହୁଁ ଆଇଲ କାହିଁକି ଯାଉଛ ।
କିସ କିସ ପ୍ରଶଂସିଣ କହୁଛ ॥
ଋଷି ରହି ମୁଖ ଫୋଡ଼ି କହିଲେ ।
ଆଜ ହରି ଜନ୍ମ ହେବେ ବୋଇଲେ ॥
ତେଣୁ ଅବନୀକି ଚାହିଁ ପ୍ରଶଂସୁ ।
ତୁମ୍ଭ ଚରଣପରାଗ ଲାଳସୁଁ ॥
ମନୋରଥ ପୂର୍ଣ୍ଣ ହେବ ତୁମ୍ଭର ।
ନେତ୍ର ସଫଳ କରିବୁ ଆମ୍ଭର ॥
ମୁହିଁ ନମସ୍କାର କରି ରହିଲି ।
ଅସମ୍ଭବ ଶୁଣି ଭୟ ପାଇଲି ॥
ସେହି ଦିନରୁ ମନେ ମନେ ଗୁଣି ।
ଫେଡ଼ି କହିଲି ତୁମ୍ଭ ତହୁଁ ଶୁଣି ॥

ଆଗୋ ସରି କହେ ଏକ ଗୁଆଳୀ ।
ନବ ଲହରି ବୟସ ଯୁଆଳୀ ॥
କାଲି ଛାଡ଼ ପରିଦିନ ରାତିରେ ।
ଧ୍ୱନି ଶୁଭୁଥିଲା ନାନା ଜାତିରେ ॥
ନିଦ୍ରା ତେଜି ମୁଁ ବାହାର ହୋଇଲି ।
ଦେବଗଣ ଚାହିଁ ଭୟ ପାଇଲି ॥
ସ୍ତୁତି କରିଣ ଅବନୀ ପ୍ରଶଂସି ।
ପାରିଜାତକ କୁସୁମ ବରଷି ॥
ଗନ୍ଧ ଚହଟଇ ଦିଗ ଅବନୀ ॥
ଫୁଲ ସାଉଁଟି ଅଛି ଗୋଟି ତିନି ॥
ଏତେ ବୋଲି ଗଣ୍ଠି ଫେଡ଼ି ଦେଖାଇ ।
ପୁଣ ଯତନ କରିଣ ରଖାଇ ॥
ଏକ ସଖୀଏ ଥାଇଁଣ ବୋଇଲା ।
ପୁଣି ଆଉର କଥାଏ ହୋଇଲା ॥
ଗୋପଭୁବନେ ହେଲା ହେମବୃଷ୍ଟି ।
ନାନା ରତ୍ନ ସହିତେଣ ସାଉଁଟି ॥
ରାଜଭୟେ ଗୁପତ କଲେ ଲୋକେ ।
ଏତେବେଳେହେଁ ପାଉଛନ୍ତି ଥୋକେ ॥
ସଖୀ ଯାହା କହିଲ ଏ ପ୍ରମାଣ ।
ନନ୍ଦ ମନ୍ଦିରେ ଆସି ଦେବଗଣ ॥
ନିଶି ଅର୍ଦ୍ଧରୁ ଯାଇଥିଲା ବଳି ।
ଯୋଗେ ବାହାର ହୋଇ ମୁଁ ଚାହିଁଲି ॥
ହଂସବାହନେ କମଳଆସନ ।
ଗଜ ଆରୋହଣ ପାକଶାସନ ॥
ଶିବ ବୃଷଭ ପିଠିରେ ବିଜୟେ ।
ଯେଝା ଯାନ ଆରୋହି ଦେବତାଏ ॥
ଗୋପଭୁବନେ ଆସିଣ ପଶିଲେ ।
ଚନ୍ଦ୍ରତୁଲାପ୍ରାୟେ ଜ୍ୟୋତି ଦିଶିଲେ ॥
ଦେଖି ଅପସରି ମୁହିଁ ରହିଲି ।
କାହିଁ ନ କହିଣ ତୁନି ହୋଇଲି ॥
ଏବେ ତୁମ୍ଭ ତହୁଁ ଶୁଣି କହିଲି ।
ପ୍ରାଣନାଥ ଜନ୍ମ ହେଲେ ବୋଇଲି ॥
ଯୁବା କାଳେ କାନ୍ତ ଦୁଃଖୀ ହେଲାଇଁ ।
ଯେତେ ଓଷା ବାରବ୍ରତ କଲାଇଁ ॥

ଆମ୍ଭ ବେଦନା ଏହି କୋ ନାଶିବେ ।
ନାନା ସୁଖ ଦେଇ ମନ ତୋଷିବେ ॥
ସବେ ଏକା ନାବରେ ଥାଉଁ ବସି ।
ବଢ଼ି ନଦୀରେ ଯାଉଁଥାଉ ଭାସି ॥
ପାର କରିବା ନାବିକଟି ଏହି ।
ଆଜ ପୂତନା ମାଇଲେଟି ସେହି ॥
ଆମ୍ଭମାନଙ୍କୁ ବଳ କରାଇଲା ।
ବଳ ପ୍ରାକର୍ମ ଯଶ ବିଆଇଲା ॥
ସାନ ବୋଲି ବାମନରେ ବିସ୍ମର ।
ମୋତେ ସେହି କଥା ପୁଣ ପସ୍ମର ॥
ଶିବସୁତ କାର୍ତ୍ତିକେଶ୍ୱର ହେଲେ ।
ଜନ୍ମ ହୋଇ ତାରକାକୁ ମାଇଲେ ॥
ଏକ ସଜଣୀଏ ପୁଣି ବୋଇଲା ।
ଯାହା ଭବିଷ୍ୟ ପୁରାଣେ କହିଲା ॥
ରତି ମନସିଜକୁ ପ୍ରତିପାଳି ।
କାନ୍ତ କଲେ ଯେ ଭଲା ସେହି ବାଳୀ ॥
ଏବେ ଆମ୍ଭର ସେରୂପେ ହୋଇବ ।
ଘଟସୂତ୍ର କରି ଅଛୁ ଦଇବ ॥
ଦେଖ ବାଳ ପୁଅ ଯୁବା ନୁହଇ ।
କାମବିକାରେ ହୃଦୟ ଦହଇ ॥
ଭୁନ କରାଇ କହେ ଏକ ନାରୀ ।
ଏହୁ ବଲ୍ଲଭ ହୋଇବେ ଆମ୍ଭର ॥
ସେତେ ଓଧା ବାରବ୍ରତ କଲୁଁ ।
ଉଜାଗରେ ଜାଗର ଜାଳିଲୁଁ ॥
ସେହି ପୁଣ୍ୟ ଆଜି ବିକାଶିଲା ।
ଗୋପଭୁବନ ମଙ୍ଗଳ ଦିଶିଲା ॥
ଏହୁ କଥା ଜାଣିଲେ ନନ୍ଦରାଣୀ ।
ହାସ ଧିକ୍କାର କରବେଟି ପୁଣି ॥
ମାତାଗଣ ସ୍ତନୁ କ୍ଷୀର ସ୍ରବଇ ।
ନାନା ରସେ ସର୍ବ ମନ ଦ୍ରବଇ ॥
ବିଚକ୍ଷଣ ଲକ୍ଷଣ ଗୋ ଏହାର ।
ନାନା ରସରେ କରିବ ବିହାର ॥
କେହି ଯଶୋଦାଙ୍କୁ କହେ ହସାଇ ।
ପୁଅ ନାମ ଦେବ ମାଏ ପିତାଇ ॥

ତୁମ୍ଭ ଅପୁଅା ଘରର ନନ୍ଦନ ।
ନାସା ଶ୍ରବଣ କର ଗୋ ବନ୍ଧନ ॥
ଘେନ ବନ୍ଧ ସରୁ ସୁନାଫାସିଆ ।
ଛନ୍ଦାଭଳିଆ କଟିରେ ବସିଆ ॥
କ୍ଷଣେ ମୁରୁଛୁ ନ ପାରନ୍ତି ଗୋଣ୍ଡ ।
ଅତି ସ୍ନେହ ଶରଧା ନ ସରଇ ॥
ଦିନୁ ଦିନ ବଢ଼ୁ ଅଛୁ ପୀରତି ।
ନନ୍ଦନନ୍ଦନ ସବୁରି ଆରତି ॥
ପଞ୍ଚ ଆଉ ଯେ ଷଠିଘର କରି ।
ସାତଦିନେ ହୋଇଲା ଉଠିଆରି ॥
ପୁରମାର୍ଜନା ଅର୍ଚ୍ଚନା ଆଚରି ।
ନାନା ଛକଦ୍ୱାରେ ଜଳ ସଞ୍ଚାରି
ମାତା ପୁତ୍ରଙ୍କ ସ୍ନାହାନ ନିମନ୍ତେ ।
ହେମଘଟ ତୀର୍ଥଜଳ ସହିତେ ॥
ନାନାସୁଗନ୍ଧ ଔଷଧ ପୂରାଇ ।
ପୁତ୍ର ଜନନୀ ସ୍ନାହାନ କରାଇ ॥
ଧାଈ ପରିବାରି କୁଳ ଆଗରେ ।
ବୃଦ୍ଧବାଳୀମାନଙ୍କର ବିଗୁରେ ॥
ଦଧି ଦୁଧ ଘୃତଭାଣ୍ଡ ଥୁଆଇ ।
ପୁଅ ଶକଟ ତଳରେ ଶୁଆଇ ॥
ଦାସୀ କରନ୍ତି ମଙ୍ଗଳ ବେଭାର ।
ପୁରେ ଆନନ୍ଦ ଉତ୍ସବ ଅପାର ॥
ଗୋପେ ପୂତନା ନାଶ କଲା ଶୁଣି ।
ଶକଟାକୁ ପେଷିଲେ ଆଉ ପୁଣି ।
ଆଜ୍ଞା ଘେନଣ ଶକଟା ଅଇଲା ।
ଗୁପତରେ ଶକଟରେ ରହିଲା ॥
ହରି କାନ୍ଦନ୍ତେଣ ପାଦ ସିଞ୍ଝାଡ଼ି ।
ବାଜ ଶକଟ ଖଞ୍ଜା ଭଜପଡ଼ି ॥
କ୍ଷୀରଭାଣ୍ଡମାନେ ଭାଜ ଭାଷିଲେ ।
କ୍ଷୀରଶାୟୀ ପ୍ରାପ୍ତେ ହରି ହସିଲେ ॥
ଘୋର ଭୟଙ୍କର ଧ୍ୱନି ଶୁଭଇ ।
ଶୁଣି ଯଶୋଦା ବିଷାଦ ଲଭଇ ॥
ପୂତନାର ବେଳରୁ ଦକ ଦକ ।
ଲୋଚନରୁ ଲୋତକ ଥକଥକ ॥

ଏବେ କି ଦଣ୍ଡ ମୋତେ ଲୋ ପଡ଼ିଲା ।
ପୁଅ କାହିଁ ବୋଲି ମୁଣ୍ଡ କୋଡ଼ିଲା ॥
ପୁଅ ପୁଅ ବୋଲି ଢଳନ୍ତି ପଡ଼ଇ ।
କାହିଁ କାହିଁ ବୋଲି ପୁଅ ଲୋଡ଼ଇ ॥
ଜଳାମାଣିକ ଗୋଟି ମୋର କାହିଁ ।
ଛନଛନ ହୋଇଣ ମୂର୍ଚ୍ଛା ଯାଇ ॥
ଧାଇଁ ମୃଦୁସୁଲି ଧାଇଁ ଆସିଲେ ।
ପୁଅ ଶକଟ ତଳରେ ଦେଖିଲେ ॥
ବେଗେ କୋଳ କରି ତୋଳି ଧଇଲେ ।
କିଛି କ୍ଷତ ନାହିଁ ଅଙ୍ଗେ ବୋଇଲେ ॥
ହୀନବସନେ ଶ୍ରୀଅଙ୍ଗ ପୋଛିଇ ।
ନିଜ ଜନନୀ କୋଳେ ଦେଲେ ନେଇ ॥
ହାହାକାର ହୋଇଣ ଯେନ ବସି ।
ସ୍ତନ ପିଆଇ ଶ୍ରୀଅଙ୍ଗ ଆଉଁସି ॥
କେହୁ ବୋଲଇ ଏ ଆର ଶକଟ ।
ଅଦଭୁତରେ ଭାଙ୍ଗିଲା ଶକଟ ॥
କେହୁ ବୋଲଇ ଏ ବଡ଼ ଅରିଷ୍ଟ ।
ଦଧି ଘୃତ ହୋଇଲା ସବୁ ନଷ୍ଟ ॥
କେହୁ ବୋଲନ୍ତି ସବୁ ନଷ୍ଟ ଯାଉ ।
ପୁଅ ଆମ୍ଭର ସର୍ବଶୁଭେ ଥାଉ ॥
କେହୁ ବୋଲନ୍ତି ଭାଗ୍ୟେ ଉବୁରିଲା ।
ଉଣା ଅରିଷ୍ଟି ଶକଟରେ ଗଲା ॥
କେହୁ ବୋଲନ୍ତି ଭାଙ୍ଗିଲା କିରୂପେ ।
ବାଳପୁଅ ଥିଲେ ତାର ସମୀପେ ॥
ଭୟଙ୍କର ମୂରତିଏ ଦିଶିଲା ।
ଯଶୋଦାର ପୁଅ ଦେହେଁ ପଶିଲା ।
ଶୁଣି ହସିଲେ ବାଳକ ବଚନେ ।
ମାଏ କହନ୍ତି ଲୋତକ ଲୋଚନେ ॥
ପୁଅ ପାଇଲେହେଁ ଦୁଃଖ ନ ସରେ ।
ରିଷ୍ଟ ହନେହେଁ ଆଉ ନ ବଧୋରେ ॥
ନିତି ଦକଦକ ମନୁଁ ନ ଗଲା ।
ପ୍ରତିଆଶା ତ ଏହାକୁ ନୋହିଲା ॥
ନନ୍ଦ ବ୍ରାହ୍ମଣ ବରଣ କରାଇ ।
ଦାନ ଦେଲେ ହୋମଯାଗେ ପୂରାଇ ॥

ନବ ଗ୍ରହସ୍ତୋତ୍ରମାନ ଶୁଣାଇ ।
ଚଣ୍ଡୀ ସହସ୍ରନାମକୁ ଗୁଣାଇଁ ॥
ଏକବଂଶଦନେ ଦୋଳଶୁଆଣି ।
ଆସି ମିଳିଲେ ଗର୍ଗ ମହାମୁନି ॥
ଜ୍ୟେଷ୍ଠ କୁମର ଗୋଟି କୋଳେ ଧରି ।
କର୍ଣ୍ଣେ କହି ନାମ ମୁଖେ ଉଚ୍ଚାରି ॥
ରାମଶଙ୍କରଷଣ କାମପାଳ ।
ବଳଭଦ୍ର ନାମ ହେବ ଏହାର ॥
ସାନ କୁମର ପୁଣି କୋଳେ ଘେନି ।
କର୍ଣ୍ଣେ କହିଣ ନାମ ଦେଲେ ମୁନି ॥
କୃଷ୍ଣ କେଶବ ମାଧବ ଗୋବିନ୍ଦ ।
ହରି ଶ୍ରୀଧର ଅଚ୍ୟୁତ ମୁକୁନ୍ଦ ॥
ରୂପେ ଗୁଣେ ଅନେକ ନାମ ହେବ ।
ଯେଉଁ ନାମ ବୋଇଲେହେଁ ଶୋହିବ ॥
ଅତି ଆନନ୍ଦ ନନ୍ଦରାଏ ଶୁଣି ।
ମୁନି କଲ୍ୟାଣ କରି ଗଲେ ପୁଣି ॥
ହନୁହନୁ ଆନୁଆନ କୁମରେ ।
ତାତ ଜନମଙ୍କ ସ୍ନେହ ନ ସରେ ॥
ଦୋଳ ପଲଙ୍କେ ଶୋଇଣ ଖେଳନ୍ତି ।
କର ଚରଣ ସିଂହାଡ଼ି ରହନ୍ତି ॥
ରଙ୍ଗଝୁମ୍ପା ଝୁମୁକା ଖରଖରି ।
କୃଷ୍ଣ ରହିଁ ହସନ୍ତି କରକରି ॥
ଦନ୍ତ ବିହୁନେ ନାଳ ଜରଜର ।
ଦେହେ ପଡ଼ଇ ହୋଏ ସରସର ॥
ଆଈ ପରିହାସେ ରହିଁ ମୁଖକୁ ।
କିଏ କାହୁଁ ପାଇବା ଏ ପୁଅକୁ ॥
ମୁଖ ପାକୁଆ ଦେହ ତ ନାକୁଆ ।
କାହିଁ ଥିଲା ଏ କିପଣ୍ଡିକାଳିଆ ॥
କଳାମେଘ ଖଣ୍ଡ ପ୍ରାୟେ ଦିଶଇ
ଦେଖ ମୋର ମୁଖ ରହିଁ ହସଇ ॥
ସ୍ଥିର କରିଣ ନୟନେ ରହିଁଇ ।
ମୋର କଥାକୁ ଲୋ କର୍ଣ୍ଣ ଡେରଇ ॥
ଶୁଣି ଏକ ଗୁଆଳୀ ଯେ କହଇ ।
ଆଈ କି ବୋଲୁଛନ୍ତି ହେ କହ୍ନାଇ ॥

ଟୋକେ ବୋଲୁଛନ୍ତି ଆହ୍ମ କାଳିଆ ।
କଳାମାଣିକ ମକରନିରଥ ॥
କଳା କାଳିଆ ହୋଇ ଜାଇଁଥାଉ ।
ମାଏ ତୁମ୍ଭ ଆୟୁଷ ବୋଲି ଯାଉ ॥
ଏହି ପୁଅଟି ଆମ୍ଭଙ୍କୁ ପୋଷିବ ।
ଯେତେ ଗୋପର ଅରିଷ୍ଟ ନାଶିବ ॥
ରାମ ଗୁରୁଣ୍ଡି କୃଷ୍ଣଙ୍କୁ ଧରନ୍ତି ।
କର ଧରିଣ କୋଳେ ଓଟାରନ୍ତି ॥
ଆ ଆ ଆ ଆ ବୋଲି କରି ଭାଷନ୍ତି ।
ବେନି ଜନନୀ ଦେଖିଣ ହସନ୍ତି ॥
କସ କରଇ ବୋଲି ଆଡ଼ ହୋଇ ।
ଉହାଡ଼ରେ ସ୍ଥିର କରି ଅନାଇ ॥
ରାମ ସନ୍ନିଧିରେ ବସି ଆଉଁସି ।
ଗେଲ କରିଣ ଧରନ୍ତେ ସାହସୀ ॥
ଆଖି ଭିତରେ ଆଙ୍ଗୁଳି ପୂରାଇ ।
କୃଷ୍ଣ କାନ୍ଦନ୍ତେଣ ତୁନି କରାଇ ॥
ଦୁଇ ମାଏ ଧାଇଁ ଯାଇଁ ଧଇଲେ ।
'କିରେ କି କର୍ମ କଲୁ ତୁ' ବୋଇଲେ ॥
ତୋର ମାନ ଭାଇ ଗୋଟି କହ୍ନାଇ ।
ତୋତେ ଶରଧାରେ ଥିଲା ଅନାଇ ॥
ତାର ନୟନେ ଅଙ୍ଗୁଳି ପୂରାଇ
କୃଷ୍ଣ ଆଖି ଏବେ ଦେଲୁ ଲୁହାଇ ॥
ଦୁଇ ପୁଅଙ୍କୁ ଧରି ଦୁଗ୍ଧ ଦେଇ ।
ନିଦ୍ରା କଲେ ପଲଙ୍କରେ ଶୁଆଇ ॥
ଜାଗି ବସିଣ ଥାନ୍ତି ଧାଙ୍ଗା ବ୍ରଜ ।
ମଳମୂତ୍ରରେ ନଆ ନଆ ଶୋଚ ॥
ନିଶି ଶେଷରେ ଜଳ ଉଷୁମାଇଁ ।
ନାନା ସୁଗନ୍ଧ ତହିଁରେ ମିଶାଇ ॥
ଲେମ୍ବୁ ରସରେ ହଳଦ୍ଦି ଗୋଳନ୍ତି ।
ତିନବେଳ ଅଙ୍ଗେ ନିତି ବୋଳନ୍ତି ॥
ତନୁ ଦିଶଇ ରସାଣ ମର୍କତ ।
ମୁଖ ନିର୍ମଳ ଦର୍ପଣ ସଞ୍ଜାତ ॥
ପୁରପ୍ରତିବନ୍ଧ ଅଙ୍ଗେ ଢଙ୍କାଦେ ।
ମାୟେ ଦେଖି ଭୟେ ବାସ ଆଚ୍ଛାଦେ ॥

ନାଭି ଶ୍ୟାମଳା ସ୍ୱବଚ୍ଛା ପୂରାଇ ।
ନାନା ସୁଗନ୍ଧ ଚର୍ଚ୍ଚିତ କରଇ ॥
ହେମପାତ୍ରେ ଯଥାକାଳେ ଦୁହାଁଇ ।
ଅଗ୍ନି ଆବୃତ୍ତେ ଯତନେ ଥୁଆଇ ॥
କୃଷ୍ଣଉତ୍ଥାନଶାୟୀ ଜାନୁପରେ ।
ଦୁଧପିଆନ୍ତି ହେମଶାମୁକାରେ ॥
ତୁଣ୍ଡେ ପୂରାନ୍ତେ ଉଚ୍ଛୁଡ଼ା ହୁଅଇ ।
ଗଣ୍ଡେ ଅଧରୁ ବଳକ ବହଇ ॥
କ୍ଷୀର ବହିଯିବା ଶୋଭା ଦିଶଇ ।
ଶଶୀଅଙ୍ଗୁ ସୁଧାଧାର ଖସଇ ॥
ନ ପିଅନ୍ତେଣ ମାଏ ନାସା ଧରେ ।
ବେଗେ ପିଆନ୍ତି ନିଶ୍ୱାସ ବନ୍ଧରେ ॥
ପାଞ୍ଚବେଳ ଏରୂପରେ ପିଆନ୍ତି ।
ତିନବେଳ କୁଙ୍କୁମାଦ୍ଦି ଦିଅନ୍ତି ॥
ନନ୍ଦ ଯଶୋଦା ସନ୍ନିଧେ ବସିଣ ।
ପୁତ୍ର ମୁଖ ଚାହିଁ ଚିତ୍ତ ତୋଷିଣ ॥
ନିଦ୍ରା ତେଜି ହରି ଦିଗ ନିରେପେ ॥
ନାନା କଉତୁକ ଚିନ ସମୀପେ ।
ବାଳ ଦବୋଟି ବାଣୀ ଅଧାକ୍ଷରେ ॥
କର୍ଣ୍ଣ ପବନ ଆନନ୍ଦ ହୃଦରେ ।
ନାସା ଚୁମ୍ବ ଦେଇ ହୃଦେ ଭିଡ଼ଇ ।
ପୁଣ ପୁଣ ସ୍ନେହଭରେ ପୀଡ଼ଇ ॥
ଗଲେ ହାର କରି ଧରେ ଲମ୍ବାଇ ।
ତାପ ଅନଳ ହୃଦରୁ ଲିଭାଇ ॥
ତନୁପୁଲକ ବିହ୍ୱଳ ବଚନେ ।
ଆନନ୍ଦରେ ଅଶ୍ରୁଜଳ ସିଞ୍ଚନେ ॥
ପୁଣ ପୁଣ ନିରେଖଇ ମୁଖକୁ ।
ଦିହ ଦେଇଅଛି ମହାସୁଖକୁ ॥
ମାଏ ବୋଲନ୍ତି ମୋପୁଅ ଉଠିବ ।
ତୁମ୍ଭ ଦାଢ଼ି ଦେଖି ଭୟ କରିବ ॥
ଏତେ ବୋଲିଣ ନିଜ କରେ ଧରି ।
ସ୍ତନ ପିଆନ୍ତି ମନେ ମୋଦ ଭରି ॥
ମାତା କୋଳରେ କଲେ ମଳ ମୂତ୍ର ।
ନନ୍ଦ ବୋଲନ୍ତି ଭଲ ଏ ଚରିତ୍ର ॥

ମାଏ ବୋଲନ୍ତି ମୋତେ ଲାଗିଯାଉ ।
ଏହି ଜଞ୍ଜାଳେ ମୋର ଦିନ ଯାଉ ॥
ଧୃଷ୍ଟ ହୋଇ ପୁଣ ଧରି ବସିଲେ ।
ତାତ ଜନନୀଙ୍କ ମନ ତୋଷିଲେ ॥
ନନ୍ଦ ଯଶୋଦା ବାତ୍ସଲ୍ୟ ରସରେ ।
ଦିନୁ ଦିନୁ ଅନୁରାଗ ରସରେ ॥
ସୁରକାମିନୀ ଏମନ୍ତ ବିଚାରେ ।
ଏକ ଆରେକକୁ ଚାହିଁ ପଚାରେ ॥
କୃଷ୍ଣ ବାଳମୂରତିକ ଦେଖିବା ।
ଆମ୍ଭ ନୟନ ସଫଳ କରିବା ॥
ଏତେ କହି ବିମାନରେ ଆରୋହି ।
ଗୋପଭୁବନ ସୀମା ଊର୍ଦ୍ଧ୍ୱେ ରହି ॥
ଏକ ଦିନେ ଯଶୋଦା କୃଷ୍ଣ ଘେନ ।
ଦଶ ବଂଶ ଛନ୍ତି ଗୋପ ତରୁଣୀ ॥
ଗେଲ କରି ଭାଷୁଥାନ୍ତି ସୁସ୍ୱରେ ।
ନାନା କଉତୁକ ସ୍ନେହବଶରେ ॥
ଦେଖି ଗୋପୀଙ୍କ ଆଗରେ କହନ୍ତି ।
ଗତ ଦିନ ଚରିତ ମନେ ଚନ୍ତ ॥
ଏହା କଥା ଅଗୋଚର ଲାଗଇ ।
ଯେତେବେଳେ ନିଦ୍ରା ତେଜ ଜାଗଇ ॥
ପେଟିଆଇ ପଡ଼ଣ ହେମଗାଳ ।
ଶେଯ ଛାଡ଼ି ଭୂମିରେ ଲୋଟଗାଳ ॥
ଧରି ଆଣି ଶୁଆଇଲେ କାନ୍ଦଇ ।
ମୋର ବସନେ ଚରଣ ଛନ୍ଦଇ ॥
ପାଶ ଛାଡ଼ିଗଲେ ଛାଡ଼େ ବୋବାଳ ।
ତଳେ ନପାରେ ଯାଇଁ ପାଦଚାଳ ॥
କୋଳେ ଥାଇ ପିତା ଯେବେ ଦେଖଇ ।
ମୋର ଅଞ୍ଚଳେ ବଦନ ଢାଙ୍କଇ ॥
ପୁଣ ବଦନ ଟେକଣ ଅନାଇଁ ।
ହସି ପୁଣିହିଁ ନୟନ ଢାଙ୍କଇ ॥
ପିତା ଡାକଲେ ବଦନ ଲୁଆଇଁ ।
ଭୁନ ହୋଇ ସ୍ତନ ମୁଖୁଁ ମୁଞ୍ଜଇ ॥
ପିତା ଧରି ପୁଣି କୋଳେ ନଅନ୍ତି ।
ଗେଲ କରି ମୁଖେ ଚୁମ୍ବ ଦିଅନ୍ତି ॥

କରକରି ହୋଇ ଚାହିଁ ହସଇ ।
ଦାଢ଼ି ଧରିଣ ପୁଣ ଆଉଁସଇ ॥
ମୋର କୋଳକୁ ନଉଡ଼ି ପଡ଼ଇ ।
ଦଣ୍ଡେ ମୋତେ ଗୋ ଆଉ ନ ଛାଡ଼ଇ ॥
ଗୋପୀ ଶୁଣି ଆନନ୍ଦ ଏକୁ ଆରେ ।
ବେଢ଼ି ଖେଳାନ୍ତି ଅଗଣା ବାହାରେ ॥
ପୁତ୍ର ସନ୍ନିଧେ ଗୋପୀଙ୍କି ରଖାଇ ।
ଲୁଚି ମାଏ ଗଲେ ଦଧି ମୁହାଁଇ ॥
କଂସ ଆଦେଶେ ତୃଣାବର୍ତ୍ତ ବୀର ।
ଶୂନ୍ୟେ ରହିଣ କରଇ ବିଚାର ॥
ଗୋପୀମାନେ ସେ ଗଲେ ଯେଝା ଘରେ ।
ଏକା ଦେଖିଲା କୃଷ୍ଣଙ୍କୁ ବାହାରେ ॥
ଗଗନରୁ ଖସି ପାଶେ ଅଇଲା ।
ଭୂତ ବାତଚକ୍ରରୂପ ଧଇଲା ॥
ଭୂତ ଉଡ଼ାଇ ଘରଦ୍ୱାର ଭାଙ୍ଗି ।
ମହା ବତାସରେ ଭୟ ଉପୁଜ ॥
କାଷ୍ଠ ପାଷାଣ ଗଗନେ ଉଡ଼ଲେ ।
ପାଞ୍ଚ ସାତ କୋଶେ ଯାଇ ପଡ଼ଲେ ॥
ରେଣୁ ଉଡ଼ଣ କୁହୁକ ଆକାଶ ।
ରବି କିରଣ ନୋହିଲା ପ୍ରକାଶ ॥
ଘୋରତମ ଅନ୍ଧକାର ଘୋଟିଲା ।
ଚକ୍ରବାକର ହରଷ ଛୁଟିଲା ॥
ଅନ୍ଧକାରେ ଜୀବଜନ୍ତୁ ବ୍ୟଥିତ ।
ପଥ ନ ଜାଣି ପଥିକ ଚକିତ ॥
ପାଶେ ଶ୍ୱେତବୃଷଭ ନ ଦିଶଇ ।
ମହା ଅରିଷ୍ଟି ଗୋପେ ପ୍ରକାଶଇ ॥
ଦୈତ୍ୟ ଶ୍ୟାମଳ ପରାୟେ ଖସିଲା ।
କୃଷ୍ଣ ଘେନିଣ ଆକାଶେ ପଶିଲା ॥
କଳାମେଘରେ ଇନ୍ଦ୍ରନୀଳମଣି ।
ଦେଖି ସଫଳ ଅମର ତରୁଣୀ ॥
ଏକ ଆରକେ ଦିଅନ୍ତି ଚହ୍ଲାଇ ।
କଂସ ଅସୁର ଆସୁଛି ଘେନାଇଁ ॥
ନୀଳମହୀଧର ପ୍ରାୟେ ଅସୁର ।
ନୀଳମଣି ଶୃଙ୍ଗ ନନ୍ଦକୁମର ॥

ମନବାଞ୍ଛିତ-ଦର୍ଶନ ହୋଇଲା ।
ଏବେ ସୁଖ ତ ଆମ୍ଭର ନୋହିଲା ॥
ଆମ୍ଭ ଧର୍ମେ ଅସୁର ନାଶ ଯାଉ ।
ନିଜ ପୁତ୍ରକୁ ଯଶୋବନ୍ତୀ ପାଉ ॥
ସୁରଯୁନ୍ଦରୀ କହନ୍ତି ବଚନେ ।
କୃଷ୍ଣ ନିରେଖି କମଳ ଲୋଚନେ ॥
ଏମନ୍ତରେ ଦୈତ୍ୟ ନେଲା ଉଡ଼ାଇ ।
ଗୋପପୁର ଦେଶସୀମା ଛଡ଼ାଇ ॥
ବାତଚକ୍ର ପଡ଼ିଲା ବଳ ହାନି ।
ମେରୁ ସମାନ ଗରୁ ହେଲେ ଜାଣି ॥
ତଳେ ପଡ଼ିଲା ସମ୍ଭାଳି ନ ପାରି ।
ଶିଳା ବାଜିଣ ଦୈତ୍ୟ ପ୍ରାଣ ହାରି ॥
କର୍ଣ୍ଣ ରୁନ୍ଧିଛନ୍ତି ନନ୍ଦକୁମର
ଦୈତ୍ୟ ମୁଖରୁ ରୁଧିର ବାହାର ॥
ସିନ୍ଧୁ ଉଚ୍ଛୁଳି ମହୀ ଦମକିଲା ।
ସୁର ଇନ୍ଦ୍ର ଆସନ ଚମକିଲା ॥
କିବା ପ୍ରଳୟକାଳ କି ହୋଇଲା ।
କିବା ମହୀ ଲେଉଟି ଉପୁଡ଼ିଲା ॥
ଗୋପଭୁବନରେ ମହା ଆରତ ।
ନ ଜାଣନ୍ତି ଏକ ଆର ବାରତ ॥
କେହୁ ବୋଲଇ ପୁଅ ମୋର କାହିଁ ।
କେଉଁଣେ ଗଲା ଭଣଜା ମୋର ନାହିଁ ॥
କେହୁ ବୋଲଇ ଝିଅ ଖେଳୁଥିଲା ।
ଖୋଜ କଲା ଲୋ କେଉଁଣେ ଉଡ଼ିଗଲା ॥
ବୋହୂ ଯାଇଥିଲା ମୋର ପାଣିକି ।
ଶାଶୁ ବୋଲଇ କେ ଅଛ ଜାଣିକି ॥
କେହୁ ବୋଲଇ ଆମ୍ଭ ଘର ବୁଢ଼ୀ ।
ଖୋଜ କଲା ଲୋ କେଉଁଣେ ଗଲା ଉଡ଼ି ॥
କେହୁ ବୋଲଇ ଭାଇ କେଉଁଣେ ଗଲା ।
କେ ବୋଲଇ ଭଉଣୀ ଇ ବଣା ହେଲା ॥
କାନ୍ଦି କହଇ କେବଣ ଗଉଡ଼ ।
ଉଠିଗଲା ମୋ ଦକ୍ଷିଣ ମଉଡ଼ ॥
ମହାଅଚଳ ପଥର ଉଡ଼ିଲା ।
ଘର ଭିତରେ ମୋହର ପଡ଼ିଲା ॥

ଯୋଗ ଥିଲେ ତହିଁ କସ କରନ୍ତୁ ।
ଆଜ କୃଷ୍ଣମ୍ଭ ନାକ ମରୁଥାନ୍ତୁ ॥
କେହୁ ବୋଲଇ ଆରେ ନାନି ନାନ ।
ଘର ଭିତରେ ପଶ ପୁଅ ଘେନ ॥
ଦେଖ ଆକାଶୁଁ ପଥର ପଡ଼ଇ ।
କେହୁ ବେନିକର ହୃଦେ ତାଡ଼ଇ ॥
ଧାଇଁ ଧରଇ ଖେଳନ୍ତା ପୁଅକୁ ।
ଚହ୍ନି ନ ପାରି ଚୁହିଁଇ ମୁଖକୁ ॥
ବୋହୂ ଓହ୍ଲାରୁ ଅଛଇ ଶାଶୁକୁ ।
ମାଏ ନିଷ୍ଠୁରେ ବଳାଇଁ ନାଶକୁ ॥
କେହୁ ବୋଲଇ କି ବୁଦ୍ଧି କରିବା ।
ଯୋଗ ଥିଲା ଏକାବେଳେ ମରିବା ॥
ମହା ଆତଙ୍କ ଅରିଷ୍ଟି ଧୂମରେ ।
ଇଷ୍ଟଦେବତାଙ୍କୁ କେହୁ ସୁମରେ ॥
ଘଡ଼ିକରେ ସ୍ତମ୍ଭିତ ଗୋପଲୋକେ ।
ଲୋଡ଼ାଲୋଡ଼ି କରି ଏକ ଆରକେ ॥
ଯେଝା ବାଳକ କରନ୍ତି ଶଙ୍ଖୁଳା ।
ଜେଠା ଖୁଡ଼ୁତା ପିଉସା ମଉଳା ॥
ଯହୁଁ ନ ଦେଖିଲେ ନନ୍ଦନନ୍ଦନ ।
ତହୁଁ ଶୁଭିଲା ଉଚ୍ଚେ ରୋଦନ ॥
ପୁରପ୍ରାଙ୍ଗଣ ଅଗଣା ଖୋଜନ୍ତି ।
ସାହି ପଡ଼ି ଛୁଣ୍ଟି ଘରେ ଲୋଡ଼ନ୍ତି ॥
ହାହା ପୁତ୍ର ଆମ୍ଭ ନେତ୍ରପିତୁଳୀ ।
ଜୀବଧନ ମର୍କତ ଗଳାମାଳି ॥
ନନ୍ଦ ବସୁନନ୍ଦ ଯେ ଉପନନ୍ଦ ।
ଭଦ୍ରସେନ ଆଦ୍ୟ ଯେ ଗୋପବୃନ୍ଦ ॥
ମାତା ଯଶୋବନ୍ତୀ ଉଚ୍ଚେ ରୋଦଇ ।
କେଶ ବସନ ଭାଲେ ନ ବାନ୍ଧଇ ॥
ଦୁଇ ହେମବାହୁ ଉରେ ତାଡ଼ଇ ।
ଧୂଳି ସାଉଁଟି ଅବନୀ ଗଡ଼ଇ ॥
ଆହା ବାପ ଭାଇ ଧନ ମୋହର ।
ମୁହିଁ ନିଉଛାଳି ଯାଇଁ ତୋହର ॥
କେଉଁଣେ ଗଲୁ ମୋତେ ବାଟେ ବସାଇ
ଶୋକସମୁଦ୍ରେ ଦେଲୁ ତ ଭସାଇ ॥

ବାରେ ନ ଦେଖାଇଲା ଚନ୍ଦ୍ରବଦନ ।
ଗୁଣ ବାହୁନ କରଇ ରୋଦନ ॥
ଆଉ ଏବେ ମୁଁ ସତେ କି ପାଇବ ।
ନୀଳବଦନ ନିକ ମୁଁ ଦେଖିବ ॥
ମୋର ଗଳାରେ କେହୁ ଦେଲା ଖୁର ।
ପିଣ୍ଡ ରଖି ପ୍ରାଣକୁ ନେଲା ମୋର ॥
ଖୋଜ ନେଲା କେ ନୟନପିତୁଳୀ ।
ଛଡ଼ାଇ ନେଲା ରଙ୍କ ସଙ୍ଖାଳି ।
କ୍ଷଣ କ୍ଷଣକେ ମୂର୍ଚ୍ଛିତେ ପଡ଼ଇ ।
ପୁଣ ପୁଣ ଉଠି ପୁରେ ଲୋଡ଼ଇ ॥
ଗ୍ରାମ ପାଟଣା ବନ ନଦୀତଟ ।
ଆଉ ଉହାଡ଼ ଗୁପତ ପ୍ରଘଟ ॥
ଅନୁସରି ଲୋଡ଼ନ୍ତି ଯେଝା ଘରେ ।
ପୁର ଗମ୍ଭୀର ଅଗଣା ବାହାରେ ॥
କେହୁ ବୋଲନ୍ତି ବତାସ ବହିଲା ।
ଦେଖ ପାଷାଣ ଦ୍ୱାରେ ନ ରହିଲା ॥
ତରୁମାନେ ପଡ଼ିଲେ ସେ ଉପୁଡ଼ି ।
ବାଳପୁଅ ସିନା ସେ ଗଲା ଉଡ଼ି ॥
କେଉଁ ଅସୁର ଅବା ମାୟା କଲା ।
ଚକ୍ରବାତ ଅଦଭୁତେ ବହିଲା ॥
ବୃଦ୍ଧକାଳେ ହେଲା ନନ୍ଦ ସନ୍ତତି ।
ଦେଖ ପଡ଼ିଅଛି କେତେ ବିପତ୍ତି ॥
ଯଶୋଦାର ବିକଳ କେ ସହିବ ।
ଦେଖି ଧଇର୍ଯ୍ୟ କାହାର ରହିବ ॥
କେହୁ ବୋଲଇ ବଡ଼ମ୍ବଣ ଏହା ।
ଧରିଅଛି ଜୀବନ ଜାଣି ଯାହା ॥
ଆମ୍ଭେମାନେ ହେଉଥାଇଁ କେମନ୍ତ ।
ସେତ ଅନ୍ତରୁ କରିଅଛି ଜାତ ॥
ଗଛେ ଗଛେ ପଡ଼ି ପୁଣ ଉଠଇ ।
କୂପ ଭିତରେ ପଶି ତ ଲୋଡ଼ଇ ॥
ଅସମ୍ଭାଳ ହୋଇ ଗୋପୀ ଧରନ୍ତି ।
ନାନା ମତେଣ ପ୍ରବୋଧ କରନ୍ତି ॥
କୃଷ୍ଣ କୃଷ୍ଣ ମୋର ବୋଲି ଲୋଡ଼ଇ ।
ବେନି ବାହୁ ଶିରେ ନେଇ ଚାଡ଼ଇ ॥
ଓଷ୍ଟ କର ଚରଣ ଧରି କହି ।
ମୋତେ ଦେଖାଅ କେଣେ ଲୋ କହ୍ନାଇ ॥
ଏହା ଗଣିଥିଲା କେଉଁ ଗଣକ ।
ଆଜ ହରାଇଲି କଳାମାଣିକ ॥
ଛୁଦ୍ର ଘଣ୍ଟିରେ ଭୂଷିତ ଲୋଡ଼ଇ ।
ଗୋପୀ ଛଡ଼ାଇ ଲୋଡ଼ନ୍ତେ ଗଡ଼ଇ ॥
କାଳକୂଟ ବିଷ ଖାଇ ମରିବ ।
ଆଉ ଜୀଇଥାଇ କିସ କରିବ ॥
କାହିଁ ଅଛି ନନ୍ଦନ ମୋ ଦେଖାଅ ।
ମୋର ଉଡ଼ିଲା ଜୀବନ ରଖାଅ ॥
ମୋତେ କି ଦଣ୍ଡ ଆଜ୍ଞା ଲୋ ହୋଇଲା ।
କାହିଁ ମରଣ ମୋର ଲୋ ନୋହିଲା ॥
ମୋତେ ଛାଡ଼ି ଲୋ ଅଛ କାହିଁପାଇଁ ।
କୃଷ୍ଣ ନ ଦେଖି ପ୍ରାଣ ରହୁ ନାହିଁ ॥
ଧରୁ ଧରୁ ଶିର ମଣ୍ଡି ମାରଇ ।
ଗଳା କାଟିବାକୁ କାତି ଧରଇ ॥
ମୋତେ ଛାଡ଼ି ଗଲୁରେ ବାପ ଭାଇ ।
ତୋତେ ନ ଦେଖି ଜୀବ ନ ରହଇ ॥
ମୁହିଁ ମନ୍ଦ ଅଭାଗୀ କଲକ୍ଷଣୀ ।
ପୁତ୍ରବତୀ ହୋଇବ କାହିଁ ପୁଣି ॥
ଗୋପେ ବୋଲାଇ ଶ୍ରୀକୃଷ୍ଣଜନନୀ ।
ପୂର୍ବେ ରବି ଉଦେ ଯେହ୍ନେ ନଳିନୀ ॥
ତନୁ ପୁଲକୁ ଥାଇ ତୋତେ ଦେଖି ।
ଚନ୍ଦ୍ର ଚକୋର ଯେସନେ ନିରେଖି ॥
କେତେ ଦିନକୁ ସୃଷ୍ଟି ବଢ଼ାଇଲୁ ।
ଶୋକ ସାଗରେ ଭେଳା ବୁଡ଼ାଇଲୁ ॥
କେତେ ଅନା ଯେ ହେଉଥାଉ କୋଳେ ।
ପିତା ଦେଖିଲେ ପଶୁ ଯେ ଅଞ୍ଚଳେ ॥
ଛୁହିଁ ପୁଣ ପୁଣ ମୁଖ ଘୋଡ଼ାଉ ।
ହସି ଅମୃତ ସୁଖ ନଉଡ଼ାଉ ॥
କର ପ୍ରସାରି ଡାକନ୍ତେ ନ ଯାଉ ॥
ଅଙ୍ଗ ଭଙ୍ଗି ତରଙ୍ଗରେ ମଜାଉ ॥
ବଳେ ଧେନଗଲେ ଥୋଡ଼ ଉପାଡ଼ୁ ।
ଛାଡ଼ ଛାଡ଼ ବୋଇଲେଣ ନ ଛାଡ଼ୁ ॥

ବୃନ୍ଦା ବାପଟି ତୋର ଜୀବ ମରି ।
କର କର ଯେ ହସୁ ଦାଣ୍ଡି ଧରି ॥
କୋଳେ ନ ରହୁ ମୋର କୋଳେ ଆସୁ ।
ସ୍ତନ ପିଇ ପଣନ୍ତେ ଲୁଚି ପଶୁ ॥
ତୋର କେଉଁ ଗୁଣ ମୁହିଁ ଗାଇବି ।
ଆଜ ତୋତେ ସତେ ନକ ପାଇବି ॥
ଇଷ୍ଟ ଦେବଙ୍କୁ ଗୁହାରି ଜଣାଇ ।
ଧର୍ମଦେବ ତପନଙ୍କୁ ମନାଇ ॥
ଦକ୍ଷପାଳେ ଦେବୀ ବଳ ଯାଚଇ ।
ବେଗେ କହ୍ନାଇ ପାଇବା ପାଞ୍ଚଇ ॥
ଲୋଡ଼ି ନ ପାଇବା ଜାଣି ଲୋଟଇ ।
ସବୁ ଅଙ୍ଗେ ଶୋକ ପୂରି ଘୋଟଇ ॥
ଲୁହ ବୋହି ଯାଉଅଛି ନୟନୁ ।
ହରି ନେଲା କେହୁ ହରି ଶୟନୁ ॥
କୃଷ୍ଣବିଚ୍ଛେଦ ଧଇର୍ଯ୍ୟ କାହାର ।
ଅତି ଅବସ୍ଥା ଜନନୀ ତାହାର ॥
ଚିନ୍ତା ବିଳାପ ବିଷାଦରେ ପୁଣି ।
ଅତି ଆନ୍ଧ ପାଷାଣ ହେଲେ ପାଣି ॥
ବେଢ଼ି ଅଛନ୍ତି ଗୋପୀ ଚଉକତି ।
ଲୁହେ ସକଳ ତନୁ ଅଛି ତିନ୍ତି ॥
ଏକ ଆରେକ ଶୋକ ଅସମ୍ଭାଳ ।
ହା ହା ଗୋବିନ୍ଦ ମଦନ ଗୋପାଳ ॥
ଆଜ କୋଳେ ହୋଇଲୁ ମୋର ଗରୁ ।
ମୋର ମନେ ମଣିଲି କଏ ମେରୁ ॥
ଭୟ ପାଇ ତୋତେ କୋଳୁ ଥୋଇଲି ।
ଆପଣାର ମନେ ମୁହିଁ ବୋଇଲି ॥
ଏହୁ ବାଳକ କପାଇଁ ଏମନ୍ତ ।
ଭ୍ରମେ ଭ୍ରମ ହୋଇଲି କି ମୋ ଚିତ୍ତ ॥
ମନେ ରଖି କାହାକୁ ନ କହିଲି ।
ପୂରେ ପଶି ବେଗ ହୋଇ ଅଇଲି ॥
ଏତେକର ସମୟେ ଯେ ଏ ଦଣ୍ଡ ।
ମୁହିଁ ପାମରୀ ବଜ୍ର ପଡ଼ୁ ମୁଣ୍ଡ ॥
ଗୋଟେ ନାହାନ୍ତି ଅବା କେତେ ଜନ ।
କେତେ ନାହାନ୍ତି କାହାର ନନ୍ଦନ ॥

ମୋର ଏକଇ ବଳାକୁ କେ ନେଲା ।
ସେହୁ ସ୍ତ୍ରୀହତ୍ୟା ଦୋଷକୁ ବହିଲା ॥
ଏତେ ବୋଲି ପାଷାଣେ ମାରେ ଶିର ।
ଯେହୁ ଧରିବ ମରିବ ତା ପର ॥
ନୋହିଲେଣ ମୋ ପୁତ୍ର ଲୋଡ଼ଆଣ ।
ନ ପାଇଲେ ନ ରଖଇ ପରାଣ ॥
ଗୋପୀ ଧାଇଁ ବୋଧ କରି କହନ୍ତି ॥
କୃଷ୍ଣ ଲୋଡ଼ିଆଣି ଦେବା କହନ୍ତି ॥
ବଳଦେବଙ୍କୁ ଆଣି କୋଳେ ଦେଲେ ।
ରାମ ମୁଖ ଗୁହିଁ ଦେବୀ ବୋଇଲେ ॥
ଲୋଟୁଥାଇ ରେ ଧବଳବଦନ ।
ଧରି ଚିବୁକ କରଇ ରୋଦନ ॥
ଭୁଲି ଅଛୁ ତୋ ସାନ ଭାଇ କାହିଁ ।
ମୋତେ ଅଇଲୁ ମୁହାଁସ ଲଗାଇ ॥
କେଣେ ଗଲା ମୋର କଳା ବଦନ ।
ଉଚ୍ଚେ ଅଧିକ କରନ୍ତି ରୋଦନ ॥
ଗୋପୀ ସମ୍ଭାଳି ଧରିଣ ନପାରେ ।
ରୋହିଣୀର ଶୋକ କେ କହିପାରେ ॥
ବେଖରେଣ ପୃଥୁଳ ନନ୍ଦରାଣୀ
ଫୁଟି ମୂର୍ଚ୍ଛିତେ ପଡ଼ଇ ଧରଣୀ ॥
ମୁଖେ ଶୀତଳ ଜଳ କେ ସିଞ୍ଚଇ ।
ଅଗ୍ରେ ବିଞ୍ଚଣୀ ଧରି କେ ବିଞ୍ଚଇ ॥
କେହୁ ଶ୍ରବଣ ମୂଳରେ ଫୁଙ୍କଇ ।
କୃଷ୍ଣ ପାଇଲେଣି ବୋଲି ବୋଲଇ ॥
ଚେତା ପାଇ ନେତ୍ର ମେଲି ଅନାଇ ।
କାହିଁ ଅଗ୍ରେ ଦେଖାଅ ଲୋ କହ୍ନାଇ ॥
ଏହିକ୍ଷଣି ଦେଖିବ କେ ବୋଧଇ ।
ଭଳି ବଚନେ ଗୋପୀଙ୍କି ଶୋଧଇ ॥
ପୌର୍ଣ୍ଣମାସୀଙ୍କୁ କରଇ ଗୁହାରି ।
ବିରାଦେବୀ ବଦନକୁ ନିହାରି ॥
ତୁହି ଅଟୁ ଗୋକୁଳ ଆଦ୍ୟମାତା ।
ରକ୍ଷାପାଳନ ଚଉବର୍ଗଦାତା ॥
ପୁତ୍ର ଦାନ ଦେଇ ମୋତେ ରଖିବା ।
ମହା ଭୟ ସଙ୍କଟ ଉପେକ୍ଷିବ ॥

ଦେଖି ବୋଲନ୍ତି ଶୋକ ତୁ ସମ୍ଭାଳ ।
ପୁତ୍ର ପାଇବୁ କିଛି ତୁ ନ ଭାଳ ॥
ପୁତ୍ର ବାହାରେ ତୋର ଶୋଇଥିଲା ॥
ତୃଣାବର୍ତ୍ତ ଉଡ଼ାଇ ଘେନି ଗଲା ॥
ଉଡ଼ି ନ ପାରି ତଳେ ପଡ଼ି ମଲା ।
ଧର୍ମ ଥିଲାକୁ ପୁତ୍ର ଉବୁରିଲା ॥
ଯେତେବେଳରେ ଦୈତ୍ୟ ପଡ଼ି ମଲା ।
ଘୋର ରଡ଼ି ଗୋଟାଏକ ଛାଡ଼ିଲା ॥
ଛନ ଛନ ହୋଇ ଧରା କମ୍ପଇ ।
ଭୟେ ଗଗନ ତପନ ଛପଇ ॥
ମହୀ ଦମକ ଧରି ନ ଧରିଲା ।
ଅମଙ୍ଗଳ ଗୋପପୁରେ ପଶିଲା ॥
ତଳେ ଦୈତ୍ୟ ଉପରେ ଶିଶୁରଙ୍ଗ ।
ଗିରି ପରେ ଯେସନେ ଛୁଆ ସିଂହ ॥
ପୌର୍ଣ୍ଣମାସୀ ବେଗରେ ଘେନିଗଲେ ।
ଯଶୋଦାର କୋଳେ ନେଇଣ ଦେଲେ ॥
ଦେଖି ନନ୍ଦରାଣୀ ମହାସନ୍ତୋଷ ।
କୋଳେ ଧରି ଅଘ୍ରାଣ କଲେ କେଶ ॥
ଯମଘରୁ ଅଇଲୁ ପରି ମଣି ।
ତନୁ କାତର ନ ଆସଇ ବାଣୀ ॥
ଝମ ଝମ ହୋଇଣ ଝାଇମାରି ।
ସ୍ତମ୍ଭ ହୋଇଣ ଚକିତେ ନିହାରି ॥
କୋହ କୋହ ହୋଇ ଶୋକ ଉଠଇ ।
ରହି ରହି ହୋଇ ଶ୍ୱାସ ଫୁଟଇ ।
ଆଶକତରେ ଚଳି ନ ପାରଇ ।
କୋଳେ ଧରି ହରି ସ୍ତନ ପିଆଇ ॥
ଗୋପୀ ସମ୍ଭାଳି ବସନ ପିନ୍ଧାଇ ।
କେଶ ସଜାଡ଼ି ଯତନେ ବାନ୍ଧାଇ ॥
ନିଦାମନ୍ଦିରେ ପ୍ରବେଶ କରାଇ ।
ପୁତ୍ର ଜନନୀ ପଲଙ୍କେ ଶୁଆଇ ॥
ଏକ ବୁଝିଁଣ ଆରେକ ପଚ୍ଛରେ ।
ଦୈତ୍ୟ ମଲା ଏ କେବଣ ବିଚ୍ଛୁରେ ॥
କେହି ବୋଲନ୍ତି ଦେବତା ମାଇଲେ ।
ନନ୍ଦସୁତ ପାଇ ପରିଧାଇଲେ ॥
କେହି ପଟାନ୍ତର କଥା କହଇ ।
ହରି ଦଇତ୍ୟାରି ନାମ ବହଇ ॥
ଯେଣୁ ବାଳକେ ମଲା ବିଚୁରିଲା ।
ତେଣୁ ଗଗନେ ହରି ନିବାରିଲା ॥
ଧର୍ମ ଦେଖି କେମନ୍ତେ କଲା ପାରି ।
ଧର୍ମ ଠାରୁ କେ ନାହିଁ ବଳଆର ॥
ଦୁଇବେଳ ଆପଦରୁ ବଞ୍ଚିଲା ।
ବଡ଼ ଜଣେ କରି ବିଧି ସଞ୍ଚିଲା ॥
ଆଗୁସାରି ହୋଇଁ ଜଣେ ବାହାର ।
ରାଜ ଲକ୍ଷଣ ଅଛି ଗୋ ଏହାର ॥
କଂସ ନାଶି ହୋଇବ ନୃପବର ।
ଏଣୁ ମାରଣ ଲୋଡ଼ଇ ଅସୁର ॥
ସ୍ୱୟଂ ଈଶ୍ୱର ରଖିବେ ଯାହାକୁ ।
ଦୈତ୍ୟ ମାରିକ ପାରିବ ତାହାକୁ ॥
ଧୀର ବହଇ ମଳୟ ମରୁତ ॥
ଚଉଦିଗରେ ମଙ୍ଗଳ ପୂରିତ ॥
ନନ୍ଦ ଅନେକ ବିପ୍ର ଅଣାଇଲେ ।
ପୂଜା କରି ଚରଣେ ଜଣାଇଲେ ॥
ମୋର ପୁତ୍ରକୁ କଲ୍ୟାଣ କରିବ ।
ଯକ୍ଷ ରାକ୍ଷସ ପିଶାଚ ତାରିବ ॥
ନନ୍ଦ ବଚନେ ବ୍ରାହ୍ମଣ ବିଶେଷ ।
କୃଷ୍ଣ ଶିରରେ ଦିଅନ୍ତି ଆଶିଷ ॥
ପାଦଧୂଳି ମୂର୍ଦ୍ଧନରେ ସିଞ୍ଚନ୍ତି ।
'ଶତ୍ରୁ ନାଶ ଯାଉ ତୋର' ଇଛନ୍ତି ॥
ବଳ ପ୍ରାକର୍ମେ କେହି ନ ଜିଣନ୍ତୁ ।
ତୋର ଆଶ୍ରୟେ ଜଗତ ଜିଅନ୍ତୁ ॥
ମିଷ୍ଟ ଅନ୍ନରେ ଭୋଜନ କରାଇ ।
ଦେଲା ବିପୁଳ ମନ୍ଦିର ପୂରାଇ ॥
ଏହିମତେ କେତେହେଁ ଦିନ ଗଲା ।
ଦିନୁ ଦିନୁ ଅଧିକ ନନ୍ଦବଳା ॥
ଏମନ୍ତରେ ବର୍ଷିଗଲା ବରଷେ ।
ନାନା ଉତ୍ସବ ଜନମ ଦିବସେ ॥
ନନ୍ଦ ମନ୍ଦିରେ ଜଗତ ଜୀବନ ।
ତୁଣ୍ଡେ ଦୁଇ ଦୁଇ ନବ ରଦନ ॥

ନାନାରଙ୍ଗେ ଖେଳନ୍ତି ଘୁଲୁଘୁଲୁ ।
ଖଣ୍ଡନୂର ରହସ ପଞ୍ଚଦୂଷା ॥
ଛୁଣ୍ଡ ଅଙ୍ଗୁଳି ନାଚେ ଜରଜର ।
ଚଣ୍ଡକେଶ ତଳେ ସରସର ॥
ଭାଲୁ ଚୂଳ ଅଳକା ବେଢ଼ିବେଣୀ ।
ଫନ୍ଦୁ ଚନ୍ଦ୍ରକ ଶିଶୁଅଳିଶ୍ରେଣୀ ॥
ନୟନେ ଅଞ୍ଜନ ନାସେ ବୁନ୍ଦମୋତି ।
ପୂର୍ଣ୍ଣଚନ୍ଦ୍ର ଅମୃତ ବିନ୍ଦୁ ଜ୍ୟୋତି ॥
କର୍ଣ୍ଣେ ହେମଗୁଣଗୁଞ୍ଜା ପ୍ରବାଳ ।
ଗଳେ ପଦକ ହେମକଣ୍ଠି ମାଳ ॥
ବାହେ ବାହୁଟି କରରେ କଙ୍କଣ ।
ଛୁଦ୍ରମୋତି ଅଙ୍ଗୁଳିରେ ଭୂଷଣ ॥
ନବ ନୀରଦ ନିରମଳ ଗାତ୍ର ।
ମଣିବନ୍ଧନ କଟି ହେମସୂତ୍ର ॥
ପାଦେ ନେପୁର ରୁଣଝୁଣ ବାଜେ ।
ଛୁଆସିଂହ ବିକ୍ରମ ଠାଣି ସାଜେ ॥
କରେ ଲବଣୀ ଆଣୁଥାଇ ଗୁଳେ ।
'ମାଆ ମାଆ' ବୋଲିଣ ହେମାଗାଳେ ॥
ମାଏ ଧୂଳି ଝାଡ଼ି କୋଳେ ଧରନ୍ତି ।
ମୁଖେ ଚୁମ୍ବ ଦେଇ ଖେଳ କରନ୍ତି ।
କୋଳେ ବସାଇ ଜାନୁ ଆଉଜାଇ ।
ସ୍ନେହଲାଳସେ ମନକୁ ମଜାଇ ॥
ମୁଖେ ନିରେଖି ହସା ଉଲୁସଇ ।
ସୁଖ ବାତ୍ସଲ୍ୟ ରସେ ବିଳାସଇ ॥
ବେଢ଼ି ବରଜକାମିନୀ ହରଷେ ।
କଉତୁକରେ ମଜନ୍ତି ବିଶେଷେ ॥
କାହା ସ୍ତନରୁ କ୍ଷୀର ଲସିଆଇ ।
ମୁଖେ ଦେଇ କେ କଥା ଭାଷିଆଇ ॥
କେହୁ କର ପ୍ରସାରଣ ନେଦଇ ।
ଧାଇଁଖିଆଛି ଏହୁ ନେଗୋ ଚିହ୍ନାଇ ॥
କେହୁ ଶରଧାରେ କର ବଢ଼ାଇ ।
ଏକ ଆରକେ ଘେନନ୍ତି ଛଡ଼ାଇ ॥
ତରୁ ମଳୟ ଲାଗିଣ ଯେସନେ ।
ଗୋପୀ କୃଷ୍ଣ ଅଙ୍ଗ ଲାଗି ତେସନେ ॥

ନିଜ ସହଜ ବିକାର ଦେଖିଲେ ।
କୃଷ୍ଣ ଅନୁରାଗରେ ଯେ ବଞ୍ଚିଲେ ॥
କାହା କୁଚମଣ୍ଡଳକୁ ବାସ ଘୁଚେ ।
କରକମଳରେ ଅଗ୍ର ମଞ୍ଜାଳେ ॥
କାଖ କରି ଘେନ କେହୁ କାମିନୀ ।
ହସା ପରେ ନାଚଇ କରେ ଘେନି ॥
ଘନକଠିନ କୁଚ ପରେ ନାଚ ।
ବ୍ୟଥା ପାଇ କୋମଳ ପାଦ ପାଞ୍ଚ ॥
ହେମଗିରି ଶିଖରେ କି ଶିଖିନ ।
ନୃତ୍ୟ କରଇ ରମଣୀମୋହନ ॥
କେହୁ ବସାଇଣ ତାଳ ଧରଇ ।
'ହାଣ୍ଡି ଝୁଲୁଝୁଲୁ' ବୋଲି ବୋଲଇ ॥
ତଉପାଦେ ରହି ହରି ଝୁଲନ୍ତି ।
ଦେହେ ଫୁଟିବ ବୋଲି କେ ବୋଲନ୍ତି ॥
ହାଣ୍ଡି ଝୁଲିଇରେ ହାଣ୍ଡି ଝୁଲଇ ।
ହାଣ୍ଡି ଦୁଧ ଦହି ଖାଇ ଫୁଲଇ ॥
ହାଣ୍ଡି କପୋଳେ ସିନ୍ଦୂର ଶୋହୁଛି ।
ହାଣ୍ଡି ତାଳୁରେ ଚୂଳକୁ ବହୁଛି ॥
ହାଣ୍ଡି ପୁଲସି ଚୂଳବା ସାଜଇ ।
ହାଣ୍ଡି ବଳୟ ନୂପୁର ବଜାଇ ॥
କାହୁଁ ହାଣ୍ଡି ଏ ଗୋପକୁ ଆଇଲା ।
ସବୁ ଘର ଲବଣୀ ଏ ଖାଇଲା ॥
ହାଣ୍ଡି ଗୋପରେ ପ୍ରମାଦ କରିବ ।
କେହୁ ଅବା ଏ ହାଣ୍ଡିକୁ ଧରିବ ॥
ହାଣ୍ଡି ବହିବ କନ୍ଧରେ କାହାକୁ ।
କେହୁ ବୋଲେ ଯୋଗ ଥିବ ଯାହାକୁ ॥
କେହୁ ବୋଲେ ଛୁଆସିଂହ କହ୍ନାଇ ।
ଆଗେ ଗୁଲିଣ ପଛକୁ ଅନାଇଁ ॥
କେହୁ ବୋଲେ କସ୍ତୁରୀ ଜୀବ ଗୋଟି ।
ଅଙ୍ଗ ସଉରଭ ଗନ୍ଧ ଚହଟି ॥
କେହୁ ବୋଲଇ ନିଧନଧନିଆ ।
ଦୁଃଖୀ ସଙ୍ଗାଳ ରଙ୍କୁଣିସୁନିଆଁ ॥
ଏକ ଆରକେ ଗୁଣ ବାହୁନାଇଁ ।
ଏଥୁଁ ସୁଖ ସଂସାରେ ଆଉ ନାହିଁ ॥

ଯେତେ ଅଛନ୍ତି ବ୍ରଜପୁର ବାସୀ ।
ସର୍ବଜନ ମନ ମୋହି ଆକର୍ଷି ॥
ଦଣ୍ଡେ ମୁରୁଛି ନ ପାରନ୍ତି ମନେ ।
କାନ୍ତ ବିଚ୍ଛେଦେ କାମିନୀ ଯେସନେ ॥
ଦାଣ୍ଡ ପିହଣ୍ଡ ପାଛିଗ ପ୍ରାଙ୍ଗଣେ ।
ମେଲି କନ୍ଧ ବିକନ୍ଧ ଏଣେ ତେଣେ ॥
ଧୂଳି ଧୂସରେ ପଡ଼ିଣ ଖେଳନ୍ତି ।
ପଙ୍କଭୂମିରେଣ ଲୋଟଗୋଳନ୍ତି ॥
ମାଏ ଧରି ଆଣିଣ ଦିଅନ୍ତି ଗାଳି ।
ସୁବାସିତ ଜଳେ ତନୁ ପଖାଳି ॥
ଦୁଧ ପିଆଇ ଶୁଆଇ ଯାଆନ୍ତି ।
ଏହି ନ ଯାଉଁ ସେ ଆଗ ହୁଅନ୍ତି ॥
କାନ୍ଥ ବାଡ଼ ଧରିଣ ଛିଡ଼ା ହୁଏ ।
କର ପ୍ରସାରି ଡାକନ୍ତି ଗୋପୀଏ ।
ଲର୍ ଲର୍ ଘୁଞ୍ଚ ଘୁଞ୍ଚ ଯାଆନ୍ତି ।
କୃଷ୍ଣ ଟଳଟଳ ହୋଇ ଯିହାନ୍ତି ॥
ଧଡ଼ପଡ଼ ହୋଇ କୋଳେ ଟଣନ୍ତି ।
ଗୋପୀ ଚୁମ୍ବ ଦେଇଣ ଆଉଁସନ୍ତି ॥
ଆର ଗୋପୀ ଯେବେ କର ବଢ଼ାଇ ।
ଗେଲ କଉତୁକ ଭଷା ବଢ଼ାଇ ॥
ରଙ୍ଗ ବାଡ଼ ଖଣ୍ଡିଏ ହାତେ ଦେଇ ।
ଦୁଇ ଭାଇ ରଖ ଯା ବନେ ଗାଈ ॥
ମାଣ ଦୁଇ ଗୋଟିକ ଭାର କରି ।
କାନ୍ଧେ ଦିଅନ୍ତି କଚ୍ଛି କଚ୍ଛି ଭରି ॥
ବ୍ୟଥା ପାଇବ ବୋଲି କେ ଛଡ଼ାଇ ।
ଶୁଆ ପରାଏ କରି କେ ପଢ଼ାଇ ॥
ଉଭା କରି ତାଳି ମାରି ନଚାଇ ।
ନାନାରସେ ତାଳମାନ ବଜାଇ ॥
ତାଇ ଧନ ତାଇ ଧନ ନାଚୁଆ ।
ତାତା ଥେଇ ଥେଇ ପୀତପଟିଆ ॥
କୃଷ୍ଣ ନାଚନ୍ତି ଗୋପୀଙ୍କ ତାଳରେ ।
ଅଙ୍ଗ ସୁଭଙ୍ଗ ଯିହାଣୀ ଯିଳରେ ॥
କର ଚରଣେ ତାଳମାନ ଦେଇ ।
ଲଣ୍ଡୁ ସର ଲବଣୀ ଦିଅନ୍ତି ନେଇ ॥
ଭୁଞ୍ଜି ପଣତେ ବଦନ ପୋଛନ୍ତି ।
ସେହି ଗୋପିକା ସାନ୍ନିଧ୍ୟ ଲେଛନ୍ତି ॥
ଅତି ଅବାରଣ ଏ ଜଗୁଁ ଜଗୁଁ ।
କାନ୍ଦ ଉଠନ୍ତି ପଡ଼ିଣ ଅଢ଼ଙ୍ଗୁ ॥
ଓଷ୍ଠ ଛିଡ଼ିଣ ରୁଧିର ଗଳଇ ।
ମଲି ମଲି ବୋଲି ମାଏ ଧରଇ ॥
କୋଳେ ଧରି ଆଉଁସି ଯିଟୁଆନ୍ତି ।
ଗୀତ ଗାଇ ଶୁଆଇଣ ଯାଆନ୍ତି ॥
ଏଣେ ମୁଖ ଆଡ଼ଆନ୍ତେ ବାହାରେ ।
ତେଣେ ପ୍ରବେଶ ହୁଅନ୍ତି ଦୁଆରେ ॥
ଧାଇଁ ଧରି ଦୁଇ ମାଏ ପିଟନ୍ତି ।
କେଶ ଅସମ୍ଭାଳ ହୋଇ ଲୋଟନ୍ତି ॥
ପୁଣି ଛାଡ଼ଦେଲେ ଦାଣ୍ଡେ ବୁଲନ୍ତି ।
ସମ କୁମରଙ୍କ ସଙ୍ଗେ ଖେଳନ୍ତି ॥
ଧୂଳିଢିର ଧୂଳିଭାତ ତିଉଣ ।
ଯେସନ୍ତ ସମ୍ଭାର ଧୂଳିରେ ଭିଆଣ ॥
କେହି ସାଆନ୍ତ ସେବକ ଭିଷାଣୀ ।
ରାଜା ପରଜା ସାଧୁ ଦଣ୍ଡୁଆସି ॥
ରାସ ଦିବସ ଭୋଜନ ଶୟନ ।
ନନ୍ଦନନ୍ଦନ ସବୁରି ଜୀବନ ॥
କେତେବେଳେ ଫୋଳ କରି ରୁଷନ୍ତି ।
ପାଦେ ଭାଣ୍ଡ ଭାଙ୍ଗି ପୁରେ ପଶନ୍ତି ॥
ହନୁ ହନୁ ବଢ଼େ ବାଳ ଚରିତ ।
ଯାଇ ଆସି ପାରିଲେ ନନ୍ଦସୁତ ॥
ଦରେ ଘରେ ପଡ଼େ ଡାକ ବୋବାଳି ।
ସହି ନ ପାରନ୍ତି ତହିଁ ଗୁଆଳୀ ॥
ଅତି ବିରକତ ହୋଇ ଆଭିଷ୍ଟ ।
ଯଶୋଦାର ଆଗେ କଲେ ଗୁହାରି ॥
ଏକ ଗୋପୀଏ ବୋଲଇ ଭୋ ଦେବ ।
ତୋର କୁମରେ ହେଲୁଁ ପରାଭବ ॥
ଆଜ ପୁଅ ଗୋଡ଼ାଏ ସଙ୍ଗେ ଘେନି ।
ଘରେ ପଶି ଖାଏ ସର ଲବଣୀ ॥
ଦଧି ଦୁଧ ଦେଲା ସବୁ ଇଡ଼ାଇ ।
ମୋର ସମ୍ପଦ ଅଇଲା ବୁଡ଼ାଇ ॥

ଶାଶୁ ଅନେକ ଗାଳି ମୋତେ ଦେଲେ ।
ଘରେ ଥାଇ ତୁ ନ ଜାଣିଲୁ ତାଳେ ॥
ଆର ଗୋପୀ ଯଶୋଦା ପାଦେ ପଡ଼ି ।
ଶୋକେ କହଇ ବେନିକର ଯୋଡ଼ି ॥
ମୋର ପୁର ଯାଇଥିଲା କହ୍ନାଇ ।
ଅଚେତରେ ଶୋଇଥିବା ଅନାଇଁ ॥
ସିକା ପରେ ହାଣ୍ଡି ଅଛି ଲୁହିଁଲା ।
ବେଳେ ଚଢ଼ି ସର ସବୁ ଖାଇଲା ॥
ସିକା ଛିଡ଼ି ନଉଛି ଗଲା ଭାଙ୍ଗି ।
ଚେତା ପାଇ ଚାହିଁଲି ନିଦ୍ରା ଭାଙ୍ଗି ॥
ଧଡ଼ପଡ଼େ ଉଠନ୍ତେ ମୁଁ ଅନାଇଁ ।
ଧାଇଁ ଧରନ୍ତେ ଆଇଲା ପଳାଇ ॥
ଶାଶୁ ଆଗେ ଆସି ମୋର କହିଲା ।
ବୋହୂ ସର ହାଣ୍ଡିଏ ତୋ ଖାଇଲା ॥
ଦେଖି ବୋଇଲା କି କଲୁ ଗୁଆଳୀ ।
ମୋତେ ମାରି ଗୋଡ଼ାଇ ଦେଲା ଗାଳି ॥
ସତ ପରିଏ ମଣି ମୋର ଶାଶୁ ।
ନାନା ଭର୍ତ୍ସିଲେ ମନ୍ଦରେ ନ ପଶୁଁ ॥
ମୁଁ ତ ନ ଖାଇ ଓଲଟି ହୋଇଲି ।
ସତ ନ କଲେ ମୁଁ ଯେତେ କହିଲି ॥
ଏକ ଗୋପୀଏ ବୋଲଇ ଶୁଣିମା ।
ତୁମ୍ଭ କୁମରର ଯେତେ ମହିମା ॥
ଲୁଚି ଗମ୍ଭାରି ଭିତରେ ପଶିଲା ।
ଅଙ୍ଗ ଲୁଚାଇ ମଞ୍ଚାରେ ବସିଲା ॥
ଯେତେ ଥିଲା ଗୋ ସର ତା ଖାଇଲା ।
କୁଳ ଦେବତା ବୋଲିଣ ରହିଲା ॥
ମୁହିଁ ଅଟଇ ଲୋ ବଡ଼ବଡ଼ୁଆ ।
ମୋର ସେବା କର ନିତ୍ୟ ପଡ଼ୁଆ ॥
ନାନା ଦ୍ରବ୍ୟରେ ଗର୍ଭ ମୋ ପୂରାଅ ।
ମୋର ଉଦର ସନ୍ତୋଷ କରାଅ ॥
ନୋହିଲେଣ ନାଶ ହେବ ସମସ୍ତେ ।
ଭୟେ ଶୁଣି ପାଦେ ହେଲୁ ନମସ୍ତେ
ନାନା ଦ୍ରବ୍ୟ ତ ଆଣିଲୁ ଲୋଡ଼ାଇ ।
ସବୁ ଦେଲୁଁ ଗମ୍ଭୀରକୁ ବଢ଼ାଇ ॥

କର ବଢାଇ ସମସ୍ତ ଖାଇଲା ।
ଆଖି ବେନି କରେ ବୁଜ ବୋଇଲା ॥
ଆଜ୍ଞା ପାଇଣ ନୟନ ବୁଜିଲୁଁ ।
ନେତ୍ର ଅଳପ ଫିଟାଇ ଦେଖିଲୁ ॥
ଏତେ ବୁଝି ତାକୁ କାହିଁ ଦଶିଲା ।
ଏକ ଗୋପୀ ଆଗସରି ଭାଷିଲା ॥
କାଲି ଯାଇଥିଲା ମୋର ମନ୍ଦରେ ।
ପୁଅ ପଡ଼ିଥିଲା ତୋର ବନ୍ଧରେ ॥
ଶାଶୁବୁଢ଼ୀ ମୋର ଯାଇଁ ଧଇଲା ।
ରଜ୍ଜୁ ଆଣି ବାନ୍ଧ ମୋତେ ବୋଇଲା ॥
ଶୁଣି ମୋର ମୁଖ ଚାହିଁ ହସିଲା ।
ଦେଖି ହୃଦେ ଦୟା ମୋର ବସିଲା ॥
ପେଲି ପକାଇ ଦେଇଣ ଅଇଲା ।
ଶାଶୁ ଗାଳି ଦେଇ ଚାଲି ହୋଇଲା ॥
ନନ୍ଦଧନ ଏ ରୂପେ ଡକା କଲା ।
ଆଜ ଯୋଗେଣ ବନ୍ଧ ପଡ଼ିଥିଲା ॥
ରଜ୍ଜୁ ମାଗନ୍ତେ ନ ଦେଲୁଁ ବଢ଼ାଇ ।
ପେଲି ପକାଇଣ ଗଲା ଛଡ଼ାଇ ॥
ତୋର ହେତୁ ମୋର ନାଶ ହେଉଛି ।
ଏଡ଼େ ସାହାସ କାହିଁ ନନ୍ଦବଚ୍ଛ ॥
ଏକ ଗୋପୀ କହଇ କୋପ ଭରେ ।
ତୋର କୁମର ଯାଇ ମୋର ପୁରେ ॥
ଜଗିଥିଲା ବାଳକକୁ ଡରାଇ ।
ଦହି ଦୁଧ ସବୁ ନେଲା ଚୋରାଇ ॥
ଖାଇ ଦୁଆରେ ପିତୁଳ ଭାଙ୍ଗିଲା ।
ନିତ୍ୟ ଏରୂପ କରିବୁ ଚଳିଲା ॥
ଆଗସରି ଏକ ଗୋପୀ ବୋଇଲା ।
ଟୋକା ଗୋଟି ହୋଇ ଏତେ ଛଇଲା ॥
ଦହି ମୋହୁଁ ଥିଲି ଆସି ଜଗିଲା ।
ମୋତେ ଲବଣୀ ମେଞ୍ଚାଏ ମାଗିଲା ॥
ମୁହିଁ ବୋଇଲି ଦଣ୍ଡେ ଥାଅ ରହି ।
ଖୁଆ କାଢିଲେ ଲବଣୀ ଦେବଇଁ ॥
ଏତିକରେ ଖଙ୍ଗୁ ସେ ପାଇଲା ।
ଦଧିଭାଣ୍ଡେ ଶିଳପତା ମାଇଲା ।

ନାରଖାର ହୋଇଗଲା ଗୋରସ ।
ସବୁ ଦୁଷ୍ଟଙ୍କରୁ ତୋ ପୁଅ ସରସ ॥
ମୋର ଗୋଡ଼ାନ୍ତେ ଅଇଲା ପଳାଇ ।
ନାନା ମତେ ଗାଳି ଦେଲା ଚଳାଇ ॥
ପେଟକାବୁଣ୍ଡ ଆଲୋ ହାଣ୍ଡି ଖାଇ ।
ହନେ ମାଗିଲେ ଲବଣୀ ନ ପାଇ ॥
ସବୁ ଖାଇ ଧୂଳି ମାଖି ମୁହଁରେ ।
ଲୋକେ ଛି ଛି କରୁଛନ୍ତି ତୋହରେ ॥
କେତେ ଧିକ୍କାରେ ବଚନ ବୋଇଲା ।
ଶୁଣି ସହି ତ ମୋହର ନୋହିଲା ॥
ରହି ନ ପାରିବ ତୋହ ପୁଅରେ ।
ଡେଇଁ ପଡ଼ିବ ନୋହିଲେ କୂଅରେ ॥
ଏକ ଗୋପୀ ବୋଇଲା ଆଗସରି ।
ମାଏ ଶୁଣିବା ମୋହର ଗୁହାରି ॥
ଖେଳୁଥିଲା କାହ୍ନୁ ବାଳ ସଙ୍ଗରେ ।
ଧାଇଁ କହିଲା ମୋହୋର ଆଗରେ ॥
ତୋର ପୁଅକୁ ସୁବଳ ମାଇଲା ।
ନାନାମତେ ଗାଳି ଦେଇ ବୋଇଲା ॥
କାହ୍ନ ଭୂମିରେ ପଡ଼ି ଲୋଟଗାଳି ।
ଶୁଣି ସତ ପରି ମଣି ଧାଇଁଲି ॥
ଯାଇଁ ଦେଖିଲି ବାଳକ ମେଳରେ ।
ରଙ୍ଗେ ଖେଳନ୍ତି ଶରଧା ଗେଲରେ ॥
ମୁଁ ଯେ ତର୍ଜ୍ଜନା କରି ଯାଉଥିଲି ।
ମିଛ ଜାଣି ଲାଜ ପାଇ ଅଇଲି ॥
ଏଣେ ଦେଖିଲି କୃଷ୍ଣ ଘରେ ନାହିଁ ।
ସର ଲବଣୀ ସବୁ ଗଲା ଖାଇ ॥
କାହ୍ନ କହଇ ଏକଇ ଗୁଆଳୀ ।
କାଲି ମଥୁରା ବିକ ଯାଇଥିଲି ॥
ଝିଅ ଥିଲା ମୋର ଘରେ ଜଗିଆ ।
ଯାଇଁ ପଶିଲା ତୋ ନବରଙ୍ଗିଆ ॥
ତାକୁ କିକ କହିଣ ଭୁଲାଇଲା ।
ଦଧି ଦୁଧ ସର ସବୁ ଖାଇଲା ॥
ତୋର ମୋର ହୋଇବା ଆଜ ବିଭା ।
ମୋତେ କରି ପାରିବୁଟିକି ସେବା ॥

ପେଟ ପୂରାଇଣ ମୋତେ ଖୁଆଅ ।
ଖେଖେ ଜୀବନ ଯାଉଛି ରଖାଅ ॥
ତୋର ପୁଅ ବୋଲେ ମୋହ ହୋଇଲା ।
ଯେତେ ଥିଲା ସେ ସବୁ ଖୁଆଇଲା ॥
ଖସିଗଲା ମୋ ଆସିଲା ବେଳକୁ ।
ଲୁଚି ପଳାଇ ବାଳକ ମେଳକୁ ॥
ଛନ୍ନ ହୋଇଲା ମୋହର ବାଳକା ।
କୃଷ୍ଣ ଲଗାଇଲା କସ ଭେଳିକ ॥
ଘରେ ନପଶଇ ସୁଖ ଏଡ଼ଇ ।
ବାଇ ପରିଏ ବଚନ ହୁଡ଼ଇ ॥
କସ ଖୁଆଇଲା ଅବା ତାହାକୁ ।
ଆଉ ଗୁହାରି କରିବ କାହାକୁ ॥
ମାଏ ଶୁଣି ଶୁଣି ଗୋପ ଗୁହାରି ।
ପୁତ୍ର ବୋଲଣା ଶୁଣି ତାପ ପୂରି ॥
ସତ ଜାଣିଲି ସବୁରି ବଚନ ।
କେତେ କାହାର ନାଶ କଲା ଧନ ॥
ଏତେ ବୋଲଣା କଲା ମୋର ପୁଅ ।
ଧନ ଦେବଇଁ ଏହି କ୍ଷଣି ନଅ ॥
ସର ଗୋଟିକା ଗୁଞ୍ଜିଲେ ନ ଖାଇ ।
ମୋତେ ସତ କରି କହ ଦେଖାଇ ॥
ନାନା ଗଡ କରି ମୋତେ ଲଗାଅ ।
ମିଛ କଥା କହି ମୋତେ ଭଙ୍ଗାଅ ॥
ଏବେ ସବୁରି ଗୁହାରି ଶୁଣିଲି ।
ମୋର ପୁଅ ଦୁଷ୍ଟ ପରମାଣିଲି ॥
ନାଶ କରିଛି ଯାହାର ଯେତକ ।
ବୁଝି ଧନ ଘେନ ଯାଅ ତେତକ ॥
ତୁମ୍ଭ କହିଲା କଥା ନକ ମିଛ ।
ଖାଇଥିବ ରଙ୍କୁଣୀ ଘର ବଛ ॥
ଶୁଣି ଗୋପୀ ଅତି ଲାଜ ପାଇଲେ ।
ବଳରାମ ଯଶୋଦାଙ୍କୁ କହିଲେ ।
ମାଏ ତୋର ପୁଅ ମାଟି ଖାଇଲା ॥
ଧରି ଛଡ଼ାବନ୍ତେ ମୋତେ ମାଇଲା ॥
ଶୁଣି ଘୃଷ୍ଟ ଘେନ ମାଏ ଧାଇଁଲେ ।
କୃଷ୍ଣ ଖେଳିବା ଠାବରେ ମିଳିଲେ ॥

ଲୁଚି ଧଇଲେ ଫଳ କାଢ଼ି ପାଇଁ ।
ମାଟି ଫକାବୋଲି ଓଷ୍ଠ ଉଞ୍ଚାଇ ॥
ନନ୍ଦ ଗୋପାଙ୍କ ଘରେ କରୁ ଡକା ।
ଓଷ୍ଠ ନଖାଉଁ ବେଗେ ମାଟି ଫକା ॥
ଭୟେ ଆତଙ୍କେ ବୋଲନ୍ତି ଗୋବନ୍ଦ ।
ମିଛ କହୁଅଛନ୍ତି ରାମଚନ୍ଦ୍ର ॥
ଚୋର କରରୁ ବେଗେ ଓଷ୍ଠ ଫକା ।
ମାଏ ବୋଲନ୍ତି ଚୋର ତୁଣ୍ଡ ଦେଖା ॥
ଶୁଣି ବଦନ ବିସ୍ତାରେ କହ୍ନାଇ ।
ମାଏ ନିରେଖି କରିଣ ଅନାଇଁ ॥
ଗର୍ଭେ ଅଶେଷ ବ୍ରହ୍ମାଣ୍ଡ ଦେଖିଲେ ।
ମୂର୍ଚ୍ଛା ଯାଇ ପୁଣି ଚେତ ବସିଲେ ॥
ଯେତେ ରେଣୁ ତେତେ ଦିଶେ ବ୍ରହ୍ମାଣ୍ଡ ।
ନଦୀ ପର୍ବତ ଭୂମି ଦ୍ୱୀପଖଣ୍ଡ ॥
ବନ ଉପବନ ନଗ୍ର ପାଟଣା ।
ଜନ ପରଜା ସଂସାର ଘଟଣା ॥
ଭୟେ କାତରେଣ ଚିତ୍ତ ଭ୍ରମଇ ।
ସତ ସ୍ୱପନ ବୋଲିଣ ଦକାଇ ॥
ବାଇ ହେଲି କି ପିତ୍ତର ବିକାର ।
ମାୟା କଲା ଅବା କେଉଁ ଅସୁର ॥
ଖେଦଜଳଧିରେ ଚିତ୍ତ ବୁଡ଼ାଇ ।
କାଖ କରିଣ ପଣନ୍ତ ଘୋଡ଼ାଇ ॥
ପୁତ୍ର ଘେନିଣ ମନ୍ଦିରେ ପଶିଲେ ।
ପୌର୍ଣ୍ଣମାସୀ ପାଦ ତଳେ ବନ୍ଦିଲେ ॥
ମୁନି ବୋଲନ୍ତି ଶୁଣ ସ୍ଥିରମନେ ।
ଦିନୁଦିନୁ ଆନୁଆନ ବଚନେ ॥
ଅତି ଅବାରଣ ହୋଇ ବୁଲନ୍ତି ।
ଦଶବଂଶ ମେଳ ହୋଇ ଖେଳନ୍ତି ॥
ନିତି ପଡ଼ଇ ଗୋପରେ ବୋବାଳି ।
ନପାରନ୍ତି ମାଏ ରଖି ସମ୍ଭାଳି ॥
ଧାପ ଧାଉଡ଼ି ବାଡ଼ି ତଳେ ତଳେ ।
ଲୁଚି ଚୋରି କରନ୍ତି କାହା ଘରେ ॥
କାହା ଖେଳିଲା ପୁଅକୁ କନ୍ଦାଇ ।
ଶୋଇଥିଲା ବାଳକକୁ ଉଠାଇ ॥

ମଳମୂତ୍ର କରନ୍ତି କାହା ଘରେ ।
ଟେକା ପଥର ମାରି କାହା ପୁରେ ॥
ମାଏ ଗୁହାରି ଶୁଣି ବିରକତ ।
ଧାଇଁ ଧରି ବାନ୍ଧିଲେ ବେଗେ ପୁତ୍ର ॥
କ୍ରୋଧ ହୋଇଣ ନାନା ଗାଳି ଦେଲେ ।
ଓଷ୍ଠ ଉଞ୍ଚାଇଣ ଚଳ ବୋଇଲେ ॥
ଏହିରୂପେ ଥିବ ନିତି ଖଟାଇ ।
ଗୋପୀମାନଙ୍କ ଗୁହାରି ମେଣ୍ଟାଇ ॥
ତୋହ ଘେନି ନ ବୋଇଲା ବୋଲନ୍ତି ।
ନାନା ମତେ କହି ମୋତେ ଚଳାନ୍ତି ॥
ଦାମ ଉଦରେ ଦେଖି ଗୋପବାଳୀ ।
ନାମ ଦେଲେ ସେ ଦାମୋଦର ବୋଲି ॥
ଦହି ମୋହିଁବାକୁ ଗଲେ ଯଶୋଦା ।
କୃଷ୍ଣ ହୋଇ ଅଛନ୍ତି ରୋଳ ବନ୍ଧା ॥
ହରି ତୋର ବୃକ୍ଷତନୁ ଚାହିଁଲେ ।
ମନେ ବହୁ ଚିନ୍ତା ଖେଦ ପାଇଲେ ॥
ରୋଳ ଘୋଷାରି ଗୁଳୁଗୁଳୁଗାଳି ।
ଚୋର ବେନି ସନ୍ଧିରେ ଗଲେ ଗଳି ॥
ରୋଳ ହାବୁଡ଼ନ୍ତେ ଆଣ୍ଟେ ଉଝୁଡ଼ି ।
ଭିଡ଼ ପାଇଣ ପଡ଼ିଲା ଉପୁଡ଼ି ॥
ନିଜ ଦେହରେ ସ୍ତୁତି କଲୁ ଯେତେ ।
ହେତୁ କରି ସୁମରି ଏବେ ଚିତ୍ତେ ॥
ନିଜପୁରେ ଆଜ୍ଞା ପାଇଁ ଅଇଲୁ ।
ସେହି ଦିନୁ ତୁ ପବିତ୍ର ହୋଇଲୁ ॥
ଚୋର ଆସନ୍ତେ ଗୋପରେ ଜାଣିଲେ ।
ପୁରି ଭାଙ୍ଗିଲା ଚୋର ଚରୁଡାଳେ ॥
ଗୋପେ ଅରିଷ୍ଟି ପଡ଼ିଲା ହେଜଲେ ।
କୃଷ୍ଣ ଲୋଡ଼ି ବୃକ୍ଷ ତଳେ ଖୋଜିଲେ ॥
ପୁତ୍ର ଘୋଡ଼ି ପଡ଼ିଥିଲା ପାଇଲେ ।
ଧାଇଁ ଜନନୀ ସେ କୋଳ ଧଇଲେ ॥
କାଖ କରିଣ ଭିତରକୁ ନେଇ ।
ଛନଛନ ମନ ଖେଦ ଲଭଇ ॥
ଅଦଭୁତେ ବୃକ୍ଷ ମାଡ଼ି ପଡ଼ିଲା ।
ଧର୍ମସହାୟତାରୁ ଉବୁରିଲା ॥

ବେଳୁଁ ବେଳୁଁ ବଢ଼ି ପଡ଼େ ଅରିଷ୍ଟି ।
ଏଥି ଥିଲେ ନ ବଞ୍ଚ ପୁରଗୋଷ୍ଠି ॥
ଉତପାତ ଏ ବହୁତ ଦିଶିଲା ।
ଆଦ୍ୟେ ପତନା ପିଣ୍ଡ ନାଶଗଲା ॥
ଏକଗୋଷ୍ଠି ହୋଇ ସର୍ବେ ମିଳଲେ ।
ବୃଦ୍ଧମାନେ ବସି ମନେ ଭାଳଲେ ॥
ରିଷ୍ଟ କେତେ ଏଥିରେ ବଞ୍ଚାଇବା ।
ବୃନ୍ଦାବନେ ଘର କରି ରହିବା ॥
ଦକ ଯିବାକୁ ମଥୁରା ନିକଟ ।
ଗାଈ ଚରିବେ କାଳନ୍ଦୀର ତଟ ॥
ଜଳ ତୃଣ ବହୁତ ଖୁଆଇବା ।
ବାଳ କୁଦରେ ଗୋଷ୍ଠ ରୁହାଇବା ॥
ଅତି ପବିତ୍ର ଉତ୍ତମ ସେ ବନ ।
ଆମ୍ଭମାନଙ୍କ ରହିବାକୁ ସ୍ଥାନ ॥
ଫଳ ପୁଷ୍ପ ପଲ୍ଲବ ଯେତେ ଇଚ୍ଛା ।
କରେ ମିଳଇ ମନେ କଲେ ବାଞ୍ଛା ॥
ନନ୍ଦ ଘେନଣ ଗୋକୁଳେ ବିଚାର ।
ବୃଦ୍ଧ ଜ୍ଞାତି ବାନ୍ଧବଙ୍କୁ ପଚାର ॥
ଶୁଭ ଅନୁକୂଳେ ହେଲେ ବାହାର ।
ସଙ୍ଗେଘେନ ଯେତେ ଦ୍ରବ୍ୟ ଯାହାର ॥
ଭାର ଶକଟ ବଳଦ ପୂରାଇ ।
ରାମ ଗୋବିନ୍ଦ ଘେନଣ ଚଳାଇ ॥
ଗାବ ମହିଷ ସେ ମେଷ ଛାଗଳ ।
ଆଗେ ଚଳାଇଛନ୍ତି ପଲପଲ ॥
ନାନା ରଙ୍ଗେଣ ଗୋପାଳେ ନାଚନ୍ତି ।
ବାଡ଼ ଧରି ଉଡ଼ା ମାରି ଉଠନ୍ତି ॥
ଟାହି ଟାପରା କୁରାଳ କୁହାଟି ।
ଭଗୋତମାଳଆ ବାଘ ମୁହାଁଟି ॥
ଧାପ ଧାଉଡ଼ କ୍ଷେପା ଆଡ଼ଚାରା ।
ଓଆଁ ଉକୁଷା ବାଙ୍କ ଫେରାଫେରା ॥
ଟାଣ ମାନ ଧରି ଅଙ୍ଗ ଭଙ୍ଗିରେ ।
ମାଲ ବନ୍ଧାଣୀ କାଛେଣି ଜଙ୍ଘରେ ॥
ନିଶ ମୋଡ଼ି କେହୁ ନାସା ଫୁଲାଇ ।
ଚନ୍ଦ୍ର ପ୍ରାପ୍ତେ ବେଣବାଡ଼ ବୁଲାଇ ॥

କାଛ କାଞ୍ଚଲା ସେ ଘଣ୍ଟି ଘାଗୁଡ଼ି ।
ଅବତଂଶ କର୍ଣ୍ଣେ କିଂଶୁକ କଡ଼ି ॥
ତାଡ଼ କଙ୍କଣ ମୟୂରର ପକ୍ଷୀ ।
ଗନ୍ଧ ଚନ୍ଦନ ରଙ୍ଗମାଟି ମାଖି ।
ରଙ୍ଗ ଗୁଞ୍ଜୁରା ଗୁଞ୍ଜମୁଣ୍ଡମାଳୀ ॥
ନାନାକୁସୁମ ରଙ୍ଗ ଜାମୁଡାଳ ॥
ଠେକା ଚଉତନା ରଙ୍ଗପାଗିଆ ।
ଟୋପି ଟୋପର କେ ନବରଙ୍ଗିଆ ॥
ଫରହର ବାହେ ନେତ ଉଡ଼ଇ ।
ଚୂଳଚନ୍ଦ୍ରକା ଶ୍ରମରେ ମଣ୍ଡାଇ ॥
ବାଘ ଲଞ୍ଜି ଆଗେ କାଇ-କାଛୁଆ ।
ମହା ବଳଆର ଗୋଟି ବାଛୁଆ ॥
ଧନ କୁଟୁମ୍ବ ଘେନଣ ସଙ୍ଗରେ ।
ବୃନ୍ଦାବନେ ମିଳ ନାନାରଙ୍ଗରେ ॥
ସ୍ଥାନ ମାଡ଼ିଣ ଆବୋରି ରହିଲେ ।
ବିଶ୍ବକର୍ମା ପୁର ନିର୍ମାଣ କଲେ ॥
ପଦ୍ମ ଆକାରେ ନବର ବସିଲା ।
ସ୍ବୟଂ ଗୋଲକ ମଣ୍ଡଳ ଖସିଲା ॥
ଶତ ପାଖୁଡ଼ାରେ ପୁର ବିରୋଳ ।
ଗ୍ରାମ ମଧ୍ୟରେ ନନ୍ଦର ମନ୍ଦର ॥
କଂସ ପଟାନ୍ତର ଦେବା ତହିଁକ ।
ବାରସ୍ବତ ସମ ନୁହେ ଯହିଁକ ॥
ନଦୀ କାଳନ୍ଦୀ ବହଇ ଉତ୍ତରେ ।
କୂପ ସରୋବର ଗ୍ରାମ ଭିତରେ ॥
ପୂର୍ବେ ଅଟାଳ ଦକ୍ଷିଣେ ନବର ।
ମେଡ଼ ପଶ୍ଚିମେ ଜଗତି ଉତର ॥
ପୁରେ ପୁରେ ଅଛି ପୁଷ୍ପବନିକା ।
ଚୂନ ଶକ୍‌କଣରେ ଚୂଆ ଚଉକା ॥
ଜଳଯନ୍ତ୍ର ମଣ୍ଡପ ଶିଳରେଖ ।
ସାରି ଶୁକ ପଢ଼ନ୍ତି ରଖି ରଖି ॥
ଲେମ୍ବୁ କମଳା ଟଭା ତରୁଗଣ ।
ଫଳଭରେ ଲମ୍ବେ ପୁର ପ୍ରାଙ୍ଗଣ ॥
ଅତି ଗହଳ ଚଉଳ ସୁରଙ୍ଗ ।
କରମଙ୍ଗା କରୁଣା ସେ ନାରଙ୍ଗ ॥

ଫଳ ଓ୍ୱାଳିଆ ଝାମି ପଦ୍ମର ।
ଶିର ଲମ୍ବାଇ ଅବନୀ ଗନ୍ଧଇ ॥
ପାନ ଅଙ୍ଗଙ୍କ ବୃକ୍ଷରେ ଲଗିଛି ।
ନାଗେଶ୍ୱର ପୁନ୍ନାଗ ଗଛି ଗଛି ॥
ଗୁଆ ନଡ଼ିଆ ତରୁ ଧାଡ଼ଧାଡ଼ ।
ଜାଇଫଳ ଲବଙ୍ଗ ବାଡ଼ ବାଡ଼ ॥
ତେଜପତ୍ର ଡାଳ ଲାଗେ ବୃକ୍ଷକୁ ।
ଚମ୍ପା ଫୁଟି ପଡ଼ିଅଛି ତଳକୁ ॥
ମଲ୍ଲି ଲଗିଛି ଗବାକ୍ଷ ସଳଖେ ।
ଯାଇ ପାଖୁଡ଼ା ପଡ଼ୁଛି ପଲଙ୍କେ ॥
ନେମତ ତଳରେ ମଣ୍ଡିତ ମନ୍ଦାର ।
କୁଞ୍ଜ କୁଟୀର ଗମ୍ଭୀର ଅନ୍ଧାର ॥
ରମ୍ଭାତରୁ ଆଚ୍ଛାଦନ ଦୁଆରେ ।
ମନ୍ଦା ଆବୃତ ହୋଇଛି ଗୁଆରେ ॥
ପାଚି ଫାଟି ପଡ଼ିଅଛି ଦାଡ଼ିମ ।
ପୁଷ୍ପ କେତକୀ ଦରଶେ ମନୋରମ ॥
ପୀତ ଚକ୍କଣ ମାଧବୀ ମଣ୍ଡପ ।
ତେଙ୍ଗ ଖଜୁରି ଲବଙ୍ଗ ମଣ୍ଡପ ॥
ଚିତ୍ର ଲେଖନ ମଧୁରି ମନ୍ଦରେ ।
ବାତ ମଳୟ ଗବାକ୍ଷ ମଧ୍ୟରେ ॥
ଏକ ପୁରକୁ ଆରେକ ଅଧିକ ।
ଦେଖି ଅମରାବତୀ ଧିକ ଧିକ ॥
ଯେଝା ଆନୁରୂପେ ପୁର ନିର୍ମାଣେ ।
ସୁଖେ ରହିଲେ ନନ୍ଦ ପରିଜନେ ॥
ଗାଈ ମହିଷ ମନ୍ଦର ବଶାଳ ।
ପଶୁ ବିହଗ ଅଶ୍ୱ ଗଜବଳ ॥
ତହୁଁ ଶତଗୁଣେ ପୁର ଶୋଭଇ ।
ସ୍ୱୟଂ ସ୍ୱୟମ୍ଭୁ ବାସବ ଲୋଭଇ ॥
ବୃନ୍ଦାବନେ ମେଲି ଗାଈ ଚରନ୍ତି ।
ଯମୁନାରେ ଜଳ ପାନ କରନ୍ତି ॥
ନିତି ନିତି ଦିନବେଳ ଦୁହାଁଇ ।
ନିଶାକାଳେ ଗୋଷ୍ଠ ସୁଖେ ରୁହାଇ ॥
ଦିନୁ ଦିନୁ ସୁଖ ହୁଏ ବହୁତ ।
ସମ ନ ଥିବ ବ୍ରହ୍ମାଣ୍ଡ ଆଜତ ॥

ଶ୍ୟାମ ଗୋବର୍ଦ୍ଧନ ଲୀଳା ରଚନ ।
କଟିକାଛ ପୀତ, ମୀ... ଚନ୍ଦ୍ରିକ ॥
ତୁଲ୍ୟବୟସ ବାଳ ଧେନୁ ସଙ୍ଗେ ।
ଖେଳ ବିବିଧ କଉତୁକ ରଙ୍ଗେ ॥
ନଟବର ବେଶ ହୋଇ ନାଚନ୍ତି ।
ବଳେ ଆଲିଙ୍ଗନ ଗୋପୀ ଯାଚନ୍ତି ॥
ନବକିଶୋର ଅବସ୍ଥା ପ୍ରବେଶ ।
ଗୋପୀମାନଙ୍କ ସଙ୍ଗେ ପରିହାସ ॥
ହାସରସ କରି କଥା କହାଇ ।
ଗୃହ ଚିବୁକକୁ କର ବଢ଼ାଇ ॥
କେହୁ ଯୁବତୀ ଗଣ୍ଡରେ ମଣ୍ଡଇ ।
କାହା ମଦନ ବେଦନା ଖଣ୍ଡଇ ॥
କର ଧରି କେ ନିରେଖେ ମୁଖକୁ ।
କୁଚକଳସେ କସ୍ତୁରି ରେଖକୁ ॥
ଯାହା ଜାନୁ ଯଉବନ ଚଳିବ ।
ତେତେବେଳେ ସୁନ୍ଦରୀ କ କରିବ ॥
ଉରେ ଲଗାଇ ଭିଡ଼ିବ ଆତୁରେ ।
ଛନଛନ ମନ ବାଇ ବାତୁଳେ ॥
ତେତେବେଳକୁ ନ ପୁଣ ନ ସହ ।
କୃଷ୍ଣ ହସି ବୋଲନ୍ତି ସତ କହ ॥
ଏକ ଚତୁରୀ ସଜନୀ ସଙ୍ଗତରେ ।
ବହି ଉତ୍କଣ୍ଠ ଗୃହୀଁ ଇଙ୍ଗିତରେ ॥
ନବଘନ ଉଦେ ଦେଖି ଗୃତକେ ।
ଚଞ୍ଚୁ ବିସ୍ତାରିଣ ତୃଷା ଆତଙ୍କେ ॥
ଜାଣି ଘନରସ ଯେବେ ନ ଦେଲା ।
ପଛେ ବରଷିଲେ ସେ କଣ ହେଲା ॥
ଏକ ପରିହାସୀ ବୋଲେ ଆଗର ।
ମୋର ତହୁଁ ଶୁଣ ନବନାଗର ॥
କାଲି ଯାହା ପଛେ ଗଲି ଗୋଡ଼ାଇ ।
କାମସାଗରେ ଥାଆନ୍ତା ବୁଡ଼ାଇ ॥
ତହୁଁ କେମନ୍ତେ ଯାଆନ୍ତ ଉବୁରି ।
ବାଳକାଙ୍କୁ ମନ ମୋହ ମଧୁରି ॥
ଗୃହୀଁ ଚତୁରୀଏ ପୁଣି ଭଷଇ ।
ଆମ୍ଭ ସନ୍ନିଧିକୁ କମ୍ପା ଆସଇ ॥

ବଳେ ନେଲା ମୋ ମାନସ ସାଥିକି ।
ପୁଣି ରତ୍ନୀଶ ପେଷିଣ ମାଣିକ ॥
ହସି ବୋଲଇ ଏକଇ ନାୟିକା ।
କାହ୍ନୁ ହୋଇବ ରତିରଣରଙ୍କା ॥
ଯୁବା ଯୁବତୀଙ୍କ ଦର୍ପ ଦଳିବ ।
ଦେଖି କୁଳବତୀ ବ୍ରତ ଛଳିବ ॥
ନେତ୍ରଅନ୍ତ ଗତିକରି କହଇ ।
ସଖି କୃଷ୍ଣ ଏମନ୍ତ ନୁହଇ ॥
ଅତି ଦାରୁଣ ଏ ଜାଣ ନାହିଁକି ।
କ୍ଷୀର ଖାଇ ସେ ମାଇଲା ଧାଈକି ॥
ହସି ନବପଲ୍ଲବମୀ ବୋଇଲା ।
କାମକଳା ଗୁଣ ଏବେ ବହିଲା ॥
ଛଳ ଛଇଲୀ ଚାତୁରୀ ଦେଖାଇ ।
କୁଳକୁମାରୀଙ୍କି କି କି ଶିଖାଇ ॥
ଯାହା ମାଗୁଁ ତାହା ସତେ ଜାଣୁ କି ।
ମିଛ ମିଛ କଥା କହ କଣୁକି ॥
କୃଷ୍ଣ ମନ୍ଦେ ହସି ବଙ୍କ ଅପାଙ୍ଗ ।
ସବୁ ଜାଣିବା ହେତୁ ତୁମ୍ଭ ସଙ୍ଗ ॥
ନ ଜାଣିଲେ ତୁମ୍ଭ ତହୁଁ ଜାଣିମା ।
ରସବତୀ ଗୁଣ ପରମାଣିମା ॥
ଶୁଣି ମନ୍ଦେ ହସି ଭଙ୍ଗେ ଅଳସ ।
ଢଣେ ଘନ ପୀନ କୁଚକଳସ ॥
ଶମ୍ଭୁ ଶିରେ ଯହୁଁ ଶଶୀ ଭୂଷଣ ।
ଏଣୁ ହେଉଅଛୁ ଏହୁ ଦୂଷଣ ॥
ପାଣିପଦ୍ମ ଲାଗି ବେଗେ କରଅ ।
କର କୋକନଦ ଛଳ ଧରଅ ॥
ନଖକ୍ଷତ-ଖଣ୍ଡଚନ୍ଦ୍ର ବିରାଜ ।
ଅବଲୋକେ କନ୍ଦର୍ପଦର୍ପ ଗଞ୍ଜ ॥
ମୋର ଭାଗ୍ୟବଳେ ହେଲା ଦର୍ଶନ ।
ଆଜ ହୋଇବ କି ମୋତେ ପ୍ରସନ୍ନ ।
ଶୁଣି ଗୋପୀ ମନ୍ଦ ହସି କହଇ ।
ସେବା କଲେ ଶମ୍ଭୁ ବର ଦିଅଇ ।
ଚଉ ଆଡ଼କୁ ଚାହିଁଣ ଚତୁରା ।
କର୍ଣ୍ଣମୂଳେ କହଇ ଧୀର କରି ।

କାହ୍ନା ସଙ୍ଗତେ ରଜନୀ ବଞ୍ଚୁଛି ।
ରସ ପୂର୍ଣ୍ଣ କରି ତ କି ସଞ୍ଚୁଛି ॥
କଥା କହନ୍ତେ ଚୁମ୍ବନ ହୋଇଲା ।
ନବ ବିକାର ମନେ ଉପୁଜିଲା ॥
ସ୍ୱପନରେ ବଞ୍ଚଇ ତୋର ସଙ୍ଗେ ।
ରସ ସଞ୍ଚଇ ନାନା କେଳି ରଙ୍ଗେ ॥
ଏହୁ ପ୍ରତ୍ୟକ୍ଷରେ ଆସି ହୁଅଇ ।
ଗୋପୀ ବୋଇଲା ସମସ୍ତ ନୁହଇଁ ॥
ଏକ ସୁନ୍ଦରୀ ପଥେ ହରି ଦେଖି ।
ପାଦ ନ ଚଳି ମିଛେ ଅଧୋମୁଖୀ ॥
କୃଷ୍ଣ କଟାକ୍ଷ ବିଶିଖ ବାଜିଲା ।
ଇସି ଇସି ବୋଲି ହାସ ଭଜିଲା ॥
ସଖୀ ବୋଲଇ ତୁ ମିଛେ ଛଟାଉ ।
କଣ୍ଟା ନ ମାଡ଼ିଣ ପାଦ ମେଣ୍ଟାଉ ॥
ସିନା କଣ୍ଟକ ଠାବେ ସେ ବଥାଇ ।
ନେତ୍ରବାଣେ ସର୍ବ ଅଙ୍ଗ ବଥାଇ ॥
ନନ୍ଦନନ୍ଦନ ମୃଗୟା କରଇ ॥
ଭୂରୁରୂପେ ନେତ୍ରଶର ପୂରଇ ॥
ମନ୍ଦ ଇଷତ ହାସରେ ସନ୍ଧଇ ।
ତନୁ ଫୁଟି ମର୍ମ ଖୋଜ ଭେଦଇ ॥
ଶୋଇ ଥାନ୍ତି ବେଣୁଗୀତ ସୁସ୍ୱରେ ।
ମୃଗ ଶୁଣି ରହେ ଛନ୍ନଦଶାରେ ।
ନାରୀ ବଧେ ନାହିଁ ତାର ବିଚାର ।
ତୁମ୍ଭେ ଆଉ କେଉଁ କଥା ପଚାର ॥
ବନେ ମୃଗୟା ବିହାର ଉଚିତ ।
କାମୀ କାମିନୀ ମାରଣକୁ ରତ ॥
ନଗ୍ରେ ଥିଲେଣ ବନ୍ଦେ ନ ରହିବେ ।
ମନ୍ଦେ ବସି ବଚନ ନ କହିବେ ॥
ନଟବର ବେଶରେ ବେଣୁଧାରୀ ।
ଦେଖି ଶୁଣି କି ମତି ଧରି ପାରି ॥
ଯୁବା ଯୁବତୀ ଇଚ୍ଛାକୁ ଦହଇ ।
ଯାହା ପାଇଲେ କାମ କି ରଖଇ ॥
ସଖି ଯାହା କହିଲୁ ଏ ଉଚିତ ।
ମତେ ସାହା ହେବ ଯେବେ କଞ୍ଚିତ ॥

ମୁଁ ମନସିଜ ମୋହ ଦେଖାଇବ ।
ପୁଷ୍ପବାଣ ଭୟ ଆଉ ନୋହିବ ॥
ଛବି ଛଇଳ ଗୃହାଣି ନଟକେ ।
ଚଳ ଚନ୍ଦ୍ରକାରେ ଚିତ୍ତ ଅଟକେ ॥
ପଛ ସଖୀ ମୁଖ ଚାହିଁ ପୁଛଇ ।
ସବୁ ଗୋପୀ ଆଖି ଲଖି ଅଛଇ ॥
ନେତ୍ରକମଳକୁ ନେତ୍ର ମୋ ଯାଉଛି ।
ସଙ୍ଗ କରିଣ ମନକୁ ନେଉଛି ॥
ରାଜା ବିହୁନେ ଅରକ୍ଷ କଟକ ।
ମାରଦଣ୍ଡ ଦାଣ୍ଡେ ନାହିଁ ଅଟକ ॥
ଖଣ୍ଡ କହ୍ନାଇ ପଡ଼ ଲୋଡ଼ ନେବ ।
ହେମ-କୁମ୍ଭ ଯଉବନ ଜୁରିବ ॥
କୃଷ୍ଣ ବୋଲନ୍ତି ତ ବଡ଼ ପୁରୁଣା ।
ଆଜ ଶାଶୁ କରୁଥିବେ ବୋଲଣା ॥
ଛନ୍ଦ କପଟ କିଛି ନ ଜାଣଇ ।
ବଡ଼ ଗଉଡ଼ଘର ଝିଅ ହୋଇ ॥
ଦୁଧେ ପାଣି କିମ୍ପାଇ ନ ମିଶାଉ ।
ଯାହା ମନ ମୋହ ଦହି ବସାଉ ॥
ଦେଖି ଗୋଟିକା ନିବେର୍ଣ୍ଣୀ ରସାଳ ।
ଜାଣି କେହି କରିବ ତାହା ମୂଲ୍ୟ ॥
ଗୋପୀ ବୋଲଇ ଯେ ଚିହ୍ନି ଜାଣିବ ।
ମନ ବଳ ଦେଇ ଧନ କିଣିବ ॥
ଏହି ନୁହଇ ଇତର ଜନକୁ ।
ଯେହ୍ନ ରୁଚଇ ମହନ୍ତମାନଙ୍କୁ ॥
ଏକ ବାଳୀ ଛଳାଇଲୁ ଅପାର ।
ସତ୍ୟ କଲୁ ଯାହା ରଖି ନ ପାର ॥
ନ ଚାହିଁବ ଚର ପରସ୍ତ୍ରୀଙ୍କ ।
ଆଜ ଚାହୁଁ ଅଛ ମୁଖ ନିରେଖି ॥

କୃଷ୍ଣ ବୋଲନ୍ତି ଚନ୍ଦ୍ରମା ଉଦିତେ ।
ମାଳତୀଫୁଲ ରହେ କି ମୁଦ୍ରିତେ ॥
ଚାହିଁ ଚକୋର ଚନ୍ଦ୍ରମା ମୂର୍ଚ୍ଛେ କି ।
ପଦ୍ମ ବିକାଶେ ଭ୍ରମର ଲେଛେ କି ॥
ଯତନରେ ହୋଇଥିବ ଦେଖାଇ ।
ଚୂର୍ଣ୍ଣ ମୃଗମଦ କୁଚେ ଲଗାଇ ॥
ଦେଖି ନିୟମ ରହିବ କାହାର ।
ତୁମ୍ଭ ଭୟେ ପାରୁଁ ନୋହୁ ବାହାର ॥
ବନେ ବାଛୁରି ଏକାକୀ ରଖିବା ।
ନଗ୍ରେ ତୁମ୍ଭମାନଙ୍କୁ ନ ଦେଖିବା ॥
ଗୋପୀ ବୋଲଇ କେ କିଛି ନେଲା କି ।
ଏବେ ଏକାନ୍ତକୁ ମନ ହେଲକି ॥
ତେବେ ଯମୁନା ଗାଧୋଇ ନ ଯିବା ।
ଗଲେ ଚିତ୍ତଛନ୍ନ ହୋଇ ହଜିବା ॥
କୃଷ୍ଣ ଚାହିଁ ଏକ ନବ କିଶୋରୀ ।
ଗଲା ମାରଗମାଳାକୁ ବିସୋରି ॥
ଉର ଆଉଁସି ବୋଲେ ସଖୀ ହାରି ।
ଛୁଡ଼ି ଅଇଲି ନ ପାଇବ ପରି ॥
ଏହିରୂପେ ନବୀନ ଅନୁଭବେ ।
ବ୍ରଜ କାମିନୀ କୃଷ୍ଣ ପ୍ରେମଭାବେ ॥
ଏକମେଳ ସମାଗମ ନିମନ୍ତେ ।
ନାନା ଉକତି ଯୁକ୍ତି ଇଙ୍ଗିତେ ॥
ବ୍ରଜବିହାର ଗୋବିନ୍ଦ ପ୍ରମୋଦେ ।
ଦାସ ଟ ବେ ସହସ୍ରଦଳ ପଦ୍ମେ ॥
ଗୁରୁଦେବ କୃଷ୍ଣଦାସ ଗୋସାଇଁ ।
ପାଦ ଆଶ୍ରେ ଏହି ରସ ବସାଇ ।
ଶୁଣି ସୁଜନେ ନ ଦେନ ମୋ ଦୋଷ ।
ଶ୍ରଦ୍ଧାମନେ କର୍ଣ୍ଣେ ପିଅ ପୀୟୂଷ ॥



# ଦ୍ୱିତୀୟ ବୋଲ

( 'ଲୀଳାସାଗର ବୋଲି' ବାଣୀରେ ଗାଇବ । )

ଜୟ ଯମୁନା ଜଗତନିସ୍ତାରଣୀ ।
ଭବଭୟ ହାରିଣୀ ଭକ୍ତବିସ୍ତାରଣୀ ॥
ଦୁଇ ତଟ କି ମୁକ୍ତା-ହାରାବଳୀ ।
ମହୀହ୍ରଦ ମଧେ ଶୋଭି ନୀଳମାଳୀ ॥
ନାନା ରତ୍ନାବଳୀ ତଟ ଚତୁଚୟ ।
ମଧେ ପୁଳିନ ପଦକ କମନୀୟ ॥
ଏହୁ ହାର ବାନ୍ଧି ମୋହେ ତିନିଲୋକ ।
ଯେଣୁ ଗୋବିନ୍ଦଚରଣ ଚିହ୍ନ ଅଙ୍କ ॥
ଶେଷ ଦେବ ଶିରେ ଧରି ପ୍ରମୋଦିତ ।
ରବି ଶଶୀକରେ କରି ଆଲିଙ୍ଗିତ ॥
ବୃଷ୍ଟି ଅମୃତ କରଇ ଶଚୀସାଇଁ ।
ସର୍ବ ଦେବେ ତୋଷ ରସେ ହେବାପାଇଁ ॥
ଧନ୍ୟ ଧନ୍ୟ ଏ ଅବନୀ ହ୍ରଦେ ବହେ ।
ରାଧା ଗୋବିନ୍ଦ ଯହିଁରେ ଅବଗାହେ ॥
ଅତି ନିର୍ମଳ ଶୀତଳ ସ୍ୱାଦୁ ଜଳ ।
ପୁଷ୍ପଗନ୍ଧେ ସଉରଭ ମନୋହର ॥
ମୁଖ ଧୋଇଲେ ଖାଇଲେ ପାପ ହରି ।
ଏଣୁ କୃଷ୍ଣଙ୍କୁ ପାଇଲେ ଗୋପନାରୀ ॥
କୃଷ୍ଣ ସ୍ୱରୂପେ ସଂସାରେ ନିସ୍ତାରଇ ।
ରାଧା ଗୋବିନ୍ଦ ବିଳାସ ବିସ୍ତାରଇ । ୧୦ ।
ନଳକୁବେର ନାରଦ କହେ ଯାହା ।
ଏକମନେ ସାଧୁଜନେ ଶୁଣ ତାହା ॥
ଧନପତିସୁତ ମୁନିପାଦେ ପଡ଼ି ।
ସ୍ତୁତି କହେ ବେନିକର ଶିରେ ଯୋଡ଼ି ॥
ଏଥି ଉତ୍ତରେ କେବଣ ଲୀଳାରସ ।
ବତ୍ସବାଳଖେଳରସେ ନନ୍ଦଶିଷ୍ୟ ॥
ହେତୁ ନୋହିଲା ସ୍ଥାବର ଦେହ ପାଇ ।
ନିଦ୍ରାଗତେ ପୁତ୍ତୁଡରେ ପ୍ରାପ୍ତ ହୋଇ ॥
ଏହା ସ୍ୱପନ ପରାୟେ ମଣୁଥିଲି ।
ଏବେ ତୁମ୍ଭ ତହୁଁ ଶୁଣି ହେତୁ କଲି ॥
କହ କହ ଦୟା ଯେବେ କଲ ମୋତେ ।
ପୁଣି ନମଇ ନାରଦ ପାଦଗତେ ॥
ଦେଖି ନାରଦ ପୁଲକ ତନୁ ହୋଇ ।
ଆନନ୍ଦରେ ନୟନରୁ ଲୁହ ବହି ॥
ବୋଲେ ପ୍ରସନ୍ନ ବଦନେ ତପୋବନ୍ତ ।
ବୃନ୍ଦାବନ ବିହାର ଏ ସୁଧାମତ ॥
ବତ୍ସ ରଖିଣ ମହିମା କଲେ ଯେତେ ।
ସ୍ଥିର ମନେ ଶୁଣ ତାହା କହୁଁ ତୋତେ ॥
କୃଷ୍ଣ କଂଶାର ବୟସେ କଲେ ଯାହା ।
ପୌର୍ଣ୍ଣମାସୀ ଭଗବତୀ ପାଇ ଯାହା । ୨୦ ।
ନିତି ବିନ ସେ ଯମୁନା ତୀରେ ତୀରେ ।
ଜଳ ବିହାର ପୁଳିନ କାନନରେ ॥
ଗୋପସୁତ ସେବି ଥାନ୍ତି ପଦେ ପଦେ ।
ପରିମଳ କୂଳ ବାଳି କୁନ୍ଦେ କୁନ୍ଦେ ॥
ଛାଇ ତଉସମ ତରୁ ମୂଳେ ମୂଳେ ।
ଫଳ ଓହୋଳି ଲାଗଇ ଡାଳେ ଡାଳେ ॥
ପୀଢ଼ି ବିଶ୍ରାମ ଶିକ୍‌କଣ ଠାବେ ଠାବେ ।
ଘାଟ ପାବଚ୍ଛ ବିବିଧ ଭାବେ ଭାବେ ॥
ଲତା ନିକୁଞ୍ଜ ମଞ୍ଜୁଳ ଲାଗେ ଲାଗେ ।
ଫଳ କୁସୁମେ ମଣ୍ଡିତ ଭାଗେ ଭାଗେ ॥
ପଦ୍ମ ଗନ୍ଧରେ ଲୁବୁଧ ମଧୁକରେ ।
ହଂସ ଚକ୍ରବାକ ନାନା ଜଳଚରେ ॥
ପ୍ରମୋଦିତ ଲାଗି କୃଷ୍ଣ ଅଙ୍ଗସଙ୍ଗ ।
ଶୁଣ ଯମୁନା ଜନମ ପୂର୍ବଭାଗ୍ୟ ॥
ପୂର୍ବେ ଅନେକ ଜନମେ ତପ କରି ।
କାଳେ ତପନ ବୀର୍ଯ୍ୟରେ ଅବତରି ॥
ଜ୍ୟେଷ୍ଠଭ୍ରାତା ଅଟଇ ସେ ଯମରାଜା ।
ସର୍ବ ସୁଲକ୍ଷଣୀ ରୂପେ ନାହିଁ ଦୁଜା ॥
କୃଷ୍ଣ ଚରଣ ଲଭିବା ମାନସରେ ।
ତପୀମାନଙ୍କର ମାର୍ଗ ଅନୁସରେ ॥

ସ୍ନାନ ସରିଣ କଳିନ୍ଦଗିରି ପଟରେ ।
ଧ୍ୟାନେ ବସିଲ ନିଶ୍ଚଳ ଆସନରେ ॥
ଏକଲୟ କରି ହୃଦ ଶୁଦ୍ଧଚିତ୍ତ ।
କୃଷ୍ଣ ରୂପକୁ ଭାବଇ ଅନ୍ତର୍ଗତେ ॥
ନବ ସଜଳଜଳଦ ତନୁ ଆଭା ।
ଚୂରୁ ଚିକ୍କଣ ନବୀନ ମୃଦୁ ଶୋଭା ॥
ପାଦତଳ କୋକନଦ ଉରୁ ରମ୍ଭା ।
କ୍ଷୀଣକଟୀ ପୀତପଟ ରବିପ୍ରଭା ॥
ଦାମ ମେଖଳା କିଙ୍କିଣୀ ମୋତି ସାର ।
ଉରେ ବନମାଳା କଉସ୍ତୁଭ ହାର ॥
କୁନ୍ଦବଦନ ଆଜାନୁ ବାହୁ ଲମ୍ବ ।
ରତ୍ନବଳୟ ମୁଦ୍ରିକା ମନୋରମ । ୩୬ ।
ହେମ ମାଳାରେ ପଦକ ଗୋଟି ଗୋଟି ।
ହୀର ମାଣିକ୍ୟ ଚୂନରେ ଯୋଡ଼ି କଣ୍ଠି ॥
ଅକଳଙ୍କ-ପୂର୍ଣ୍ଣସୁଧାକର ମୁଖ ।
ଧ୍ୟାନେ ଦେଖିଣ ଲଭଇ ମହାସୁଖ ॥
ଅତି ସୁରଙ୍ଗ ଅଧରେ ମନ୍ଦହାସ ।
ଖେଳେ ମକରକୁଣ୍ଡଳ ଗଣ୍ଡଦେଶ ॥
ଦନ୍ତପନ୍ତି ସିନ୍ଦୂରେ କି ଗଜମୋତି ।
ସଞ୍ଜ ନାସା ନେତ୍ର ପଦ୍ମ ଭୁରୁପନ୍ତି ॥
ସୋମ ଭାଲରେ ତିଳକ ଗୋରଚନା ।
ଧ୍ୟାନେ ଧରିଣ ଭାବଇ ସୁଲୋଚନା ॥
ଘନକୁନ୍ତଳ ଅଳକା କପୋଳରେ ।
ନାନା ରତ୍ନମୟ ମଣି ମୁକୁଟରେ ॥
ଚୂରୁ ଚିକୁର ଚୂଳରେ ପୁଷ୍ପଗଭା ।
ଅତି ସୁନ୍ଦର ଆଗ ପଛକୁ ଶୋଭା ॥
ଦିବ୍ୟଚକ୍ଷୁରେ ଏ ରୂପ ଧ୍ୟାୟେ ଦେଖି ।
ଅତି ଯତ୍ନ କରି ହୃଦ ପଦ୍ମେ ରଖି ॥
କୃଷ୍ଣ ଭାବେ ମନ ବୁଦ୍ଧି ମଜାଇଲେ ।
ଯେତେ ବିଷୟ ଚେତନା ହଜାଇଲେ ॥
ତଦାକାରେ ପ୍ରେମେ ଦ୍ରବୀଭୂତ ହୁଏ ।
ନଦୀ ହୋଇଣ ଅବନୀ ମଧ୍ୟେ ବହେ ॥
କୃଷ୍ଣ କାନ୍ତି ଏ ନିର୍ମଳ ଜଳ ଜ୍ୟୋତି ।
ଅଙ୍ଗ ଭଙ୍ଗି ତରଙ୍ଗିତ ଶୋଭା ଅତି ॥
ସ୍ରୋତପ୍ରବାହ ଗମନ ଲୀଳା ରସ ।
ନାଭି ଭଉଁରୀ ଗମ୍ଭୀର ହ୍ରଦଦେଶ ॥
ପଦକର ପୟୋଧର କୋକନଦ ।
ବାହୁ ମୃଣାଳ ମଞ୍ଜୁଳ ମୁଖ ପଦ୍ମ ॥
ହାସ୍ୟ-କୁମୁଦ ନୟନ-ନୀଳୋତ୍ପଳ ।
ଭୁରୁ ଅଳକା ଶ୍ରେଣୀ ଏ ଭୃଙ୍ଗମାଳ ॥
ଜଙ୍ଘ ଯୁଗଳ ପୁଳିନ ବେନି ଧାର ।
ହୃଦ ଉଦର ତଟ ଏ ବନମାଳ ॥
ପୁଷ୍ପରଜ ନିକର ଏ ପୀତପଟ ।
ହଂସପନ୍ତି ମୋତିହାର ଉର ତଟ ॥
ଅହର୍ନିଶ ମଣିପନ୍ତି ପ୍ରତିବିମ୍ବ ।
ନାନାପୁଷ୍ପ ସଉରଭ ମନୋରମ ॥
ସାଧୁ ସବନ ଅଧରାମୃତ ଜାଣି ।
ମତ୍ସ୍ୟ କଚ୍ଛପାଦ୍ୟ ଅବତାର ଶ୍ରେଣୀ ॥
ଅତି ନିର୍ମଳ ଶୀତଳ ଜଳ କାନ୍ତି ।
ଏଣୁ ସର୍ବ ଚିତ୍ତ ଆକର୍ଷଣ ପ୍ରୀତି ॥
କୃଷ୍ଣ ଅନୁଭାବେ କୃଷ୍ଣ ଚିହ୍ନ ବହେ ।
ତେଣୁ ହରି ଯମୁନା ଏ ଭେଦ ନୁହେ ॥
ଯେଣୁ ବୃନ୍ଦାବନେ ହରି ସଦା ସ୍ଥିତ ।
ନାନା ବିଳାସେ ବିହରେ ଅନୁବ୍ରତ ॥
ଅଭିସାରିକା ଯମୁନା ପ୍ରଦକ୍ଷିଣେ ।
କୃଷ୍ଣ ପାଦେ ଅଭିଷେକ ଅନୁକ୍ଷଣେ ॥
ଏକଦିନେ ନନ୍ଦପୁରେ ବନମାଳୀ ।
କହେ ଜନକଜନନୀ ପାଶେ ମିଳି ॥
ଆମ୍ଭ ଗୋଧନ ନୋହିଲେ ବର୍ଦ୍ଧମାନ ।
ଅତି ଉଦ୍ଦଣ୍ଡ ହୋଇଲେ କ୍ଷୀରହୀନ । ୬୦
ବତ୍ସ ନ ପିଆନ୍ତି ଭଲେ ନ ଦୁହାନ୍ତି ।
ଖଣ୍ଟପଣ କରି ମାରି ବଲଆନ୍ତି ॥
ଛନ୍ଦା ନ ହୋଇ ବାଛୁରୀ ନ ପିଆଇ ।
ବନ୍ଧ ଗୋଡ଼ାଇ ପଳାଇ ଖେପିଆଇ ॥
ଭାଙ୍ଗେ ଦୁହୁଁଣ ଦୁହିଁଲା କ୍ଷୀରଭାଣ୍ଡ ।
ଶୃଙ୍ଗଖୁରାଘାତେ ମହୀ ଖଣ୍ଡଖଣ୍ଡ ॥
ଭୟେ ରଖୁଆଳ ପାଶେ ନ ପଶନ୍ତି ।
ଅତି ଅବାରଣ ହୋଇ ନ ଚରନ୍ତି ॥

ମେଳ ହେଳ ଗୋଠା ଗୋଠା ଏଣେ ତେଣେ ।
ଇଚ୍ଛା ମତେ ରଖୁଆଳ ଜଣେ ଶେଜ ॥
ପରଯୂଥ କଷ୍ଟ ଦେହ ଗଞ୍ଜାଇବ ।
ଏଣେ ତେଣେ ଗଲେ କଷ୍ଟ ଭଙ୍ଗାଇବ ॥
ଯେଉଁମାନଙ୍କ ଅଳପ ଅଛି ଗାଈ ।
ଦୁଧ ଦୁହିଁଲେ ତାଙ୍କର ନ ସରଇ ॥
ତିନିବେଳ କରଇ ସେ ଦୁହାଁ ନିତି ।
ଭଲେ ଆମ୍ଭ ଗାଈ ବେଳେ ନ ଦୁହାଁନ୍ତି ॥
ଯେଉଁ ଗଉଡ଼ ସଞ୍ଜୁଆ ନ ଦୁହଁଇ ।
ଯେତେ ଗାଈ ଥିଲେ ଅନ୍ନ ନ ମିଳଇ ॥
ଆମ୍ଭ ବାଛୁରି ଚରନ୍ତି ଗାଈ ମେଳେ ।
କପାଁ ଦୁହାଁଇବେ ଭଲେ ଆର ବେଳେ ॥
ଆପେ ନ ଥିଲେ ହୁଏ କି ଧନ ରକ୍ଷା ।
ଯେବେ ଆଜ୍ଞା ଦେବ ଆମ୍ଭେ ରଖୁଁ ବଛା ॥
ସବୁ ବାଳକ ରଖନ୍ତି ବଛା ରଙ୍ଗେ ।
ଦୁଇ ଭାଇ ରଖିଥିବୁଁ ତାଙ୍କ ସଙ୍ଗେ ॥
ଗ୍ରାମ ପାଖେ ବଛା ରଖି ଜଗାଜଗି ।
ଛଡ଼ାଛଡ଼ି ନୋହି ଥିବୁଁ ଲଗାଲଗି ॥
ଆମ୍ଭେ ଥାଉଁ ବୃଦ୍ଧ କାଳେ ଦୁଃଖ ପାଉ ।
ପୁତ୍ର ଜାତ କଲର କି ହେଲା ଆଉ ॥
ବଛା ମେଲାଇ ଦୁହାଁକୁ ଆଗୁସାର ।
ଗୋଷ୍ଠ ଚରନ୍ତୁ ଏ କାଳେ ବଳିଆର ॥
ଶୀତକାଳେ ହେଉଥାଉ ଥର ଥର ।
ବରଷାରେ ତନୁବାସ ଜର ଜର ॥
ନିଦାଘରେ ଶ୍ରମ ଝାଳେ ଭ୍ରମି ହେଉ ।
ବୃଦ୍ଧ ଅବସ୍ଥାରେ ଏତେ ଦୁଃଖ ପାଉ ॥
ପୁତ୍ର ଜାତ କରି ସୁଖ ନ ଭୁଞ୍ଜିଲୁ ।
ଆମ୍ଭ ଧେନ ତୁ ଅଧିକେ ଗଞ୍ଜି ହେଲୁ ॥
ତୋର ନିଶ୍ଚିନ୍ତେ ନ ହେଲୁଁ ସାମରଥ ।
ଧିକ ଧିକ ହେଉ ଆମ୍ଭ ପୁରୁଷାର୍ଥ ॥
ପିତା ଦୁଃଖେ ଦୁଃଖୀ ନୋହେ ଯେଉଁ ସୁତ ।
ଆଜ୍ଞା ନ ମାନି କରଇ ଇଚ୍ଛା ମତ । ୮୦ ।
ସେବା ନ କରି ହୁଅଇ ଫୁଲିପଣେ ।
ଡକା ଗୁହାରି କରନ୍ତି ଜଣେ ଜଣେ ॥
ଘରଧନ ପରେ କରି ନାରଖାର ।
ଜାଣି ତିଆରନ୍ତି ରୁଷି ଆଗୁସାର ॥
ପିତା ଦୁଃଖେ ଅଜ ପୁତ୍ର ପ୍ରଭୁପଣ ।
ଏହୁ ପୁତ୍ରଙ୍କ ଜୀବନ ଅକାରଣ ॥
ନିଜବୃତ୍ତି ଜୀବିକାକୁ ନ ପାରଇ ।
କୁଳ ଅଧମ ବୋଲିଣ ତାକୁ କହି ॥
ପିତା ଥାଇ ପୁତ୍ରେ ଯେବେ ନ ଶିଖାଇ ।
ସେହୁ ପୁତ୍ର ପଛନ୍ତରେ ଦୁଃଖ ପାଇ ॥
ତୁ ବା ବୋଲିବୁ ଆମ୍ଭର ଧନ ଅଛି ।
କଷ୍ଟ ଦୁଃଖ ଦେବ ମୋର ଏକାବଞ୍ଛି ॥
ମୋର ଥିବାଯାଏ ସୁଖେ ଥାଉକନା ।
ଏହି ବଂଶରେ ଅଧମ ହେବୁଁ ସିନା ॥
କୋଟି ଧନ ସମ୍ପତ୍ତି ଏ ପ୍ରଭୁପଣ ।
କିଛି ନୁହଇ ନ ଥିଲେ ନିଜଗୁଣ ॥
ଆଜଯାଏ ନ ଜାଣିଲୁ ଦୁହିଁ ବାନ୍ଧି ।
ଗାଈ ଗୋଡ଼ାନ୍ତି ଅଶ୍ରଦ୍ଧା ଦେଖି ବନ୍ଧ ॥
ଆମ୍ଭ ତହୁଁ ଯେଉଁମାନେ ସାନ ସାନ ।
ଗୋଦୋହନ ବିଦ୍ୟାରେ ସେ ବିଦ୍ୟମାନ ॥ ୯୦ ।
ଯେତେ ହୋଇଲେ ଗଉଡ଼ ଜାତି ଆମ୍ଭେ ।
ରାଜା ହେଲ କି ଜୀବିକା ଛାଡ଼ି ତୁମ୍ଭେ ॥
ବାଳକାଳୁଁ ନ ଜାଣିଲେ ପଛେ ନୁହେ ।
ବତ୍ସ ରଖୁଛନ୍ତି ଦେଖ ସବୁ ପୁଏ ॥
ଗ୍ରାମେ ଖେଳିବାକୁ ସଙ୍ଗ ନ ମିଳଇ ।
ବତ୍ସ ଚରାଇ ଆଣିବୁଁ ଦୁଇଭାଇ ॥
ଶୁଣି ନନ୍ଦ କୁମରର ସାଧୁବାଣୀ ।
ମୁଖେ ଚୁମ୍ବ ଦେଇ ହୃଦେ ଭିଡ଼େ ଆଣି ॥
ଅଶ୍ରୁ ନୟନେ କହଇ ଗଦଗଦେ ।
ତୋତେ ଅରିଷ୍ଟି ପଡ଼ଇ ପଦେ ପଦେ ॥
ମୋର ନୟନ ପ୍ରତିମା ଦୁଇଗୋଟି ।
କ୍ଷଣେ ନ ଦେଖି ନୟନ ଯିବ ଫୁଟି ॥
ତୋତେ ବନେ ପେଷି ପୁରେ ଥିବି ରହି ।
ଦିନ ବଞ୍ଚିବି ପିଣ୍ଡେ କି ପ୍ରାଣ ବହି ॥
ଦିନେ ମଥୁରା ନ ରହେ ବାସି ଥକା ।
ଯେଣେ ଗଲେ ଥାଇ ଏକା ତୋର ଦକା ॥

ଖାତ ଶଢ଼ା ରଖିଆଳ ଛନ୍ତି ଯେବେ ।
ତୁମ୍ଭେ ବତ୍ସ ରଖିଲେ କି ପୋଷି ହେବ ॥
ଶୁଣି ଯଶୋଦା ବୋଲନ୍ତି ଆରେ କହ୍ନା ।
ପିତା ଆଗେ କି କହୁଛୁ ମୋତେ ଅନା । ୧୦୦ ।
ଅନବାରଣ ପଶନ୍ତି ବାଛି ବାଛି ।
ବନେ ବୁଲିବାକୁ ଏତେ କଥା ଫାନ୍ଦି ॥
ହାତୁଁ ଫିଟିଲେ ଗୋପରେ ପଡ଼େ ଡକା ।
ଅନୁବ୍ରତେ ମୋତେ ତୋର ଚିନ୍ତା ଏକା ॥
ମହା ଅରିଷ୍ଟି ପଡ଼ଇ ଦେଖି ଦେଖି ।
ପ୍ରତେ ନାହିଁ ତୋତେ କୋଳେ ରଖି ରଖି ॥
ଅକାଳରେ ଦଣ୍ଡ ପଡ଼େ କାହୁଁ କାହୁଁ ।
ଦେହ ବୁଦ୍ଧି ଜ୍ଞାନ ହଜେ ଗୃହୁଁ ଗୃହୁଁ ॥
ଗାଈ ଗୋରସ ଆମ୍ଭର ନୋହୁ ନୋହୁ ।
ଗାଈ ସଙ୍ଗେ ବତ୍ସ ଫିଇ ଯାଉ ଯାଉ ॥
ଏବେ ଉପାୟ ଗୋଟିଏ ଗଢ଼ିଅଛି ।
ଶୁଣି ପିଣ୍ଡରୁ ପରାଣ ଛୁଡ଼ିଅଛି ॥
ଭଲେ ଜାଣିଲୁଣିକି ତୁ ଅଳପ ଭୁଞ୍ଜି ।
ବତ୍ସ ରଖିବାକୁ ହେଉଅଛୁ ଗଞ୍ଜି ॥
କ୍ଷଣେ ଖେଳ ଫିଟି ହେଉ ଦୁଃଖଭାଗୀ ।
ଟଗଣିଉଳା କୁସୁମ ଖରାଲାଗି ॥
ନୁହେ ମାଗଣା ଗୋଧନ ଚରାଇବା ।
ଖଦା ବୋଲଣା ନ କର ଚଳାଇବା ॥
ଖାଲ ଖଣା ଖୁଣ୍ଟ କଣ୍ଟା ଗଛେ ଗଛେ ।
ଥିବ ଅଳସ ନ କର ପଛେ ପଛେ । ୧୧୦ ।
ଭଲ ମନ୍ଦ ସ୍ଥାନ ବୋଲି ନ ଗଣିବ ।
ଭୋକ ଶୋଷ ଦୁଇ କଥା ନ ମଣିବ ॥
ଅତି କଷ୍ଟରେ ହୁଅଇ ବତ୍ସ ରଖି ।
ତୁ ତ ଅତି ସୁକୁମାର ମୋର ଆଖି ॥
କେମନ୍ତେ ବୋଲୁ ରଖିବି ମୁଁ ବତ୍ସ ସୁଖେ ।
ଅନ୍ଧ ହୋଇ ବସିଥିବି ଅତି ଦୁଃଖେ ॥
କୃଷ୍ଣ ବୋଲନ୍ତି ହେ-ମାତ ! ଶୁଣ କଥା ।
ହିତ ନ ଜାଣି ପାଅ ତ ମନେ ବ୍ୟଥା ॥
ପିତା ମାତା ପୁତ୍ରଙ୍କୁ ସେ ଶିଖାବନ୍ତି ।
ନିଜ ବୃତ୍ତିକୁ ମଣାଇଁ ଦେଖାବନ୍ତି ॥

ତୁମ୍ଭ ତହୁଁ ଶୁଣି ଏବେ ବିପରୀତେ ।
ଆମ୍ଭେ ଅଙ୍ଗୀକାରେ ହେବୁଁ ଯେଉଁ ମତେ ॥
ତୁମ୍ଭେ ବୋଲିବ କେ ମୋତେ ଅଛି ବଡ଼ ।
ନିତି ଦେଉଅଛି ସୁନା ଶତେ ମାଡ଼ ॥
ଦୁଧ ବହୁତ ହେବାର କେତେ ସ୍ଥିର ।
ବତ୍ସ ରଖିବେ କୁମରେ କିପା ମୋର ॥
ସବୁ ଜାତିକି ବିଧାତା ସରଜିଲା ।
ଯେହୁ ଯାହାର ଜୀବିକା ନିଯୋଜିଲା ॥
ବିପ୍ରପୁତ୍ର ଥିବ ନିତି ଷଟ୍‌କର୍ମେ ।
କ୍ଷତ୍ରିପୁତ୍ର ମଣ୍ଡି ପାଳି ରଣଧର୍ମେ ॥
ବୈଶ୍ୟ ବାଣିଜ୍ୟ ବିଧିୟେ ଗୋରକ୍ଷଣେ ।
ଶୂଦ୍ର ସେବା କରିବ ଏ ତ୍ରୟ ବର୍ଣ୍ଣେ ॥
ଉପଜାତିକି ରଚିଲ ଅନୁକ୍ରମେ ।
ବୃତ୍ତି ନ ଛାଡ଼ିଣ ଥିବ ଯେଝା ଧର୍ମେ ॥
ନିଜ ବୃତ୍ତିକୁ ସଙ୍କୋଚ ଯେହୁ ପାଏ ।
ଅନ୍ୟ ବୃତ୍ତି କରି କର୍ମେ ବଡ଼ ହୁଏ ॥
ବର୍ଣ୍ଣସଙ୍କର ହୁଅନ୍ତି ସେହୁ ଲୋକେ ।
ପିଣ୍ଡ ନପାଇ ପିତାଏ ପଡ଼ ନର୍କେ ॥
କାଳେ ସେହି ଲୋକମାନେ ଦୁଃଖ ପାଇ ।
ଯାନ ବଚନ ମୋହର ଶୁଣ ଆଈ ॥
ଯାହା ଅରିଷ୍ଟି ପଡ଼ୁଛି ବେଳେ ବେଳେ ।
ହାତ ଦେଇ କି ରଖିବା କାଳେ କାଳେ ॥
ଭାଗ୍ୟ ଥିବାଯାଏ କେହୁ ଘୁଞ୍ଚାଇବ ।
କାଳ ହେଲେ କେହୁ କ୍ଷଣେ ବଞ୍ଚାଇବ ॥
ଯାହା ଅସକାଢ଼ ମନେ ହେଉ ଥାଅ ।
ବ୍ୟର୍ଥରେ ଖେଦ ଚିନ୍ତା ମନେ ପାଅ ॥
ଭାଲେ ଲାହିଲି ଅବଶ୍ୟ ହୁଏ ହୁଏ ।
ବ୍ୟାସ ସଙ୍ଗବରେ ଥିଲେ ଆନ ନୁହେ ॥
ମାତା ବୋଲନ୍ତି ତୋ କଥା ନ ଯୋଗାଇ ।
ମାତା ପିତା ବୋଲ ପୁତ୍ର ନ ଭାଙ୍ଗଇ । ୧୩୦
ଯେତେ ଲାଭ ହେବ ନୋହୁ ବତ୍ସ ରଖା ।
ତୋତେ ଘେନିଣ ମାଗିବି ନଗ୍ରେ ଭିକ୍ଷା ॥
ଜାଣୁ ଜାଣୁ ନୟନ କି ଖୋଲି ଦେଇ ।
ଦେଖୁଁ ଦେଖୁଁ ଆପଣେ କି ବିଷ ଖାଇ ॥

ଅନ୍ଧକୂପ ଭିତରେ କି ଡେଇଁ ପଡ଼ି ।
ଯତନରେ ଅନଳ କି ପାଦେ ମାଡ଼ି ॥
ହସ୍ତଧନ ଫିଙ୍ଗି ଦେବା ମହାଜଳେ ।
ଆଉ ଲୋଡ଼ିଲେ ପାଇକ ଆର କେବେ ॥
ଲୋଡ଼ା ନାହିଁ ମୋର ଧନ ବଡ଼ ପଣେ ।
ପୁରେ ବସିଥାଅ ପଛେ ଅକାରଣେ ॥
ଦୁଃଖେ ପଡ଼ି ଘରେ ଘରେ ଦହି ମୋହିଁ ।
ପୋଧୁଥିବ ଯେତେଦିନ ଥିବ ମୁହିଁ ॥
ନେତ୍ର ପଲକ ବିଚ୍ଛେଦ ନ ସହଇ ।
ମୋର ଅନ୍ତେ ଯାଅ ପଛେ ତହିଁ ଯହିଁ ॥
ଶୁଣି ମାତାଙ୍କ ବଚନ ଶ୍ରବଣରେ ।
ପୌର୍ଣ୍ଣମାସୀଙ୍କି ଅନାଇ ଇଙ୍ଗିତରେ ॥
କୃଷ୍ଣ ମନ ଜାଣି କହେ ପୌର୍ଣ୍ଣମାସୀ ।
ନନ୍ଦ ଯଶୋଦା ଗୋବିନ୍ଦ ପରଶଂସି ॥
ଧନ୍ୟ ଧନ୍ୟ ମାତା ପିତା ଧନ୍ୟ ପୁତ୍ର ।
ରକ୍ଷା ହୋଇଲା ଗୋକୁଳ ବ୍ରଜଗୋତ୍ର ॥
ତୁ ଯେ ଅପ୍ରତେ କରୁ ମୋ ଏକାବଛୁ ।
ସ୍ୱୟଂ ଈଶ୍ୱର ଯାହାକୁ ରଖିଅଛୁ ॥
ମନ୍ଦ ଶାନ୍ତ ତେଜେ ତେଜେ ବୀର ମଲେ ।
ଜାଣି ପାରିଲ କି କେହ୍ନେ ନାଶ ଗଲେ ॥
ଯହିଁ ତହିଁ ପୁତ୍ରକୁ ତୋ ଭୟ ନାହିଁ ।
ଏହା ଘେନ ଭାବ ନାଶ ହେବ ମହୀ ॥
ମୋର ମନକୁ ଏମନ୍ତ ଆସୁଅଛୁ ।
ମହା ଅରିଷ୍ଟି ନାଶିବ ତୋର ବଛୁ ॥
ବଳେ ନୋହିବେ କେ କାହିଁ ସମସରି ।
ବ୍ରହ୍ମା ସୁର ଶିବ ଯାକୁ ସେବା କରି ॥
ବନବିହାରେ ମହିମା ପ୍ରକାଶିବ ।
ରଘୁନାଥ ପ୍ରାୟେ ତେଜ ବିକାଶିବ ॥
ବୃନ୍ଦାଦେବୀ ଥିବେ ପଦେ ପଦେ ଜଗି ।
ଅଙ୍ଗ ଆରୋଗ୍ୟ ଔଷଧ ତରୁ ଲାଗି ॥
ଯେବେ ଶରଧା କରିଛୁ ରଖି ବଛା ।
ଜଗଦ୍ଧାତ୍ରୀ ଯୋଗମାୟା କରୁ ରକ୍ଷା ॥
ନାନ୍ଦୀମୁଖୀ ବୀର ଏହି ବାଣୀ ଭଣି ।
କୃଷ୍ଣ ବଳ ପ୍ରାକ୍ରମ କେ ପାରେ ଜାଣି ॥
ଜଳ ସ୍ଥଳ ଅନଳରେ ଭୟ ନାହିଁ ।
ଆମ୍ଭ କଥା ଗଣ୍ଠି କରି ଥାଅ ଥୋଇ । ୧୫୦ ।
ଦେବ ଦାନବ ମାନବେ ଅପଚୟେ ।
ନାହିଁ ନାହିଁ ତତ୍ତ୍ୱ ଏହୁ କୃଷ୍ଣ ମାୟେ ।
ଯେତେ କରିଲେ ଯଶୋଦା ପ୍ରତେ ନାହିଁ ।
ଭୟେ ଥରଇ ମୋ କରେ ଘୁଣ୍ଟ ଘୁହିଁ ॥
କୋକ ବୋଇଲେ ଗଲା ମୋ ନ ଘୁଡ଼ଇ ।
ଆଖି ବୁଜଣି ପଣନ୍ତ ଉହାଡ଼ଇ ॥
ଘୁଣ୍ଟ ଉଞ୍ଚାଇ ଚହଲେ ଦନ୍ତ ଘୃପି ।
ଭୟେ ଛନ୍ନ ହୋଇ କାନ୍ଥ ବାଡ଼େ ଛପି ॥
ଯେବେ ଦୋଷ କରେ ସାହି ପଡ଼ିଶାରେ ।
ତେବେ ନ ଆସଇ ଘରେ ମୋର ଡରେ ॥
ଖେଳ ଗୋଳେ ପୋଏ ହୋଇ ମରାମରି ।
ମାରି ନ ପାରି ଗୁହାରି ମୋତେ କରି ॥
କଥା କହିଲେ ଲାଗଇ ଜନଠାଏ ।
ଖାଇ ଆଚଞ୍ଚାଇ ନ ଜାଣେ ଯେଉଁ ପୋଏ ।
ବନେ ବନେ ବୁଲୁଥିବ ବତ୍ସ ରଖି ।
ଦେହ ଧରିବ କେମନ୍ତେ ଦୁଃଖ ଦେଖି ॥
ତୁମ୍ଭ ଜୀବଦାନ ଦେଲୁ ବାଳବଛୁ ।
ଏହା ପରେ ପଣ ମୋର ନାହିଁ କଛୁ ॥
ବତ୍ସ ରଖିବା ତୁମ୍ଭକୁ ଯୋଗାଇଲେ ।
କଷ ହୋଇବ ମୋହର ଭଙ୍ଗାଇଲେ ॥
ଯହିଁ ରହିଥିଲେ ତୁମ୍ଭେ ପ୍ରତିପାଳ ।
ମିଛେ ବୋଲୁଥାଇ ସିନା ମୋର ବାଳ ।
ଏତେ ବୋଲି ପୁତ୍ର ପାଦେ ପକାଇଲେ ।
ଧୂଳି ଶିରେ ବୋଳି ଲୁହ ଥକାଇଲେ ॥
ମାତା ପିତା ସନମତେ ଆଗୁସାର ।
ପୌର୍ଣ୍ଣମାସୀଙ୍କି କରିଣ ନମସ୍କାର ॥
ଦେବୀ ବୋଲନ୍ତି ଏବେ ତ ସବୁ ହୋଇ ।
ଗୋବର୍ଦ୍ଧନ ମଲ୍ଲରାଜା ମହାଶୋଇ ॥
ଲେଖାଲେଖିରେ ସେ ହେବ ତୁମ୍ଭ ଭାଇ ।
ଗୋଚରଣ ଶାସ୍ତ୍ର ତାଙ୍କୁ ପୁଚ୍ଛ ଯାଇ ॥
କଂସ ରାଜାକୁ ନ ଥିବ ଭୟ ଏଣେ ।
ଲଭ ଗୋବିଦ୍ୟା ପ୍ରାପତ ହେବ ତେଣେ ।

ନନ୍ଦ ଯଶୋଦା ଶୁଣିଣ ତୋଷମନ ।
କୃଷ୍ଣ ପୌର୍ଣ୍ଣମାସୀ ବୋଲେ ଆଗମନ ॥
ଗୋବର୍ଦ୍ଧନ ମଲ୍ଲ ପୁରେ ବ୍ରଜେ ଯାଇ ।
ଦେଖି ବହୁତ ଆନନ୍ଦ ମହାହୋଇ ॥
କୋଳ କରିଣ ପାଛୋଟି ନେଇଗଲେ ।
ନିଜପୁରରେ ସଭଙ୍କୁ ବସାଇଲେ ॥
ସ୍ନାନ ସୁବେଶ ଭୋଜନ ନେଇ ସଙ୍ଗେ ।
ମାତା ଭେରୁଣ୍ଡା ପରଷେ ନାନାରଙ୍ଗେ ॥
ପୁଷ୍ପ ଚନ୍ଦନ ତାମ୍ବୁଳ ଉପହାର ।
ପୂଜେ ବାନ୍ଧବ ବେଷ୍ଟେ ଶରଧାରେ ॥
ସଙ୍ଗ ପୁଏ ଗଉରବେ ପୂଜାପାଇ ।
କୃଷ୍ଣ ନୂଆ ନୂଆ ଦେଖି ଲାଜପାଇ ॥
ଆଡ଼ ଉହାଡ଼ରେ ଲୁଚି ଚନ୍ଦ୍ରାବଳୀ ।
କୃଷ୍ଣ ରୂପକୁ ନିରେଖି ମନ ବଳି ॥
କିଏ ମର୍କତ ପ୍ରତିମା ରଚନରେ ।
ଜୀବନ୍ୟାସ ହୋଇଅଛି ଯତନରେ ॥
ଅଙ୍ଗ ଦେଖାଇ ଲୋଡ଼ାଇ ଇଚ୍ଛାମତେ ।
ଦୃଷ୍ଟି ପଥେ କରା ସଖୀ ଅନୁମତେ ॥
ହାଇ ମାରିଣ ଅଳସ ଅଙ୍ଗ ମୋଡ଼ି ।
ଊର୍ଦ୍ଧ୍ୱ ବାହୁତୋଳି କରେ କର ଭିଡ଼ି ॥
ଚଉ ଚଞ୍ଚଳେ ଲୋଚନ ଝଲସଇ ।
ଭୁରୁ ଜାଡ଼ବହ୍ନି ଉର ଉଲୁସଇ ॥
ଫୁଲଶର ଭେଦେ ତନୁ ତରଳିତ ।
ଦମ ଦମ ହୁଅଇ ମାନ ବିଗଳିତ ॥
ଲଜ୍ଜା ଆଚ୍ଛାଦି ଧଇର୍ଯ୍ୟ ଧୃତି ଧରେ ।
ବେଳୁଁ ବେଳୁଁ ମନ ଅତି ବଳିଆରେ ॥
କୃଷ୍ଣ ବିଷୟ ଶୁଣଇଁ ପରମାଣି ।
ପଦ୍ମା ଶୈବ୍ୟା କେବଳ ତା ଗତି ଜାଣି ॥
ଏହି ସମୟେ ମିଳିଲେ ପୌର୍ଣ୍ଣମାସୀ ।
ଗୋବର୍ଦ୍ଧନ ମଲ୍ଲ ନେଇଗଲେ ଆସି ॥
ପାଦପଖାଳି ଆସନେ ବସାଇଲେ ।
ଆଣି ଲେଖା ପରିହାସେ ରଖାଇଲେ ॥
ଦେବୀ ନାନା କଉତୁକ କଥା କହି ।
ଚନ୍ଦ୍ରାବଳୀ ପ୍ରିୟବନ୍ଧୁ ତୋର କାହିଁ ॥

ନନ୍ଦରାଜା ବୃଦ୍ଧକାଳେ ଏକା ବାଛି ।
ଶ୍ରଦ୍ଧା କରି ଭାଇଘର ଆସିଅଛି ॥
ପରପ୍ରାପ୍ତ ବାଳକକୁ ଆଡ଼ ଆଡ଼ ।
ଏଥିଁ ପଉରୁଷ ତୁମ୍ଭ ଅଛି ବଡ଼ ॥
ମଲ୍ଲ ବୋଲେ ତୁମ୍ଭ ନାତୁଣୀକି କହ ।
ଏଣୁ ତେଣୁ ଆସିଛି କି କାହା ପୁଅ ॥
ଯାକୁ ଲୋଡ଼ିଲେ ନ ପାଇ ଯତନରେ ।
ଯୋଗେ ଆସିଅଛି ଭାଗ୍ୟେ ଆମ୍ଭ ପୁରେ ॥
ବୋଲ ଅର୍ଘ୍ୟସ୍ଥାଳୀ ନେଇ ବେଗେ ଆସୁ ।
ପାଦେ ଅର୍ଘ୍ୟ ଦେଇ ଭାଇ ଚିତ୍ତ ତୋଷୁ ॥
ଶୁଣି ଦେବୀ ବୋଲନ୍ତି ଗୋ ଚନ୍ଦ୍ରାବଳି ।
କାନ୍ତ ବୋଲେ ନେଇ ଆସ ଅର୍ଘ୍ୟସ୍ଥାଳୀ ॥
ଶୁଣି ଚନ୍ଦ୍ରାବଳୀ ଲାଜ ଲାଜ ପାଇ ।
ପୌର୍ଣ୍ଣମାସୀ ଚରଣରେ ଓଳଗଇ ॥
ଦେବୀ ଶୁଭ ଚିନ୍ତି ଶିରେ କର ଦେଇ ।
ମନେ ମନାଶିଲେ ବର ପାଅ ତୁମ୍ଭ ॥
ନଦୀ ନୁଆଁଣିକୁ ଯେହ୍ନେ ବହେ ବେଗ ॥
ଅଗ୍ନି ଯେସନେ ପବନ ସାହା ଯୋଗେ ।
ଅନ୍ତ ମନ୍ଥର ଗମନ ଧୀରେ ଧୀରେ ।
ଉପରୁର ଅର୍ଘ୍ୟସ୍ଥାଳୀ ସଖୀ କରେ ॥
ଅର୍ଘ୍ୟ ଦେଇଣ ଆଳତି ନିଉଞ୍ଛାଇ ।
ଛନ୍ନ ନିଷ୍ଟଳଲୋଚନ ନ ପିଞ୍ଛଇ ॥
ନେହ-ଫଳବାଣ ଭେଦ ଅଙ୍ଗେ ଜଡ଼ ।
ମନ ରହିଲ ଲାବଣ୍ୟ ଜଳେ ବୁଡ଼ି ॥
ସଖୀ ଜାଣି ତା ସମ୍ଭାଳି ନେଇଗଲେ ।
ଗୋବର୍ଦ୍ଧନ ମଲ୍ଲେ ଦେବୀ ଆଜ୍ଞା ଦେଲେ ॥
ଯେଉଁ କାରଣେ ଆସିଛି ନନ୍ଦପୋଇ ।
ଲାଜ ପାଇ ତୋର ଆଗେ କହୁ ନାହିଁ ॥
ବନେ ଗାଈ ରଖିବାକୁ ବଡ଼ ମନ ।
ପିତା ମାତା କଲେ ଅଣ ଅବଧାନ ॥
ବନେ ବନେ ବୁଲି ଆପେ ଦେଖାଇବ ।
ଯେତେ ଗୋବଦ୍ୟା ଶାସ୍ତ୍ର ତା ଶିଖାଇବ ॥
ମହାସ୍ନେହ ପଣ ରାଜା ନିଯୋଗରେ ।
କୁଳେ ବଡ଼ ଜଣେ ଅଛ ବିବେକରେ ॥

ଏହି ସମୟେ ତୋ ପୁରେ ଆସିଅଛି ।
ଶୋକ ଜଳେ ଯଶୋବନ୍ତୀ ଭାସୁଅଛି ॥
ଶୁଣି ଗୋବର୍ଦ୍ଧନ ମଲ୍ଲ ବୋଲେ ହସି ।
ଏତେକାଳେ ଭାଗ୍ୟ ମୋର ହେଲା ଆସି ॥
କଂସରାଜାର ଗ୍ରାମରେ ଭେଟାଇବ ।
ଗୋପପୁରେ କର ଦାନ କଟାଇବ ॥
ରାଜ୍ୟ ମହାଭୋଗ ପଣ ହଆଇବ ।
କହ ଆଜ ଜଣାଇଁ କ ନଆଇବ ॥
ଇଚ୍ଛା ଯହିଁ ତହିଁ ଗାଈ ରଖୁ ରଖୁ ।
ବେବନଜଣ ବନେ ଫଶି ଦେଖୁ ଦେଖୁ ॥
ଏକନଖୀଏ ସ୍ୱଦର ଚଳବାନା ॥
ଦେବ ଦାନବ ମାନବେ ଯାଗ ଚାହାଁ ॥
ଶ୍ୱେତ ବୃଷଭ ଶିରରେ ନେଇ ବାନ୍ଧ ।
ମନ୍ଦ ଚଳିଲେ ଅବଶ୍ୟ ଛୁଟେ କନ୍ଧ ॥
ଏହି ଶିଙ୍ଗା ଗୋଟି ଯେବେ ବଜାଇବ ।
ଅତି ଅସାଧ ଗୋରୁଙ୍କୁ ମଜାଇବ ॥
ଶୁଣି ନ ବାଧେ ହାବୋଡ଼ା ବ୍ୟାଧି ଯେତେ ।
ଗାଈ ଦୁହାଁନ୍ତି ଅଛଧା ଇଚ୍ଛାମତେ ॥
ଶତ କୋଶେ ଥିଲେ ଶୁଣି ପାଶେ ଆସି ।
ବରଷକେ ଗାଈଦୁହାଁ ବାରମାସି ॥
ଯେତେ ଦୂର ଏ କଠାଉ ମାଡ଼ ବୁଲେ ।
ତୃଣ ନସରେ ଗୋଧନ ଚରିଗଲେ ॥
ମନ ଯହିଁକି କରିବ ତହିଁ ଯାଏ ।
ଜଳ ସ୍ଥଳ ଅନଳରେ ନାହିଁ ଭୟେ ॥
ବିଷ ଅମୃତ ହୁଅଇ ଏହା ଲାଗି ।
ଶୁଦ୍ଧମନେ ଦେଇଛନ୍ତି ମହାଯୋଗୀ ॥
ନିଜ ଆଙ୍ଗୁଳି ମାପ ଏ ବାଡ଼ି ଗୋଟି ।
ଦେବାସୁରେ ନ ଜିଅନ୍ତି ଯେବେ ପିଟି ॥
ମୃତ ଗାଈ ମଇଁଷୀଏ ଜୀବ ପାଇ ।
ବୃଦ୍ଧ ଅବସ୍ଥା ତେଜଣ ଯୁବା ହୋଇ ॥
ଚନ୍ଦ୍ର ପ୍ରାୟେ କରେ ଧରି ବୁଲାଇଲେ ।
ହଜିଥିଲା ଦ୍ରବ୍ୟ ଆସି ମିଳେ ଭଲେ ॥
ଭୂତ ପ୍ରେତ ଡାକିଣୀଏ ପଳାବନ୍ତି ।
ଗାଈ ଅଳପେ ଉଦର ପୂରିବନ୍ତି ॥

ଅଷ୍ଟ ରତନେ ଜଡ଼ିତ ଏହୁ ଘଣ୍ଟ ।
ଆଗେ ବାନ୍ଧିବ କପିଳାଗାଈ କଣ୍ଠ ॥
ଯେବେ ଶ୍ରବଣେ ଏହାର ଧ୍ୱନି ଭେଦେ ।
କ୍ଷୁଧା ତୃଷା ନ ଲାଗଇ ଅପ୍ରମାଦେ ॥
ବ୍ରହ୍ମଲୋକ ପରିଯନ୍ତେ ଧ୍ୱନି ଶୁଭେ ।
ହୁଏ ଅମୃତ ଭୋଜନ ଯେତେ ଦ୍ରବ୍ୟେ ॥
ପଲ ବଢ଼ଇ ଗୋରସ ହୁଏ ଯାଇ ।
ଦେବାସୁର ହରି ରଖି ନ ପାରଇ ॥
ଏହୁ ପଞ୍ଚ ପଦାର୍ଥ ଯେ ଦେବି ତୋତେ ।
ପୁରେ ଆସିଣ ମାଗିଲୁ ଯେବେ ମୋତେ ॥
କୃଷ୍ଣ ବୋଲନ୍ତି ଶୁଣିମା ସାବଧାନେ ।
କାହୁଁ ପାଇଲୁ କେ ଦେଲା ପରସନେ ॥
ଏତେ ଏତେ ଦ୍ରବ୍ୟ ପାଇ ଗୋପ୍ୟ କରି ।
ମୋତେ ଦେବ କେଉଁ ସେବା ଦେଖି ମୋର ।
ଗୋବର୍ଦ୍ଧନ ମଲ୍ଲ ବୋଲେ ଶୁଣ କାହ୍ନୁ ।
ପୂର୍ବେ ବର ଦେଲେ ମୋତେ ତ୍ରିଲୋଚନ ॥
ମାତା ପିତା ମୋ ଅଧମ ପଣ ଦେଖି ।
ଯେଣୁ ନ ପାରଇ ଭଲେ ଗାଈ ରଖି ॥
ନାନା ଭର୍ତ୍ସନା ଛଳାଇ ଗାଳି ଦେଇ ।
ଆଡ଼ତୁଷା ହୋଇ ପୁରେ ନ ପଶଇ ॥
ଏହି ଗୋପେଶ୍ୱର ସ୍ଥାନେ ଏକ ଦିନେ ।
ରଜନୀରେ ଶୋଇଥିଲି ଅପମାନେ ॥
ଉଠ ଉଠ ବୋଲି ଡାକେ ବିଶ୍ୱନାଥ ।
ନୟେ ଫେଡ଼ିଣ ଦେଖିଲି ପଞ୍ଚମାଥ ॥
କଷାବସନ ବୃଷଭ ଆରୋହଣ ।
ମଣିମାଳ ସର୍ପହାର ଆଭରଣ ॥
ପାଦେ ନୂପୁର ପାହୁଡ଼ ଝୁମ ଝୁମ ।
ଜାନୁଛନ୍ଦେ ହେମଜାଲି କମ କମ ॥
ଓଡ଼ିଆଣୀ ମୋତିହାର ରସନାରେ ।
କ୍ଷୀଣକଟୀ ଘଣ୍ଟିଧ୍ୱନି ଦିଗ ପୂରେ ॥
ମୃଦୁ ମଧୁର ସୁନ୍ଦର କୋମଳାଙ୍ଗ ।
ଉଚ୍ଛଭୁଙ୍ଗ ଘଣ୍ଟ ସଙ୍ଗ ଉତ୍ତମାଙ୍ଗ ॥
ଶୋହେ ବଳୟ ମୁଦ୍ରିକା ଦଶଭୁଜେ ।
ଧନୁବାଣ ଡମ୍ବରୁ ତ୍ରିଶୂଳ ସାଜେ ।

ପାଶ ଅଙ୍କୁଶ କୁଠାର ମୃଗକର ।
କାଳକଣ୍ଠ ନୀଳକଣ୍ଠେ ରତ୍ନହାର ॥
ରଙ୍ଗ ଅଧରେ ମଧୁର ମୃଦୁହାସ ।
ଜାଣି କସ୍ତୁରୀ ରେଖିଲ ଦାନ୍ତେ ହଣ ॥
କର୍ଣ୍ଣେ ଅମୃତ କୁଣ୍ଡଳ ଢଳ ଢଳ ।
ଚକ୍ଷୁ ଲୋଚନ ବିକଚ ଶତଦଳ ॥
ଘନକୁଟିଳ ଭ୍ରୂଲତା ଅଳକୁଳେ ।
ଭସ୍ମ ଆଙ୍ଗେ କୋଟି ପଞ୍ଚରେଖା ଭାଲେ ॥
ଖଣ୍ଡଚନ୍ଦ୍ର ବିରାଜଇ ମସ୍ତକରେ ।
ମୋତେ ସମାର୍ଜି ଅଭୟ ପଦ୍ମକରେ ॥
ମେଘଗମ୍ଭୀର ବଚନ ଗଦ୍ଗଦ ।
ଦେଖି ଆନନ୍ଦ ପଦ୍ମ ପୁଲକର ଦେହ ॥
ନନ୍ଦୀ ଭୃଙ୍ଗୀ ଆଦି ଏ ରୁଦ୍ରବଳ ।
ପଞ୍ଚମୁଖା ଦେଇ ଶିରେ ଜୋଡ଼ି କର ॥
ପଞ୍ଚ ମୁଖେ ପଞ୍ଚବର ଦେଲେ ମୋତେ ।
ଦୟାକଲେ ପ୍ରଭୁ ଅନୁଗ୍ରହ ଚିତ୍ତେ ॥
ଏକ ନଖୀବାନା ଏହୁ ଦେବ ଚିହ୍ନ ।
ଶିଙ୍ଗାଗୋଟି ଦେଲେ ନାମ ଗୋବର୍ଦ୍ଧନ ॥
ମନ ଗମନ କଠାଉ ଦୁଇ ଗୋଟି ।
ଗୋପାଳନଦଣ୍ଡ ଗୋଚାରଣ ଯଷ୍ଟି ॥
ଏହି ପଞ୍ଚଦ୍ରବ୍ୟ ଦେଇ ଆଜ୍ଞା ଦେଲେ ।
କାହିଁ ନ ଦେଇ ଯତନେ ଥୁଅ ଭଲେ ॥
ନନ୍ଦ କୁମର ଜନମ ହେବ ଯେବେ ।
ତୋର ପୁରେ ଗଲେ ଯାଚି ଦେବୁ ତେବେ ॥
ଏତେ କହି ଦେବ ଅନ୍ତର୍ଦ୍ଧାନ ହେଲେ ।
ସେହିଦିନ୍ ବିଦିତ ମୁଁ ହେଲି ଭଲେ ॥
ଆମ୍ଭା ପ୍ରାପ୍ତେ କରିଥାଇଁ ପ୍ରତିପାଳ ।
ନ ଜାଣନ୍ତି ଭେଦ ଆଦି ଚନ୍ଦ୍ରାବଳୀ ॥
ଯୋଗବଳେ ପୌର୍ଣ୍ଣମାସୀ ଜାଣେ ଏଣୁ ।
ତୋତେ ଦେଲି ତୁ ମୋହର ପ୍ରାଣ ଯେଣୁ ।
ପ୍ରାଣି ହିତରେ ବଞ୍ଚିବୁ ଅନୁବ୍ରତେ ।
ଗୋପେଶ୍ୱରଙ୍କୁ ତୋଷିବୁ ନୃତ୍ୟଗୀତେ ॥
ପିତା ମାତାଙ୍କ ବଚନ ଶିରେ ଧରି ।
ପୌର୍ଣ୍ଣମାସୀ ଆଜ୍ଞା ଥିବୁ ପ୍ରତିପାଳି ॥
ଇଷ୍ଟମିତ୍ର ବାନ୍ଧବଙ୍କୁ ଅବଧାନେ ।
ସାବଧାନ ଗୋ ବ୍ରାହ୍ମଣ ଉଦ୍ଧାରଣେ ॥
ମୋତେ ଲାଗେ ରାଜଦ୍ୱାର ଭଲମନ୍ଦ ।
ଗୋପଭୁବନ ପାଳନ କରୁ ନନ୍ଦ ॥
ପୌର୍ଣ୍ଣମାସୀ ଦେବୀ ବୁଦ୍ଧି ବିଚାରଣେ ।
ତୁହି କର ଏ ଚରଣ୍ଟ ଗୋଚାରଣେ ॥
ମଧୁମଙ୍ଗଳ ସଙ୍ଗରେ ତୋର ଥିବ ।
ଗୋପ କୁମର ଗୋବଚ୍ଛା ନେଇ ଯିବ ॥
ବନେ ବନେ ପଶି ତେତେ ଦେଖାଇବ ।
ଦଣ୍ଡ ଭେଦ ସାମ ଦାନ ଶିଖାଇବ ॥
ଏତେ କହି ଆଣିଦେଲେ ପଞ୍ଚବର ।
ଧନ ବସନ ବିବିଧ ଅଳଙ୍କାର । ୨୫୫ ।
ଧନ କୁଟୁମ୍ବ ସମ୍ପଦ ଦେଲେ ନେତେ ।
ଦିନେ ଦିନେ ସନ୍ତୋଷିବୁ ପୁରେ ମୋତେ ॥
କୃଷ୍ଣ ବୋଲେ ବର୍ତ୍ତମାନ ସଞ୍ଚିଲାର ।
ତୁମ୍ଭ ଯେନ ଏ ଗୋପରେ ବଞ୍ଚିଲାର ॥
କସ ହୋଇବ ଆଗତ କହିଲେହେଁ ॥
ସୁଝି ପାରିବ କି ଦେହ ବହିଲେହେଁ ।
ନନ୍ଦ ଯଶୋଦା ଶ୍ରୀକୃଷ୍ଣ ବିଳମ୍ବରେ ।
ବେଗେ ମିଳେ ଗୋବର୍ଦ୍ଧନ ମଲ୍ଲ ପୁରେ ॥
ଦେଖି ନମିଲେ ସକଳ ପାଦ ଗତେ ।
ନନ୍ଦ ଗୋବର୍ଦ୍ଧନ ମଲ୍ଲ କୋଳାଗ୍ରତେ ॥
ପାଶେ ବସାଇ କହଇ ଶୋକଭର ।
ତୋର ଭାଇଙ୍କି ଯେନଣ ରାଜ୍ୟ କର ॥
କଂସ ନ ଯାଣେ ଏହାଙ୍କୁ ଯେମନ୍ତରେ ।
ବଞ୍ଚାବଞ୍ଚି କରୁଥିବ ତେମନ୍ତରେ ॥
ତୋର ପରା ପୁତ୍ର କୁଳେ ଥାଉଁ ଥାଉଁ ।
ବୃଦ୍ଧ କାଳେ ଆମ୍ଭେ ଏତେ ଦୁଃଖ ପାଉଁ ॥
ମୋତେ ନିଶ୍ଚିନ୍ତେ ବସାଇ ପୋଷ ବାବୁ ।
ଧନ ସମ୍ପଦ ଗୋକୁଳ ତୋର ସବୁ ॥
ଆନ କିଛି ତୋତେ ମୁହିଁ ନ ମାଗଇ ।
ରାଜଭୟ ଯେମନ୍ତରେ ନ ଲାଗଇ ॥
ଚିନ୍ତା କରଇ ହରତେ ଉରି ଉରି ।
ସମର୍ପଇ କୃଷ୍ଣକର କରେ ଧରି ॥

ମଞ୍ଚ ବୋଲଇ ଆଜ୍ଞା କୁ ଦେବୁ ଯାହା ।
ଜୀବ ଥିବାଯାଏ ଶିରେ ବହି ତାହା ॥
ପୂଜା କଲ ଯେ ବାନ୍ଧବ ଗଉରବେ ।
ପୁଷ୍ପ ଚନ୍ଦନ ସୁଗନ୍ଧ ସଉରବେ ॥
ଅନ୍ନ ଅମୃତ ତାମ୍ବୁଳ ଭୋଜନରେ ।
ବସ୍ତ୍ର ଅଳଙ୍କାର ନାନା ଉପଚାରେ ॥
ପୁର ଉତ୍ସବ ଆନନ୍ଦ ନୃତ୍ୟ ଗୀତେ ।
ନନ୍ଦ ଯଶୋଦା ବହୁତ ତୋଷଚିତ୍ତେ ॥
କୃଷ୍ଣ ଶୋଭନ ଅଇଲେ ନିଜପୁରେ ।
ମଞ୍ଚ ଛାଡ଼ିଗଲ ଆସି ଖଣ୍ଡ ଦୂରେ ॥
କ୍ଷଣାନ୍ତରେ ହୋଇଲେ ଆସି ପରବେଶ ।
ଯିବା ଆସିବା ନନ୍ଦା ଦେଢ଼କୋଶ ॥
ନନ୍ଦ ଯଶୋଦା ଆନନ୍ଦ ନ ସରଇ ।
ପୌର୍ଣ୍ଣମାସୀ ଆଜ୍ଞା ପାଇ ନିସ୍ତରଇ ॥
ପୁଣି କଲ ଯେ ଗାନ୍ଧାର ନୃତ୍ୟ ଗୀତ ।
ପୁତ୍ର ଶୋଭନ ଭୋଜନ ନିଦ୍ରାଗତ ॥
ପ୍ରାତଃକାଳ ଜାଣି ଆସି ପୌର୍ଣ୍ଣମାସୀ ।
କୃଷ୍ଣ ଦର୍ଶନ ଲାଳସେ ପୁରେ ପଶି ॥
ମାଏ ଡାକନ୍ତି ଉଠ ମୋ ଉଠ ବାବୁ ।
ଦ୍ୱାର ଅଗଣା ପୂରିଲେ ପୋଏ ସବୁ ॥
ପୂର୍ବ ଦିଗରେ ଅରୁଣ ପ୍ରକାଶିଲ ।
ଗଗନରେ ଶଶୀ ଶୋଭା ନ ଦିଶିଲା ॥
ପଦ୍ମ ବିକାଶେ କୁମୁଦ ମୁଦ୍ରିତରେ ।
କାକ କୁକୁଟ କପୋତ ନାଦ କରେ ॥
ସ୍ତନ ନ ପାଇ ବାଛୁରି ହେମାରବେ ।
ଗୋଷ୍ଠ ଚରଣ୍ଠକୁ ବେଗକର ଏବେ ॥
ପୌର୍ଣ୍ଣମାସୀ ଉଭା ତୋର ଦରଶନେ ।
ସର୍ବମଙ୍ଗଳ ତାଙ୍କର ପରସନେ ॥
ନିଦ୍ରା ଅଳସ ତେଜ ମୋ ବାପ ଭାଇ ।
ଦିନ ସୁଫଳ ହେବ ତୋ ମୁଖ ଚାହିଁ ॥
ଶୁଣି ମାତାଙ୍କ ବଚନ ଉଠି ବସି ॥
ହାଇମାରି ଅଙ୍ଗ ମୋଡ଼ି ଚକ୍ଷୁ ଘଷି ॥
ପୌର୍ଣ୍ଣମାସୀ ମାତା ପାଦେ ଓଲଗିଲେ ।
ଦାସଗଣେ ଯେଝା ସେବା ନିଯୋଗିଲେ ॥

କେଶ ବାନ୍ଧ ମୁଖ ଧୋଇ ବାସଜଳେ ।
ଅଙ୍ଗ ଶଉଚ ଯେ ବିଧିବିଧାନରେ ॥
ଶିଙ୍ଗା ବଜାଇ ବାଳକ ସଙ୍ଗେ ଘେନ ।
ଗୋଷ୍ଠ ମଣ୍ଡଳେ ବିଜୟେ ଭାଇ ବେନ ॥
ମେଲ ବତ୍ସାର ଗୁହାଳ ଧାଡ଼ ଧାଡ଼ ।
ଚଳେ ମୁଗୁନି ଚକଡ଼ା ଅଛି ପଡ଼ ॥
ବଡ଼ ନବାଡ଼ ରସାଳ ଜଉଶାଳ ।
ଚନ୍ଦନର କାଠ ଇଟା ଚୂନ ଚଳ ॥
ଷଣ୍ଢ ଦୁହାଁଳ ବରଡ ବତ୍ସ ସ୍ଥାନ ।
ମାଈ ଅଣ୍ଡିରି ରହିବା ଭିନ୍ନ ଭିନ୍ନ ॥
ଯମୁନାର କୂଳପୀଠ ବାଲିମଣ୍ଡା ।
ଧାସ୍ତୁଲ ଭୂମି ଦେଢ଼ଯୂଣ ଛଡ଼ା ॥
ମଶା ଡାଆଁଶ ପେଟେକ ଟିକ ମାଛି ।
ଜୀବ ଉତପାତ ଭୟ ନାହିଁ କିଛି ॥
ନିଜସ୍ଥାନ ନ କରନ୍ତି ମଳ ମୂତ୍ର ।
ଆପଣାର ପ୍ରାୟ ଦେଖି ପରପୁତ୍ର ॥
ରାମ ଗୋବିନ୍ଦ ସଙ୍ଗତେ ଗୋପସୁତେ ।
କର୍ଣ୍ଣ ଡେରିଣ ସୁରଭି ବେଣୁଗୀତେ ॥
କୃଷ୍ଣ ମଧୁର ସୁସ୍ୱର ବଚନରେ ।
ଖଣ୍ଡମାନେ ସନ୍ତୁ ଗୃହିଁ ନିଷ୍ଠଳରେ ॥
ବତ୍ସ ମେଲାଇ ଗୋପାଳେ ଯେ ଯାହାରେ ।
ଗୋଦୋହନ ଲୀଳାରସେ କୁତୂହଳେ ॥
ଗୃନ୍ଧୀ ବଉଳୀ ଶାମଳୀ କଇଁଫୁଲୀ ।
କାଞ୍ଚୀ କାଇଞ୍ଚୀ କନ୍ନଳୀ ହେମାବଳୀ ॥
ମେଘୀ ଘାର୍ଘିମା ରଙ୍ଗିଣୀ ଧରଲଙ୍ଗୀ ।
କାଳୀ ଧବଳୀ ଗଉଁଶୀ ବରଲାଙ୍ଗି ॥
ମୀଳା କପିଳା ସୁଶୀଳା ଚନ୍ଦ୍ରକାନ୍ତି ।
ଧୀରା ଧୃତଶୀରା ଶ୍ରୁତି ତାସ୍ରବନ୍ତି ॥
କଳା ଧବଳା କାଇଁଚ କୁମୁଦିନୀ ।
ହୀରମାଳା କାଞ୍ଚମାଳା ମାଧବିନୀ ॥
ମାତା ମଦହସ୍ତି ସୁଗନ୍ଧା ପ୍ରମୋଦିନୀ ।
ହରିଣାକ୍ଷୀ କଟାକ୍ଷୀ ଯେ ପୀନସ୍ତନୀ ॥
ଡାକେ ଗଉଡ଼ କେ ଗାଈ ନାମ ଧରି ।
ବତ୍ସ ଦେଖାଇ କେ ଏରେ ଏରେ କରି ।

ରବି ଦଣ୍ଡ ଉପର ଧାଏଁ ସେହ୍ନ ବନ୍ଧ ।
ବଚ୍ଛ ବୁଲଇଣ ଛନ୍ଦ ଦୁହେଁ ଗାଈ ॥
ଧ୍ୱନି ଉଚ୍ଛୁଳେ ନିବଦ୍ଧ ଦୋହନରେ ।
ଧାଇଁ ଆସି ଦୁଧ ଥୋଇ ବଦନରେ ॥
କେହୁ ବୋଲେ ବେଗ ବେଗ ଆସ ଭାଇ ।
ଦୁହାଁ ଦେଉ ନାହିଁ ମୋର ଏହୁ ଗାଈ ॥
ଖଣ୍ଡପଣ ସବୁଦିନେ କଉକଠ ।
ବାଆଁ ଗୋଠା ରୁଣ ମାରି ଭାଙ୍ଗ ଆଣ୍ଠ ॥
କେଉଁ ଗାଈ ନ ଦିଅଇ ଛନ୍ଦା ବନ୍ଧା ।
କେହ୍ନ ବୋଲେ ମତ୍ତ ହେଲ୍ ଚଲି ଉଦା । ॥
କେହୁ ବାଛୁରୀକ ନ କରଇ କାନ୍ଧା ।
ବଳେ ଧରଣ କଗାଲ ନିଜ ବଚ୍ଛା ॥
କେହୁ ନାଚ ମାରି ବନ୍ଧ ଆଡ଼ ହୋଇ ।
ଧରି ନ ପାରି ଗଉଡ଼ ଗଡ଼ିଯାଇ ॥
କେହୁ ହସି ବୋଲେ ଭାଇ ଭଲ ଭଲ ।
କେହୁ ବୋଲେ ନାତ ଖାଇ ମଲ ମଲ ॥
କେହୁ ପାଶକୁ ପୁରଇ ନ ଦିଅଇ ।
ଶୃଙ୍ଗ ହଲାଇ ବାଛୁରି ନ ପିଆଇ ॥
କେହୁ ଚୂ-ଚୂ-କାର କରି ଆଉଁସଇ ।
କେହୁ ଚଟାଇ ଲବଣ ଆଶ୍ୱାସଇ ॥
କେହୁ ବୋଲଇରେ ଦେଖ ଦେଖ ଭାଇ ।
ଏହୁ ଗାଈ ମୋ ହାବୋଡ଼ି ଅଛି ପାଇ ॥
ଜାଣି ଲେଉଟ ପାଣି ତୁ ଦେଉ କି ନା ।
ନିକଟରେ ପ୍ରସବିବ ଦେଖ ପହ୍ନା ॥
ଏହିରୂପେ ଏକ ଗାଈ ବେହୁଁଟିଲା ।
ମୋର ଉପାୟ ବଳରେ ଲେଉଟିଲା ॥
ନୁଆ କୁଞ୍ଜରେ କରିବ ମନ୍ତ୍ରପାଣି ।
ଧୂଆଁ ଦେବ ଗୋଠା କେତେ ମୂଳ ଆଣି ॥
କେହୁ ବୋଲଇ ଏମନ୍ତ ନ କରିବ ।
ଆଣ ହାବୋଡ଼ି ପାଇଲେ କି କରିବ ॥
ଏବେ ଏଣିକି ଉତ୍ତମ ହୁଏ ସିନା ।
ନନ୍ଦ ରଜା ପୁଅ ଆସିଅଛି ଅନା ॥
ଗାଈ ଦୁହିଁ ଶିଖି ବଚ୍ଛା ଚରାଇବ ।
ଥୋକେ ଅଚିହ୍ନା ଆମ୍ଭଙ୍କୁ ଚରାଇବ ॥

ଆଜ ବାନ୍ଧିବା ମୁଣ୍ଡରେ ପାଟ ପାଟେ ।
ମାଗ ବଧାଇ ଲୁଟିବା ହାଟ ବାଟେ ॥
କୃଷ୍ଣ ବୋଲନ୍ତି ଯା, ମାଗ ଦେବା ଦେବା ।
କରି ଯାଣିବୁ କି ଆମ୍ଭେ ଗୋରୁ ସେବା ।
ଦେବୁଁ ତୁମ୍ଭଙ୍କୁ ଦେହର ବରତନ ।
ତୁମେ ଶିଖାଅ ଆମ୍ଭକୁ ଗୋଦୋହନ ॥
ଗାଈ ରୋଗବ୍ୟାଧି ମନ୍ତ୍ର ମଉଷଧି ।
ଥାଇ ଦେଖାଇ ଶିଖାଅ ନିରବଧି ॥
ବାଡ଼ି ମେଲାଇ ସାଧନ ଖେଳିବାର ।
ତନ ହ୍ରାସ୍ୟ ଦୃଢ଼ କରେ ବୁଲିବାର ।
ତୁମ୍ଭେମାନେ ପୁରାତନ ରଖୁଆଳ ।
ଆମ୍ଭେ ନୂଆ ଶିଖାଣି ଏ ନେତ ବାଳ ॥
ଶୁଣି ଗୋପାଳେ ନାଚନ୍ତି ହେଣ୍ଡି ମାରି ।
ବୃଦ୍ଧକୁଳ ମହତାକୁ ଗୁରୁ କରି ॥
ମଧ୍ୟେ ସ୍ତମ୍ଭେ ଇନ୍ଦ୍ରଧ୍ୱଜ କରି ପୂଜା ।
ଗୋପ କୁମରେ ବଜାଇ ଯେଝା ବାଜା ॥
କୃଷ୍ଣ ଶିଙ୍ଗା ଧ୍ୱନି ଶୁଣି ଗାଈ ମାନେ ।
କ୍ଷୀର ସ୍ରବଣ ମିରୋପି ତୋଷି ମନେ ॥
ଅତି ଅସାଧ୍ୟ ଗୋରୁଏ ସାଧ୍ୟ ହୋଇ ।
ଇଚ୍ଛା ମତେଣ ଅଛନ୍ଦା ଦୁହାଁ ହୋଇ ॥
ଯେତେ ଗୋବ୍ୟାଧି ମୋକ୍ଷଣ ତତକ୍ଷଣେ ।
ଗୋଷ୍ଠେ କୃଷ୍ଣ ସିଂହାଧ୍ୱନି ବିଚକ୍ଷଣେ ॥
ବାଳ କୁମର ମେଳରେ ଗୋ ଦୋହନ ।
ଶ୍ୟାମ ଅଙ୍ଗେ କ୍ଷୀରବିନ୍ଦୁ ଶୋଭାବନ ।
ଚନ୍ଦ୍ର ବଦନେ ଅମୃତ ହାସ ମୃଦୁ ।
ମିଳନଭେ ତାରାମେଳେ ଯେହ୍ନେ ଇନ୍ଦୁ ॥
କଟୀ କାଛେଣୀ ପାଶକୁ ଝୁମ୍ପାଜ୍ୟୋତି ।
ଶିରେ ଚଉତନା ନାଟେ ଗଜ ମୋତି ॥
ପାଦେ ନୂପୁର କଣ୍ଠରେ କଉସ୍ତୁଭ ।
ଗାବଦୋହନରେ ନବ ଅନୁଭବ ॥
ଛନ୍ଦ ବଚ୍ଛା ବାନ୍ଧି ବସି ଡେଙ୍ଗେ ଡେଙ୍ଗେ ।
ଆଣୁ ଦୁହିଁଣୀକି ଦୁହେଁ ବେଗେ ବେଗେ ॥
ବୃଦ୍ଧାତର୍ଜମା ଅଙ୍ଗୁଳି ଚପି ଚପି ।
ଚିର କ୍ଷୀର କାଣ୍ଡ ଭାଣ୍ଡେ ସିପି ସିପି ॥

କର୍ଣ୍ଣେ ଡେରିଣ ସୁରଭି ସ୍ନେହଭରେ ।
ଏହିରୂପେ ଗୋଦୋହନ ଏକ ଆରେ ॥
ଧ୍ୱନି ଉଚ୍ଛୁଳେ ନିଗୁଡ଼ ଦୋହନରେ ।
ଅମାପ ତ ଧେନୁ ଦୁହାଁ ହି ଘଡ଼ରେ ॥
କ୍ଷୀର ଘେନାଇଣ ନିଜ ପୁରେ ଚଲେ ।
ରାମ କୃଷ୍ଣ ଆଦି ସବ ଗୋପବାଳେ ॥
ସ୍ନାନ ସୁବେଶ ଭୋଜନ ପାଞ୍ଚଦଣ୍ଡେ ।
ଅନ୍ନ ବ୍ୟଞ୍ଜନାଦି ମୂର୍ତ୍ତିକ୍ଷୀର ଖଣ୍ଡେ ॥
ପରଷନ୍ତି ମା ରୋହିଣୀ ଯଶୋବନ୍ତୀ ।
ପ୍ରିୟସଖା ସଙ୍ଗେ ବସି ପନ୍ତି ପନ୍ତି ॥
ପୁନି ଅଧିକ ଭୁଞ୍ଜିବା ଲାଳସାରେ ।
ଗୋପସୁତଙ୍କୁ ପରଷେ ବିଶେଷରେ ॥
ସର୍ବେ ସନ୍ତୋଷ ଭୋଜନ ସଂଯୋଗରେ ।
ଆଚମନ ତାମ୍ବୁଳାଦି ନିଯୋଗରେ ॥
ରତ୍ନପଲଙ୍କେ ଘଣାର୍ଦ୍ଧେ ପହୁଡ଼ିଲେ ।
ବତ୍ସ ବାଳକେ ଘେନିଣ ବିହରିଲେ ॥
ଶର୍ଯ୍ୟାତେଜିଣ ବନକୁ ଆଗମନ ।
ଶିଙ୍ଘା ଶଙ୍ଖ ବେଣୁ ବଂଶୀ ନାନା ସ୍ୱନ ॥
ଦ୍ୱାର ମର୍କତ ଶିଳାରେ ବିଜେ କରି ।
ସର୍ବ ଗୋପ ସୁତ ସଙ୍ଗେ ବନଗିରି ॥
ବଳ ସୁବଳ କୋକିଳ ଅରଜୁନ ।
ମଧୁ ମଙ୍ଗଳ ସୁବାହୁ ଭଦ୍ରସେନ ॥
ନୀଳ ଉଜ୍ଜ୍ୱଳ ପିପ୍ପଳ ମନୋରମ ।
ଦାମ ସୁଦାମ ଶ୍ରୀଦାମ ବସୁଦାମ ॥
ସ୍ତୋକ କୃଷ୍ଣ କିଙ୍କିଣୀ ଯେ ଲୋହିତାଙ୍ଗ ।
ସଖା ଆଦି ଯେତେକ ଏ କୃଷ୍ଣ ସଙ୍ଗ ॥
ଡକା ଡ଼କି ହୋଇ ଏକ ଆରକରେ ।
ବତ୍ସ ଚରାଇଣ ରୁଣ୍ଡ ନନ୍ଦଦ୍ୱାରେ ॥
ଠୁଳ ହୋଇଲେ ଯେ ଥିଲେ ଏଣେତେଣେ ।
ନନ୍ଦ ଯଶୋଦା ପ୍ରବୋଧି ଜଣେ ଜଣେ ॥
ବନେ କେମନ୍ତେ ଯାଣିବେ ବତ୍ସ ରଖି ।
ମନ କରୁଛନ୍ତି ତୁମ୍ଭ ଦେଖା ଦେଖି ॥
ଯିବା ଜାଣି ଯାଉଅଛୁ ଆଖି ଫୁଟି ।
ଆମ୍ଭ ଅଛି ଦ୍ରବ୍ୟରତ୍ନ ଦୁଇଗୋଟି ॥

ବଣା ହୋଇଣ ରହଇ କନ୍ଧ ସାହି ।
ଆସି ନ ଜାଣଇ କିଛି ବୁଦ୍ଧି ନାହିଁ ॥
ଡରେ ଗମ୍ଭୀରଘରକୁ ନ ପଶଇ ।
ଡିଛ ପାବଛ ସ୍ଥଳ ତ ଆଳସଇ ॥
ଖେଳେ ଖରା ଲାଗି ଅଙ୍ଗ ଝାଳଆଇ ।
କେତେ ରୂପେ ଭୁଞ୍ଜିବାକୁ ନାଳଆଇ ॥
ଖଣ୍ଡସର ଗୋଟିକାକୁ ଥୁକ୍କାରଇ ।
ଚିଜ ଗୁଣ୍ଠଆଇ ତଳ ଫକ୍କାରଇ ॥
କୃଷ୍ଣ ନ ଘେନିଲେ ମୁହିଁ ନ ଭୁଞ୍ଜଇଁ ।
ଅନୁବରତେ ନୟନଁ ନ ତେଜଇ ॥
ଏବେ ତୁମ୍ଭର ସଙ୍ଗରେ ଦେଉଅଛୁ ।
ବନେ ଆପଦ ଯେମନ୍ତେ ନୋହେ କିଛି ॥
ଦୁଇ ଭାଇଙ୍କୁ ସଙ୍ଗରୁ ନ ଛାଡ଼ିବ ।
ବାଦ କରି ବତ୍ସ ରଖି ନ ତଡ଼ିବ ॥
ଦୂର ନ ଯାଇଣ ଥିବ ଲଗାଲଗି ।
ବତ୍ସ ଚରାଇ ଆଣିବ ବେଗା ବେଗି ॥
ଏତେ କହି ରାମ କୃଷ୍ଣ କର ଧରି ।
ସମର୍ପିଇ ଆଖି ଥନଥନ କରି ॥
ବାବୁ ! କୁମରଙ୍କ ସଙ୍ଗ ନ ଛାଡ଼ିବ ।
ଭୟ ପାଇଲେ ସେଠାରୁ ବାହୁଡ଼ିବ ॥
ମଧୁମଙ୍ଗଳ ସୁବଳ ସଙ୍ଗେ ଥିବୁ ।
ଏଣୁ ଯେଣେ ଯିବେ ତୁହି ତେଣେ ଯିବୁ ॥
ମାଏ ବୋଲନ୍ତି ସୁବାହୁ ସୁଦାମାରେ ।
ତୁମ୍ଭ ଉଦର ଭରିବ ଅଧମରେ ॥
ଯାହା ଲୋଡ଼ିବ କହିବ ଆଗ ମୋତେ ।
ମୋର କୁମରଙ୍କ କଥା ଲାଗେ ତୋତେ ॥
ଦେଖି ଚିବୁକ ଧରନ୍ତି ଏତେ ବୋଲି ।
ଯେତେ ଆଜ୍ଞା ବୋଲି ପୋଏ ଗଉଡ଼ାଳି ॥
ଏହିରୂପେ କହି ବୋଧି ଜଣେ ଜଣେ ।
ନୀର ନୟନନ୍ତି ବହେ ଅନୁକ୍ଷଣେ ॥
ଅତି ଯତନରେ ଦେଲେ ନାନା ଲଡ଼ୁ ।
କ୍ଷୁଧା ଲାଗିଲେ ଖାଇବ ଯାହା ଲୋଡ଼ୁ ॥
ଆଗେ ଚଲାଇ ବାଛୁରି ପଛେ ସ୍ଥଳେ ।
ଗୋପସୁତ ମଧ୍ୟେ ଶୋଭି ନନ୍ଦବାଳେ ॥

ପାଦେ ନୂପୁର ବାଜଇ ରୁଣଝୁଣ ।
କଟୀକାଞ୍ଚଣୀ କଙ୍କିଣୀ କ୍ୱଣକ୍ୱଣ ॥
କଳାବାସ ଜଙ୍ଘି ପୀତାମ୍ବର କାଛ ।
ଛନ୍ଦ କାଙ୍ଗୁଳରେ ଲୁଞ୍ଜି ଆଗପଛ ॥
ମୋତିସାର କମନୀୟ ଲତାଜାଲ ।
ଘଣ୍ଟିସାର ହେମପଟ ପାଟଫୁଲ ॥
ଚୂଆ ଚନ୍ଦନ ଲେପନ ସର୍ବାଙ୍ଗରେ ।
ହେମବଳୟ ରତନ ମୁଦ୍ରିକାରେ ॥
ଉରେ ବିବିଧ ପଦକ ମଣିହାର ।
କମ୍ବୁ କଣ୍ଠ ବେଢ଼ି ହେମ ହୀରସାର ॥
ହେମ ପ୍ରବାଳ ମିଶିଣ ଶୋଭା ଜ୍ୟୋତି ।
ପାଟସୁତା ଗୁନ୍ଥାଝମ୍ପା ପଛକତି ॥
ମୁଖେ ତାମ୍ବୁଳ ଚର୍ବଣ ମନ୍ଦହାସେ ।
ଲୁଲେ ମକର କୁଣ୍ଡଳ ଗଣ୍ଡଦେଶେ ॥
ନାନା ମୁକୁତା ଭୂଷଣ ନାସାପୁଟେ ।
ହରିଚନ୍ଦନ ତିଲକ ଭାଲପଟେ ॥
ସଞ୍ଚଭ୍ରୂଲତା ଅଳକା ଅତିରେଖ ।
ମଧୁଲୋଭେ ଚୁମ୍ବେ ଭୃଙ୍ଗ ପଦ୍ମମୁଖ ॥
ଚୂଳ ଚୂଡ଼ାରେ ମଣ୍ଡିତ ପୁଷ୍ପଗଭା ।
ଗର୍ଭକେତକୀ ପାଖୁଡ଼ା ବେଢ଼ା ଶୋଭା ॥
ଶିଖୀ ଶିଖଣ୍ଡ ଶିରରେ ଇନ୍ଦ୍ରଧନୁ ।
ଚକ୍ଷୁ ଚାତକକୁ ନବଘନ ତନୁ ॥
ବାସ ଦାମିନୀହାସ ଏ ଅମୃତରେ ।
ବେଣୁ ଘୋଷରେ ପୂରଇ ଜଗତରେ ॥
କୃଷ୍ଣ ବନ ଯିବା ଶୁଣି ଗୋପ ଲୋକେ ।
ଅତି ଉତ୍ସୁକେ ଧାଇଁ ଦେଖେ ଶୋକେ ॥
କୁଳବଧୂ ମାନଙ୍କୁ ନ ଗଣିଲେ ।
ଲାଜ ଭୟ କିଛି ମନେ ନ ଘେନିଲେ ॥
କୃଷ୍ଣ ଗହନେ ମାରେପି କେଉଁ ବାଳୀ ।
ଉରେ କର ମାରି ବୋଲେ ମଲି ମଲି ॥
କେହୁ ବୋଲଇ ଗୋ ଦେଖ ଦେଖ ସଖି ।
ଏହୁ କୁମରେ ଯିବେ ଗୋ ବତ୍ସା ରଖି ॥
ନନ୍ଦ ଦରିଦ୍ର କୃପଣ ଏବେ ହେଲା ।
ବତ୍ସରଖୁଆଳ ଜଣେ ନ ମିଳିଲା ॥

କେତେ ପ୍ରକାରେ ପାଇଛି ବୃଦ୍ଧ କାଳେ ।
କେତେ ରିଷ୍ଟ ପଡ଼ୁଅଛି ବେଳେ ବେଳେ ॥
ଜାଣୁ ଜାଣୁ ପେଷୁଅଛି ଘୋରବନେ ।
ଦୁଷ୍ଟ ଦାନବେ ବିହରେ ଅନୁକ୍ଷଣେ ॥
ଯଶୋବନ୍ତୀ କି ଚେତନା ବୁଡ଼ାଇଲା ।
ଛଳେ ଥିଅନ୍ତେ ଅସୁର ଉଡ଼ାଇଲା ॥
ଏବେ ଯତନେ ହେ ବନେ ପେଷୁଅଛି ।
ବାଳ ଲକ୍ଷ୍ମୀ ବୟସ ଏକାବଛି ॥
ବଛା ରଖାଇ ସଞ୍ଜୁଆ ଦୁହାଁଇବ ।
ଗଣ୍ଠି ଅମୂଲ୍ୟ ଧନକୁ ବୁହାଇବ ।
କେହି ବିବେକୀ ନାହାନ୍ତି ଗୋପେ ଜଣେ ।
ନନ୍ଦ ପେଷୁଅଛି ଏବେ ବାଇପଣେ ॥
ବୃଦ୍ଧମାନେ ଭଙ୍ଗାଇଣ ନ କହନ୍ତି ।
କୃଷ୍ଣ ଅଭାବେଣ କ୍ଷଣେ ନ ରହନ୍ତି ॥
ବଛା ରଖାଉ ସେ ଆନ ରଖୁଆଳେ ।
ବରତନ ଲେଖି ଦେବା ଯେତେ ହେଲେ ॥
କେହୁ ବୋଲଇ ସଜନ ସାକ୍ଷୀ ତୁହି ।
ଏଥି ଯେତେ ଲାଭ ହେବ ଦେବି ମୁହିଁ ॥
ଦେବି ଅଙ୍ଗ-ଅଳଙ୍କାର ବିକ ଭାଙ୍ଗି ।
ସଖୀ ସଙ୍ଗାତମାନଙ୍କୁ ମାଗି ମାଗି ॥
ଆନ ରଖି ବରତନ ଲେଖି ନେଉ ।
ବନେ ନ ଯାଇ ଶ୍ରୀକୃଷ୍ଣ ଗୋପେ ଥାଉ ॥
କେଉଁ କାମିନୀ ନୟନୁ ନୀର ବହେ ।
କର କପୋଳେ ମାରଣ ଆହା କହେ ॥
ନନ୍ଦ ନନ୍ଦା କରେ କେଉଁ ଶୁଭ୍ରକେଶୀ ।
ସତ ବକୁଛି ଏହାକୁ ବନେ ପେଷି ।
ଭଲ ଆମ୍ଭେମାନେ କୃଷ୍ଣ ସଙ୍ଗେ ଯିବା ।
କାହା ମୁଖକୁ ଅନାଇ ଗୋପେ ଥିବା ॥
କେହୁ ବୋଲଇ ଗୋ ଏଡ଼େ ଅବିଚାର ।
ଶତ ଶତ ରଖଆଳ ପରଘର ॥
ଦୁଧପିଆ ପୁଅ ଯିବ ବଛା ରଖି ।
ପୂର୍ବେ ଶୁଣିଲା ନ ଥିଲା ଏବେ ଦେଖି ॥
କଂସ ନ ସହଇ ବୋଲେ ଭଲେ ଜାଣି ।
ଅଘା ବକା ଧେନୁକାଦ୍ୟ ହନ୍ତି ଏଣି ॥

ଏଥକସ ହେବ ପଛେ ଜାଣି ସିନା
ଏତେ ବେଳ କେହ୍ନ କରନାହ୍ନ ମନା
କୃଷ୍ଣ ଯେନ ସବୁ ପୋଏ ନ ଶ ପିବେ ।
ପ ଲୋକେ ଶଣିବାକୁ କହିଁ ଥିଲେ ॥
ଆଗୁଁ ଆମ୍ଭଙ୍କୁ ମରଣ ହେଉ ହେଉ ।
କେହ୍ନ ବୋଲନ୍ତି ଏମନ୍ତ ନୋହୁ ନୋହୁ ॥
କରସ୍ପୃଷ୍ଟେ ଶବୁକକୁ କେହ୍ନ ଦେଇ ।
କୃଷ୍ଣ ବଦନ ନିରେଖି ଲୁହ ବୋହି ॥
କେହ୍ନ ବୋଲେ କୃଷ୍ଣ କ୍ଷଣେ ନ ଦେଖିଲେ ।
ଗୃହ ଚଉହରେ ମନ ନୋହେ ଭଲେ ॥
କୃଷ୍ଣ ଦରଶନେ ଆସି ନନ୍ଦ ପୁରେ ।
ଯାହା ତାହା ମାଗି ଯାଇ ଯତନରେ ॥
ଧନ ବଞ୍ଚବା କେମନ୍ତ ଦକ ଦକେ ।
ମନ ପ୍ରବୋଧନ କରି ଏକେ ଏକେ ॥
କଷ୍ଟ ନଭଲ ସଜନୀ ସନ୍ତାପରେ ।
ଭସ୍ମ ନାହିଁ ପୌର୍ଣ୍ଣମାସୀ ପ୍ରତାପରେ ॥
ମାତା ପିତା ଜାଣି କଏ ପଠିଆଇ ।
ଭଗବତୀ ଆଜ୍ଞା କେହ୍ନ ମେଣ୍ଟିଆଇ ॥
ତାଙ୍କ ନ ବୋଇଲେ କଏ ବନେ ଯାଏ ।
କସ କରିବେ ସେ ଥାଇଁ ବାପ ମାଏ ॥
ତାଙ୍କ ବୋଇଲା ବୋଲ କେ ପାରେ ଭାଙ୍ଗି
ଗୋବର୍ଦ୍ଧନ ମଲ୍ଲ ତହୁଁ କ କ ମାଗି ॥
ସାହା ପାଇଲାକୁ ବନେ ଯାଉଛନ୍ତି ।
ଦୁଷ୍ଟ ପାପିଷ୍ଟ ନାଶିବେ ଏହି ପାନ୍ତି ॥
ବତ୍ସା ଚରାଇ ଏକ୍ଷଣି ବାହୁଡ଼ିବେ ।
ଗୋପପୁର ଦାଣ୍ଡ ମାଡ ବହରିବେ ॥
ତେତେବେଳେ ପଥ ଆସି ଦେଖି ସିନା ।
ମନଁ ସନ୍ତାପ ନାଶିଣ ଏବେ ଅନା ॥
କୃଷ୍ଣ ତେଜାଂଶୁରେ ତମ ଛୁଟାଇଲା ।
ଚିନ୍ତା ନାଶି ମୁଖପଦ୍ମ ଫୁଟାଇଲା ॥
ନବ କାମ ରାଜା କଏ ଶିଖାଇଲେ ।
ବନଗମନେ ମଙ୍ଗଳ ଦେଖାଇଲେ ॥
ଗତି ମତ୍ତଗଜ ହଂସ ଉରୁ ରମ୍ଭା ।
ଦିବ୍ୟସ୍ତେଷ୍ଟ କୁଚ ହେମ ପୂର୍ଣ୍ଣକୁମ୍ଭ ॥

ପନାବଳୀ ହାର ଫଳ ସୁବସନେ ।
ଚେଲାଞ୍ଚଳ ପତାକା ଏ ନେତ୍ରମୀନେ ॥
ମନ କରିବର ଥିଲା ଲଜ୍ଜାଙ୍କୁଶେ ।
ଦ୍ୱିଜରାଜମୁଖ ଗ୍ରହିଁ ମନତୋଷେ ॥
ଗଣ୍ଡମଣ୍ଡଳେ ତାଟଙ୍କ ବିରାଜଇ ।
ରତ୍ନଜ୍ୟୋତିକ ଆଲକ୍ତ ନିଉଞ୍ଛଇ ॥
ହୁଳହୁଳି ମଙ୍ଗଳ ସେ ଗୀତବାଦ୍ୟ ।
ଧୀରେ ଶ୍ୱାସ କମ୍ବୁକଣ୍ଠୁ ଜଳ ସ୍ୱେଦ ॥
ସ୍ୱର୍ଗେ ଅପସରୀ ବିଦ୍ୟାଧରୀ ମେଳେ ।
ପୁଷ୍ପ ବରଷି ଦୁନ୍ଦୁଭି ବଜାଇଲେ ।
ଉଚ୍ଚେ ମଙ୍ଗଳ ପଢନ୍ତି ସୁର ମୁନି ।
ବୃହସ୍ପତି ଆଦି ଲଗ୍ନ ଶୁଭ ଗଣି ॥
ବଇଶାଖ ଶୁକ୍ଳ ଗୁରୁ ପଞ୍ଚମୀରେ ।
ପୁଷ୍ୟା ବୃଷଲଗ୍ନ ଶୁଭ ବିଦତରେ ॥
ନମେ ପିତାମାତା ପୌର୍ଣ୍ଣମାସୀ ପାଦେ ।
ବଳଭଦ୍ର ରୂପ ଚିନ୍ତି ହୃଦପଦ୍ମେ ॥
ସାତଦଣ୍ଡମାନେ ପାଦ ବଢାଇଲେ ।
ଶ୍ୱେତପାରୁଆ ଆଗରେ ଉଡାଇଲେ ॥
ଗୋପେଶ୍ୱରଙ୍କୁ ଦର୍ଶନ ନୃତ୍ୟଗୀତେ ।
ଡାଲମାନ ଖେମଟାରେ ଗୋପସୁତେ ॥
ତାଙ୍କୁ ମେଲାଣି ମାଗିଣ ଓଲଗିଲେ ।
ନଗ୍ର ବଳଣ ଉତ୍ତର ଦ୍ୱାରେ ଗଲେ ।
ପଛେ ଗୋଡାଇ ଅଛନ୍ତି ଗୋପଲୋକେ ।
ରହ ରହ ତହିଁ ବୋଲୁଛନ୍ତି ଥୋକେ ॥
ଆଖେ ପାଖେ ରହି ପଥ ନ ବାରନ୍ତି ।
ରହ ରହ ବୋଇଲେ ମ ବଳଆନ୍ତି ॥
ମାଏ ଗୋଡ଼ାଇ ନ ପାରି ପଛେ ରହେ ।
ପୌର୍ଣ୍ଣମାସୀ ପ୍ରବୋଧିଣ ଲେଉଟାଏ ॥
ଦେବୀ ପାଦ ଛୁଇଁ ନନ୍ଦରାଣୀ ବୋଲେ ।
ବନେ କୁମର ମୋ ଇସନ୍ତସ ହେଲେ ॥
ଶୁଣି ଜୀବନ ନିମିଷେ ନ ରହିବ ।
ଦେବୀ ବୋଲନ୍ତି ଏମନ୍ତ କପାଁ ହେବ ॥
ନନ୍ଦ ଗୋଡ଼ାଇ କହନ୍ତି ତରତରେ ।
ବାବୁ ବସ୍ତୁ ରଖ ଆଜ ନିକଟରେ ॥

ଖେଳ କୌତୁକେ ନ ଯିବ ଏଣେ ତେଣେ ।
ନାନା ଦୁଷ୍ଟମାନେ ଛନ୍ତି ସ୍ଥାନେ ସ୍ଥାନେ ॥
କାଳନ୍ଦୀରେ କାଳୀୟ ଯେ ଅଛି ରହି ।
ବିଷ ଜାଳେ ପକ୍ଷୀ ଉଡ଼ି ନ ପାରଇ ॥
ଶତାଧିକ ଯାଏ କୂଳ ନାହିଁ ତରୁ ॥
ଜାଣି ନ ଯିବ ନିକଟେ ଥିବ ଦୂରୁ ।
ବାରିକୁଣ୍ଡେ ପଶି ଜଳ ନ ଖାଇବ ।
ନ ଜାଣିବା ବାଳକଙ୍କୁ ଶିଖାଇବ ।
ତାଳବନେ ଧେନୁକ ଯେ ଅଛି ରହି ।
ପାଞ୍ଚ କୋଶଠାରୁ ତହିଁ ଯିବ ନାହିଁ ॥
ମହା ଅଜଗର ଅଛି ଗିରି ତଳେ ।
ଗିରି ଗୋବର୍ଦ୍ଧନ ଗିଳି ପାରେ ବଳେ ॥
ବଡ଼ କାୟ ବକ ଥାଇ ଗିରି ତଳେ ।
ହାତୀ ଶୁଣ୍ଢିକୁ ଗିଳଇ ଅଳପରେ ॥
ଠକାଠକି ହୋଇଥିବ ଏକମେଳେ ।
ମଧୁମଙ୍ଗଳ ସକଳ ଜାଣେ ଭଲେ ॥
କୃଷ୍ଣ ବୋଲନ୍ତି ହେ ପିତା ଯାଅ ତୁମ୍ଭେ ।
ଭୟ ସ୍ଥାନକୁ କେଁଉ ଯିବୁଁ ଆମ୍ଭେ ॥
ଶିଙ୍ଘା ସଙ୍ଗେ ବେଣୁ ଘଣ୍ଟା ଧ୍ୱନି ଶୁଣି ।
ଯିବା ଥିବାର ଜାଣିବ ତହୁଁ ପୁଣି ॥
ଜୟ ଅଜୟ ଶବଦୁଁ ବିଚାରିବ ।
ମନ ସଂଶୟ ଦେବୀଙ୍କି ପଚାରିବ ॥
ଯାହା ପଛେ ଲଟ କରି ଗୋଡ଼ାଉଛ ।
ବଛା ଭେକ ବିକଳକୁ ବଢ଼ାଉଛ ॥
କୃଷ୍ଣ ବଚନେ ବହୁଡ଼ି ଗୋପଜନେ ।
ରହି ରହି ଅନାଇଣ ଖେଦମନେ ॥
ନିଜ ମନ୍ଦିରେଣ ଚିତ୍ତ ନ ରହଇ ।
ଗୃହ କାରଜ ବିଶୋରି ଛନ୍ନ ହୋଇ ॥
ଯହୁଁ ଗୋପଲୋକେ ପଥୁଁ ବାହୁଡ଼ିଲେ ।
ଯମୁନାର କୂଳ ବନେ ବିହରିଲେ ॥
ସ୍ଥାନ ବିସ୍ତାର ନିର୍ମଳ ବାଲିବନ୍ତ ।
ନାନା ବୃକ୍ଷ ପନ୍ତି ପନ୍ତି ମନ୍ଦାବୃତ ॥
ଫଳଭରେ ଏକ ଆରେ ନଜାଣନ୍ତି ।
ମଞ୍ଜି ଲୋଟି ଡାଳେ ଡ଼ାଳେ ଛନ୍ଦାଛନ୍ଦି ॥

ନମେ ଯେହ୍ନେ ଗୁଣୀଜନ ଗୁଣ ଘେନ ।
କୂଳବଟପୀ ଗର୍ବିତ ସୀମନ୍ତିନୀ ॥
କୁଶ୍ରୀ ଚରଣେ ପ୍ରଣତ ଉପଗୃହେ ।
ଫଳ ସୁଗନ୍ଧ କୁସୁମ ମଧୁଧାରେ ॥
ପୁଷ୍ପଭରେ ଲତା ପବ ନ ବିଷଇ ।
ମଧୁ ମୃଦୁଳ ସୁଗନ୍ଧ ବିକାଶଲ ॥
ଭୃଙ୍ଗ ଚୁମ୍ବି ଲୋଡ଼ନ୍ତେଣ କମ୍ପମାନ ।
ଯେହ୍ନେ ସୁମେଧା ନାୟିକା କାନ୍ତେ ମାନ ॥
କୃଷ୍ଣ ଚରଣ-ପଙ୍କଜେ ବରଷଇ ।
ମକରନ୍ଦ ପରାଗରେ ସରସଇ ॥
ଶୁକ ପିକ ସାରୀ ହରଷେ ମଙ୍ଗଳରେ !
ନାନା ପକ୍ଷି ଗଣ ଧ୍ୱନାପଞ୍ଚସ୍ୱରେ ॥
ନୃତ୍ୟକରେ ନୀଳକଣ୍ଠ ଉନମତେ ।
ମୃଗଗଣ ନିରେଖିଣ ସ୍ତମ୍ଭୀଭୂତେ ॥
କୁଞ୍ଜେ ଝଙ୍କାର ଶବଦ କୋଳାହଳ ।
ଅତି ପରିମଳ ନୀପ ତରୁମୂଳ ॥
ନଦୀ କାଳନ୍ଦୀ କୂଳକୁ ଲଙ୍ଘି ଲଙ୍ଘି ।
ଭେଦି ମାଧବ ପଙ୍କଜ ପଦ ସଙ୍ଗୀ ॥
କୂଳ-କୁମାରୀ ସ୍ୱୟଂ କି ଅଭିସାର ।
ପଦ ସାରସେ ଲୋଭି ତ ବାର ବାର ॥
ମନ୍ଦଗନ୍ଧ ସୁଶୀତଳ ଅନିଳରେ ।
ଦଶଦିଶ ପ୍ରମୋଦିତ ମଙ୍ଗଳରେ ॥
ବତ୍ସ ରଖି ବାଳମେଳେ ବିମହରି ।
ପାଦେ କଠାଇ ନଉଡ଼ି କରେ ଧରି ॥
ବାମ କାଖେ ଶିଙ୍ଘା ବେଣୁ କାନ୍ଧେ ଛତା
ବତ୍ସ ଅଡାଇ ଗୋପାଳ ଗଣେ ଜତା ॥
ନଦୀ ଦଟ ନୀପତରୁ ତଳେ ଠଣା ।
ଠୂଳ ହେଲେ ଯହିଁ ତହିଁ ହେଲେ ବଣା ।
ବତ୍ସ ମେଲିଣ କୋମଳ ନବ ଘାସେ ॥
ନାନା କଉତୁକ ଇଚ୍ଛା ଖେଳରସେ ।
ପୁଷ୍ପ ତୋଳିଣ ଗୁନ୍ଥିଲେ ମାଳେ ମାଳେ ॥
ହାର ପଦକ କଙ୍କଣ ଗଭା ଭୁଲେ ।
ଝରା କଳକା ମୁକୁଟ ଅବତଂସ ।
ଶ୍ୱେଦ ପୀତ ରଙ୍ଗ ନୀଳ ନାନାପୁଷ୍ପ ॥

ଛତ୍ର ଚାମର ବାନ୍ଧିଣ ଚନ୍ଦ୍ରାତପ ।
ସିଂହାସନ ପଲଙ୍କ ଏ ମୃଦୁ ମଞ୍ଚ ।
କଢ଼ି ଦନ୍ତୁର ସ୍ତବକ ବାନ୍ଧିଣିରେ ।
ବନ୍ଧ ଛନ୍ଦ ପତ୍ର ପତ୍ର ପୁଷ୍ପପୁଞ୍ଜରେ ॥
ରାମ କୃଷ୍ଣ ଶିରେ ପୁଷ୍ପ ନିଉଁଛୁଳେ ।
ରାଜ ଉପଚାରେ ଅଭିଷେକ କଲେ ॥
କଳ୍ପ-ପାଦପ-ତଳରେ ସିଂହାସନ ।
ଦଣ୍ଡ ଛତ୍ର ଟେକି ଧରେ ଅରଜୁନ ॥
ଖଡ୍ଗ ଆଲଟ ଚାମର ବାନ୍ଧିଣିରେ ।
ଦାମ ସୁଦାମ ସୁବଳ କିଙ୍କିଣିରେ ॥
ବେତ ଧରିଣ ସୁବାହୁ ପଡ଼ିହାରି ।
ସ୍ତୋକ କୃଷ୍ଣ ମନ୍ତ୍ରୀ ବୁଝାମଣା କରି ॥
ମଧୁ ମଙ୍ଗଳ ମଙ୍ଗଳ ଆଚରଣେ ।
ଭଦ୍ରସେନ ରାଜନୀତି ବିଚାରଣେ ॥
ଛୁମୁ ଦର୍ପଣ ଉଜ୍ଜ୍ୱଳ ସଖା କରେ ।
ଡାକ ମଣିମା ଖୁଣ୍ଟିଆ କୋକିଳରେ ॥
ପୁଷ୍ପ କରେ ପୁଷ୍ପ ଶିରେ ନିଉଁଛୁଳେ ।
ପାଣେ ପିତଳ ତବସ ଉହାଡ଼ିଲେ ॥
ଦାମ ଖଟିଲା ତାମ୍ବୁଳ ନିଯୋଗରେ ।
ଧୀର ସୁଦାମ ଭଣ୍ଡାର ଅଧିକାରେ ॥
ବସୁଦାମ ମଣୋହିକ ସଜାଡ଼ଇ ।
ମହାବଳ ସବୁ କଥା ନିବାଡ଼ଇ ॥
ନିଜ ନିଯୋଗ ଆବୋରି ସଖାମାନେ ।
ଯେଝା ସେବା ନିବୋଲଣା ଦାସପଣେ ॥
ରାମ କୃଷ୍ଣ ରାଜା ଦେଖି ବନ ଜୀବେ ।
ପାଶ ଛାଡ଼ି ନ ପାରନ୍ତି ସ୍ନେହ ଲୋଭେ ॥
ବସ୍ତି ନ ଚରି ମଣ୍ଡଳ ବେଢ଼ି ରହେ ।
ଦେଇ ନିଶ୍ଚଳ ଲୋଚନ କୃଷ୍ଣ ଦେହେ ॥
ଶୂନ୍ୟେ ରହିଣ ଦେଖନ୍ତି ସିଦ୍ଧ ମୁନି ।
ଧନ୍ୟ ଧନ୍ୟ ପ୍ରଶଂସନ୍ତି ସେ ଅବନୀ ॥
ଇଚ୍ଛା ସୁଖେଣ ଭ୍ରମନ୍ତି ବନେ ବନେ ।
ପରିମଳ ଦେଖି ରହି ସ୍ଥାନେ ସ୍ଥାନେ ॥
ଗୋପ କୁମାର ମାନେ ସେ ଦିଅନ୍ତି ତାଳି ।
ମଧ୍ୟେ ନାଚନ୍ତି ଗୋବିନ୍ଦ ଢଳି ଢଳି ॥

ଶ୍ରମ ଗଲଇ ଶ୍ରୀଅଙ୍ଗୁ ଝୋପି ଝୋପି ।
ବାନ୍ଧି ଝୀନବାସ କେହୁ ଢଏ ଛୁପି ॥
ଛାଇତଳ ପଲ୍ଲବରେ ଶଯ୍ୟା କରି ।
ପାଦ ମନ୍ଥାଳି ଶୁଆଇ ରାମ ହରି ॥
କେତେବେଳେ ଉଠି ମୁଖ ପଖାଳିଲେ ।
ବନ ଭୋଜନକୁ ଯାହା ନେଇ ଥିଲେ ॥
ଏକ ମେଳ ହୋଇ ସର୍ବେ ଭୁଞ୍ଜି ବସି ।
ନାନା ପରିହାସ ରସେ ଭାଷା ଭାଷି ॥
ସ୍ୱାଦ ଚାଖିଣ କୃଷ୍ଣଙ୍କୁ କେହୁ ଯାଚେ ।
ସଖା ଭାବେ ଭୁଞ୍ଜି ନିଜ ଗ୍ରାସ ମୁଞ୍ଚେ ॥
ସ୍ୱାଦ ସଉରଭ ବୋଲି କେହୁ ଢଏ ।
କେହୁ ଅଧରୁ ଛଡ଼ାଇ ନେଇ ଖାଏ ।
କେହୁ ବୋଲେ ଏଥୁ କିଛି ଖାଅ ଖାଅ ।
ମନ ରୁଚି ନେଇଲେଣ ମୋତେ ଦିଅ ॥
କେହୁ ବୋଲଇ ଏ ଘୃତ ଗୋରସକୁ ।
କଲେ ଖାଇଲେଣ ବଳ ବରଷକୁ ॥
ସର ସାକର ଏ ନଟି କାଳି ରସ ।
ବଡ଼ ସ୍ୱାଦ ହୋଇ ଅଛି କରି ଗ୍ରାସ ॥
କେହୁ ବୋଲଇ ଅଛଇ ଏମନ୍ତ ହିଁ ।
ସର ଲବଣୀ ଯାଚିଲେ ନ ରୁଚଇ ॥
ପରଘରୁ ଚୋରି କରି ଘୋଳଦହି ।
ମନ ହେନ ଥାଇ ତହିଁ ବଡ଼ ହୋଇ ॥
ଶୁଣି ହସନ୍ତି ମାଧବ ଆନନ୍ଦରେ ।
କିଛି ଖାଇଦେଇ ଏକ ଆର କରେ ॥
ଅଷ୍ଟ ହରଷ ଭୋଜନ ଲୀଳାରସ ।
ଆଚମନ ସାରି ଭୁଞ୍ଜି ମୁଖବାସ ॥
କେତେବେଳେ ଜଳକେଳି ଯମୁନାରେ
ଦୋଳି ବସି ପହଁଆଇ ଧୀରେ ଧୀରେ ॥
କେତେ ବେଳେ ଫଳ ତୋଳି ମରି ମରି ।
କେତେବେଳେ କୁଞ୍ଜେ କୁଞ୍ଜେ ଲୁଚକାଳି ॥
କେହୁ ଦେଖି ନ ପାରିଣ ବୁଲିବୁଲି ।
କେହୁ ଦେଖିଣ ଆସଇ ହାତ ଧରି ॥
ଛଳ ବର୍ଣ୍ଣି କହଇ ହୋଡ଼ମାରି ।
କେହୁ ବୋଲେ ଆସ ହେବା ପେଲା ପେଲି ।

ଲତାଗହଣ ମାଧବୀ ଉହାଡ଼େରେ ।
କେହୁ ପଶିଲେ ବେତସି ନିବଡ଼େରେ ॥
ଖୋଜି ନ ପାଇଣ କେହୁ ଗଲେ ହାରି ।
କେତେବେଳେ ପୁଣି ବାହୁଯୁଦ୍ଧ କରି ॥
ଯୋଡ଼ି ଯୋଡ଼ି ସେ ନଉଡ଼ି ସାଧନରେ ।
କେହୁ ଲଗା ଲଗି ମାଲ ବନ୍ଧାଣରେ ॥
କେତେବେଳେ ଫଳ ତୋଳି ମରାମରି ।
ଦୁଇଦଳ ହୋଇ ଯୁଦ୍ଧ କରା କରି ॥
କେତେବେଳରେ ବତ୍ସକୁ ଲେଉଡ଼ଆଣି ।
ସମତୁଲ ଘାଟେ ନେମଲି ଦେଇ ପାଣି ॥
କେହୁ ତୃଣ ଛିଣ୍ଡାଇଣ ବେକ ବେକ ।
ବସି ବତ୍ସକୁ ଖୁଆନ୍ତି ଡାକି ଡାକି ॥
ପଛେ ଗୋଡ଼ାଇ ବାଛୁରି ଲାଗିଲାଗି ।
ଡାଳ ଖଣ୍ଡି ଖଣ୍ଡି ଦେଇ ଭାଙ୍ଗି ଭାଙ୍ଗି ॥
ନଖେ କୁଣ୍ଡାଇ ବେକ କମଳରେ ।
ପଠିପଖା ବେକସନ୍ଧି ବିମଳରେ ॥
କଣ୍ଠ ଉଚ୍ଛ୍ୱାସରେ ଘଷି ମିଶିଆଇ ॥
କର ଚରଣେ ଲାଗିଣ ଘଷିଆଇ ॥
ଘଣ୍ଟି ଘାଘୁଡ଼ି ମଣ୍ଡିତ କାହା ଦେହେ ।
ବାଜେ ବଳୟ ନୂପୁର ଚଉପାଏ ॥
କାହାପରେ କେତେ ପାଟ ଚଉଖଣ୍ଡି ।
କାହା ମୁଖେ ବାନ୍ଧେ ଦିବ୍ୟ ମଣିମଣ୍ଡି ॥
କାହା କପୋଳେ ମୁକୁତା ଛନ୍ଦା ଜାଲି ।
କାହା କଣ୍ଠେ ହେମ କଣ୍ଠି ଘଣ୍ଟା ଦୋଳି ॥
ପାଟ ଫୁଲଝୁମ୍ପା ଲମ୍ବେ ଦୁଇପାଖେ ।
ଛାନ୍ଦ ପରେ ମୟୂରଚୂଳ ରେଖେ ॥
ରଙ୍ଗ ଗୁଞ୍ଜାରେ ମଣ୍ଡିତ କେଉଁ ବତ୍ସ ।
ପୁଷ୍ପମାଳ ବିଭୂଷଣେ କାହା ଇଚ୍ଛା ॥
ଏକଆରକେ ବଡ଼ମା ପଣ ଧରି ।
ରାମକୃଷ୍ଣଙ୍କୁ ଦେଖାନ୍ତି ସଜ କରି ॥
ବତ୍ସ ଚରାଇ ଉଦର ପୂରାଇଲେ ।
ଖରାବେଳେ ଛାଇତଳେ ଶୁଆଇଲେ ॥
ସାୟଂ ସମୟ ପ୍ରବେଶ ହେଲା ଆସି ।
ପୁରେ ଯିବା ଭାଳ ଏକ ଆରେ ଭାଷି ॥

ସ୍ୱାଦ ସୁରଙ୍ଗ ସୁଗନ୍ଧ ପକ୍ୱଫଳ ।
ନେବା ଏଥିଁ କଟ୍ଟି କଟ୍ଟି ତୋଳ ତୋଳ ॥
ନଗ୍ରଜନଙ୍କୁ ଅପୂର୍ବ କରି ଦେବା ।
ନେଇ ଠେକିଥିବେ ବନେ ଆସିଥିବା ॥
ଶୁଣି କୁମରେ ଗୋବିନ୍ଦ ବଚନରେ ।
ଫଳ ତୋଳନ୍ତି ଶରଧା ଆନନ୍ଦରେ ॥
ଡାଳମାନେ ତଳେ ଦେଇଛନ୍ତି ଲଗା
ଜାମ୍ବୁ ଜମ୍ବିର କମଳା କରମଙ୍ଗା ॥
କେନ୍ଦୁ କରନ୍ଦା ଖଜୁରି ଭୁରକୋଳି ।
ବେଲ ରସାଳ ବଇଞ୍ଚି ମାଳ ମାଳି ॥
ଲେମ୍ବୁ ନାରଙ୍ଗ ଯେଉଁଠି ତାଳସଜ ।
କ୍ଷୀର ବରଦାରଷ ଏ ଯେତେ କାର୍ଯ୍ୟ ॥
ତୋଳି ପତ୍ରପୁଡ଼ା କରି ସଜାଡ଼ିଲେ ।
ଶିଙ୍ଘା ଶଙ୍ଖ ବଜାଇଣ ବାହୁଡ଼ିଲେ ।
ଆଗେ ଅଡ଼ାଇ ବତ୍ସଙ୍କୁ ପଛେ ଚାଲେ ।
ନାନା ଭଙ୍ଗିରେ ଚାଲନ୍ତି ଗେଲେ ଗେଲେ ।
ବେଢ଼ି ବୁଲିଣ ଉତ୍ତରଦିଗୁଁ ଆସି ।
ଠୁଳ ହୋଇ ଏକମେଳ ନଗ୍ରେ ପଶି ॥
ପୂର୍ବ ବିଚ୍ଛେଦେ ରୋହିଣୀ ଯଶୋବନ୍ତି !
ମନ ବିଷାଦରେ ପୁରେ ନ ପଶନ୍ତି ॥
ଚିତ୍ତ ଛନ୍ନଛନ୍ନ ହିଆ ଦକ ଦକ ।
ଉରୁ ଦମ ଦମ ଲୁହ ଥକ ଥକ ॥
ଉଚ୍ଚ ଡାକରେ ଚକିତ କାତରରେ ।
ତନୁ ତରଳିତ ମତ୍ତ ବାତୁଳରେ ॥
କ୍ଷୋଭ ବିଭବ ଅବସ୍ଥା ଆରତରେ ।
କର୍ଣ୍ଣ ଡେରିଣ କୁମର ବାରତାରେ ॥
ଧରି ଧଇର୍ଯ୍ୟ ନ ପାରି ନନ୍ଦରାଣୀ ।
ଏକ ଆରକେ ପଚାରେ ପୂର୍ବ ବାଣୀ ॥
କେହୁ ଦେଖିଲ କୃଷ୍ଣ ମୋ କେଉଁଠାରେ
ବତ୍ସ ଘେନି ବାହୁଡ଼ିବେ କେତେବେଳେ ।
ଝାଳ ଗନ୍ଧୁଥିବ ଅଙ୍ଗୁ ଖରା ଲାଗି ।
ମୁଖ ଶୁଖି ହୋଇଥିବ ଦୁଃଖଭାଗୀ ॥
କେଉଁ ଛାଇ ତରୁତଳେ ଥିବ ବସି ।
ଶୀତ ଅନିଳ ଜଳରେ ମନ ତୋଷି ॥

ପରିଚର୍ଯ୍ୟା କରିଥିବ ଫୁଟି ଶୋଇ ।
ବଚ୍ଛ ଅଡ଼ାଇଣ ଅଶକତ ହୋଇ ॥
ଦେଖି ସକଳ ପାଳଣ ଗୋପସୁତ ।
ଆଶ୍ୱାସନା କରୁଥିବେ ନାନାମତେ ॥
ଉଠି ଅଳସେ ହେଉଥିବେ ଅଙ୍ଗମୋଡ଼ ।
ଭୋକେ ମାଗିଲେ କୁମରେ ଦେବେ ଲେଡ଼ ॥
ସର ନ ଖାଇବ ବୋଲି କରେ ଗୋଳ ।
ଏବେ ଲେଡ଼ ଖାଉଥିବ ବନ ଫଳ ॥
କେମେଁ ଆଣିଅଛୁ ଯାହା ଭୁଞ୍ଜ ତହିଁ ।
ଆଉ ଅଧିକ ଲୋଡ଼ିଲେ ହେବ କାହିଁ ॥
ପୁଣ ଜାତ କରି ଦୁଃଖ ନ ସହିଲି ।
ଯେତେ ବିଷୟ ମନୁ ମୋ ବିସୋରିଲି ॥
ଅପୁତ୍ରିକ କାଳେ ଥିଲି ମହାକଷ୍ଟ ।
ପୁଣ ହେଲାରୁ ଏକୁଡ଼ିଶାଙ୍କୁ ଦୃଷ୍ଟ ॥
ଗୋପେ ପାରିଲି ଦିନ୍ ଏ ସ୍ଥଳକୁଳ ।
ଦୁଷ୍ଟପଟଣେ ପୁରେ ପୁରେ ହାଲହୋଳ ॥
କର୍ଣ୍ଣ ବଧିର ଗୁହାରି ଶୁଣି ଶୁଣି ।
ଉଷି ନ ଆସି ନ ଖାଇ ଅନ୍ନପାଣି ॥
ତାର ଅଭାବେ ଉପାସେ ମରୁଥାଇ ।
ନାନାମତେ ପ୍ରବୋଧିଣ ରହୁଥାଇ ॥
ହେନେ ହନେ ଖଗଂସ୍ର କ ମନେ ଧରି ।
ଆକାଶରୁ ଚନ୍ଦ୍ର ମାଗେ ଦଅ ବୋଲି ॥
ଘୁଇ ଖଟାଉଛୁ ମୋର ଆଗୁ ନିଅ ।
ଦରପଣ ପୁଅ ଧରି ମୋତେ ଦଅ ॥
ଚିତ୍ର ପ୍ରତିମା ଗଣକୁ ଡାକ ଆସୁ ।
ନୃତ୍ୟ ଗୀତ କରି ମୋର ପାଶେ ବସୁ ॥
ଏହିରୂପେ ଅସମ୍ଭବ କଥା ମାଗେ ।
ଅଳି କରଣ ପଡ଼ଇ ମହୀଭାଗେ ॥
ହେନେ ନଜଞ୍ଜାଳ ନୋହୁ ତାର ଲାଗି ।
ଚିନ୍ତାଭରେ ହେଉଥାଉ ଦୁଃଖଭାଗୀ ॥
ଏବେ ବଚ୍ଛା ରଖି ବନେ ବନେ ଗଲା ।
ଦୁଷ୍ଟ ଦାନବଙ୍କ ଯହିଁ ନିତ ମେଳା ॥
ନାହିଁ କଲେ ରୁଷିଗଲା ମଞ୍ଚ ପୁରେ ।
ଯାଇ ଭଗାରିଆ ରାଜ ନଟପାଗରେ ॥

ଏବେ ନଦେଖି ଯାଉଛୁ ଆଖି ଫୁଟି ।
ପୁଣ ପାଇଣ ହୋଇଲୁ ମହାକଷ୍ଟି ॥
ଲୁହ ଝର ଝର ଶୋକେ ଗଦଗଦ ।
ବନେ ନପୁଣ ପଡ଼ଇ ପରମଦା ॥
ପୌର୍ଣ୍ଣମାସୀ ନ କହିଲେ ନିବର୍ତ୍ତାଇ ।
ବଚ୍ଛା ରଖି ବୋଲି ଦେଲେ ପ୍ରବର୍ତ୍ତାଇ ॥
କୋଳେ ଦେଇ ନେଇ ଶିର ମୁଖେ ଦେଲେ ।
ନାବେ ବସାଇ ଅଗାଧେ ବୁଡ଼ାଇଲେ ॥
ଭାସିଗଲି ନ ଲାଗିଲି କେଉଁ କୂଳେ ।
ଚିନ୍ତା ନ ଗଲା ମନରୁ କାଲେ କାଲେ ॥
ଏହି ରୂପେ ମାଏ ଚିନ୍ତା ସନ୍ତାପରେ ।
ପଥ ନିରେଖନ୍ତି ଯାଇ ଖଣ୍ଡେ ଦୂରେ ॥
ଏହି ସମୟେ ଗୋପାଳେ ଗୋପେ ପଶି ।
ପଞ୍ଚ କାହାଳି-ମୁରଲୀ ନାଦୀ ଘୋଷି ॥
ଶିଙ୍ଗା ବେଣୁ ଉଦ୍ଦାମରେ ବଜାଇଲେ ।
ଗୋପ କାମିନୀମାନଙ୍କୁ ମଜାଇଲେ ॥
ଏକ ଆରକକୁ ଯାଇଁ ବେଗେ କହେ ।
ଶୋଇଥିଲି ଲୋକ ଉଠି କରି ଧାଏଁ ॥
କେହୁ ବୋଲଇ ଧାଇଁ ଗୋ ଆସ ସଖି ।
ରାମ କୃଷ୍ଣ ଆସୁଛନ୍ତି ଯିବା ଦେଖି ॥
କେହୁ ବୋଲଇ ସଜନି ବେଗ ଯିବା ।
ଭିଡ଼ ଗହଳରେ ପଶି ନ ପାରିବା ॥
କେହୁ ଯୁବତୀ ଧାଆଁଇ ଉନମତେ ।
ଧୂଳି ସାଉଁଟେ ପଣତ ଭୂମିଗତେ ॥
କୃଷ୍ଣ ଗମନକୁ ପଥ ପରିମଳେ ।
ଛଡ଼ା ଚନ୍ଦନ ନୟନ ଅଶ୍ରୁଜଳେ ॥
ଫୁଟି କବରୀ କୁସୁମ ବରସଇ ।
କୃଷ୍ଣ ଅନୁଭବେ ଚିତ୍ତ ବିଳସଇ ॥
ଉକାଉକ ହୋଇ ଧାଏଁ ଗୋପବଧୂ ।
ପଥେ ଦେଖିବା ଚାଲ ଗୋ ପ୍ରାଣ ବନ୍ଧୁ ॥
ଭିଡ଼ ଠାହଲେ ପୂରିତ ଗୋପ ଦାଣ୍ଡେ ।
ବାଳମେଳେ ରାମ କୃଷ୍ଣ ମଧ୍ୟ ମଣ୍ଡେ ॥
ଦେଖି ନୟନ ପିଛୁଡ଼ ନ ପାରନ୍ତି ।
ବିଧି ଅବିବେକ ବୋଲି ବିଚାରନ୍ତି ॥

ନଟବର-ବେଶ ଦେଖି ଗୋପୀ ଜନ ।
ଲାଜ ବିବେକ ତେଜିଣ ମୁଗ୍ଧମାନ ॥
ମନମଥ ବଳେ ପଶି ଚିତ୍ତ ଖେଳେ ।
ମନ ଅର୍ପିତ ନୟନ ଅବଲୋକିଲେ ॥
ଗୋପ ଗହଳେ ପଶିଣ ମିଶିଆଇ ।
କୁଚ କୁଙ୍କୁମ କସ୍ତୁରୀ ଘଷିଆଇ ।
ଚିନ୍ତୁ ଲବଣ୍ୟ-ଜଳରେ ନେତ୍ର-ମୀନ ।
ବୁଡ଼ି ଗାଡ଼ିବାକୁ ନ ଘେନନ୍ତି ପୁଣ ॥
ଶୀତ ତମାଳିଆ ଗାନ୍ଧ ବଚ୍ଛାମେଳେ ।
କୃଷ୍ଣ ନାଚ ତାଳ ସମ ଅଙ୍ଗ ଢାଳେ
ଧ୍ୱନି କଙ୍କିଣୀ କଙ୍କଣ ନୂପୁରରେ ।
ତନୁ ଭୂଷିତ ଗୋଧୂଳି-କର୍ପୂରରେ ॥
କଟି ଚଞ୍ଚଳକୁ ଫେର ଅଞ୍ଚଳରେ ।
ହେମ ମେଖଳା ମୁଖର ଘଣ୍ଟି ସାରେ ॥
ନାନା ରତ୍ନରେ ଘାଗୁଡ଼ି ମଣିପଟି ।
ମୋତିମାଳ ଗୁଞ୍ଜଫୁଲ ଗୋଟି ଗୋଟି ॥
ହେମଲତା ବେଣୀଫୁଲ ଓହଳାଇ ।
ଦୁଇ ପାଶକୁ ଓହଳ ପହଞ୍ଚଇ ।
ହାସ ଇଷିତ ଅପାଙ୍ଗ ଇକ୍ଷଣରେ ।
କେହୁ ସମର୍ଥ ଧଇର୍ଯ୍ୟ ରକ୍ଷଣରେ ॥
ହୃଦେ ଲମ୍ବେ ବୈଜୟନ୍ତୀ ବନମାଳ ।
କଣ୍ଠେ କଉସ୍ତୁଭ କର୍ଣ୍ଣେ କର୍ଣ୍ଣିକାର ।
ଝାଲ ଟୋପି ଟୋପି ଶୋଭେ ମୁଖଇନ୍ଦୁ ।
ନାସା ଢଳହଳ ମୋତି ସୁଧାବିନ୍ଦୁ ।
ଭାଲେ ଚନ୍ଦନର ବିନ୍ଦୁ ରଙ୍ଗ ଟିକା ।
କରେ କାମିନୀମାନଙ୍କୁ କାମଡ଼କା ।
ମଣ୍ଡି ମସ୍ତକ ବରହ ସ୍ତବକରେ ।
ପୁଷ୍ପ-ଗନ୍ଧ-ଶୋଭା ଚୂଳ ଆଗଭରେ ।
ରମ୍ଯ ଅଧରେଣ ଗୀତ ପଦେ ପଦେ ।
ଗୋପସୁତେ ତାଳ ଦ୍ୟନ୍ତି ଅତି ମୋଦେ ॥
କେହୁ ଦେଖି ନ ପାରଣ ଆଗେ ଧାଏଁ ।
ଉଚ୍ଚ ସ୍ଥାନରେ ଉଠିଣ ଧୀରେ ଚାହେଁ ॥
ଆଡ଼ ଉହାଡ଼ ବାଙ୍କରେ ଥାଇ କେହୁ ।
ହଜ ଯାଏ ତା ଚେତନା ଚାହୁଁ ଚାହୁଁ ॥
ପୀଢ଼ି ପ୍ରାଙ୍ଗଣ ମେଢ଼ରେ କେହୁ ଚାହିଁ ॥
ପୀଢ଼ା ପରେ ଚଡ଼ି ଚକ୍ର ଆରୋହଇ ।
ପୁର ପାଚେରିରେ ବସି ପନ୍ତି ପନ୍ତି ।
ପଶି ନ ପାରି ଭିତରେ ଯନ୍ତାଯନ୍ତ୍ର ॥
କେହୁ ଅଟ୍ଟାଳରେ ଥାଇ ନିହାରଇ ।
ମନ ବୁଦ୍ଧି ସବୁ କୃଷ୍ଣ ପାଦେ ଦେଇ ॥
ବ୍ରଜବାସୀ ଜଗି ପଥେ ଜୁଦା ଜୁଦା ।
ନନ୍ଦନନ୍ଦନ ଦେଖିଣ ବଡ଼ଶ୍ରଦ୍ଧା ॥
ଏମନ୍ତରେ ଆସିଣ ଧେ ନିକଟରେ ।
ପିତା ପାଦେ ଓଳଗନ୍ତେ କୋଳ କରେ ॥
ମୁଖେ ଚୁମ୍ବ ଦେଇ ଶିର ଆଉଁସଇ ।
ଲୁହ ବହିଣ ହୃଦୟେ ଉଲ୍ଲସଇ ॥ ୫୯୬ ॥
ଚହୁଁ ଜନନୀ ଚରଣେ ଗଡ଼ଯାଲି ।
ମାଏ ତୋଳ ପଣତରେ ଝାଡ଼ ଧୂଳି ॥
ଦ୍ୱାର ମର୍କତ-ଶିଳାରେ ବିଜେ କଲେ ।
ଅନ୍ନ ନିଉଛି ଆଳତି ବନ୍ଦାଇଲେ ॥
ପାଦ ପଖାଳିଣ ରାମକୃଷ୍ଣ ବସି ।
ମାଏ ବିଞ୍ଚିଣ ପୁଅଙ୍କ ଶ୍ରମ ନାଶି ॥
ଗୋପପୁଏ ବସ୍ତ୍ରମାନ ସମ୍ଭାଳିଲେ ।
ମାଏ ନେଇ ପୁତ୍ରମୁଖ ପଖାଳିଲେ ॥
ନାନା ସୁବେଶ କରିଣ ଭୋଜନରେ ।
ମେଳ ହୋଇ ଭୁଞ୍ଜି ନାନା ବ୍ୟଞ୍ଜନରେ ॥
ମିଷ୍ଟ ଅନ୍ନ ପରସନ୍ତି ଦୁଇମାଏ ।
ପୁତ୍ର ଅଧିକ ଭୁଞ୍ଜିବା ଶରଧାଏ ॥
ଦେଇ ଅଳପ ଅଳପ ଗୁଣ୍ଠିଆଇ ।
ନାନା ମତେ କହି ବୋଧି ଲଳଆଇ ॥
ଆଚମନ ସାରି ଭୁଞ୍ଜି ମୁଖବାସ ।
ଗାବ ଦୋହନ ନିମନ୍ତେ ପରବେଶ ॥
ଯେଉଁ ରୂପରେ ଦୋହନ ପ୍ରାତଃକାଳେ ।
ସେହିରୂପେ ଗୋଦୋହନ ବାଳମେଳେ ॥
କ୍ଷୀର ଘେନାଇଣ ପୁଣ ପୁରେ ଆସି ।
ଗୋପ ମଣ୍ଡଳେଣ ପିତା କୋଳେ ବସି ॥
ଗୁଣୀଜନଙ୍କ କଳା ଗୀତ ବାଦ୍ୟେ ।
ନାଟ ବହୁରୂପେ ହାସ ପାଦେ ପାଦେ ॥

ଦେଖି ଆନନ୍ଦ ବହୁତ ଗୋପଜନେ ।
ଛାଡ଼ି ପ୍ରମାଦ ହୋଇଣ ତୋଷ ମନେ ॥
ପିତା ଢେନ କରି ପୁତ୍ର ଆଗମନ ।
ଯତ୍ନେ କରାଇ ଜନନୀ ସୁଭୋଜନ ॥
ଶର୍ଯ୍ୟା ସଜଡ଼ ପଲଙ୍କେ ଶୁଆଇଲେ ॥
ସୁଖେ ଶଯ୍ୟାରେ ରଜନୀ ପୁହାଇଲେ ॥
ପ୍ରାତଃକାଳରୁ ଉଠିଣ ପୂର୍ବପରି ।
ଦୁହିଁ ସ୍ନାହାନ ଭୋଜନ ବନଗୃହୀ ॥
ଏଡ଼ ରୂପେ ନିତି କରି ଆଚରଣ ।
ବନେ ବନେ ସଖାମେଳ ଗୋଚାରଣ ॥
ଏମନ୍ତରେ ତହିଁ କେତେ ଦିନ ଗଲା ।
ଏକଦିନ ସେ ବହୁଳା ବନେ ମେଳା ॥
ବତ୍ସ ଚରାଇ ବିହାର ଖେଳ ରସେ ।
ଏକ ଆରକରେ ହାସ ପରିହାସେ ।
ସର୍ବେ ବିଦଗଧ ରସେ ଚତୁରାଇ ।
କୃଷ୍ଣ ସଙ୍ଗେ ମଧୁରସେ ମାତୁଲାଇ ॥
ଛଳଶ୍ଳେଷ ଉକତିରେ କଥା ଛନ୍ଦେ ।
ମନ ବର୍ତ୍ତିକ ଉଭୟୁ ଅନୁବନ୍ଧେ ॥
ଛିଦ୍ର ଛଦ୍ମ କଥାକେ ଛଳକରେ ।
ଭାଷାରସେ ଏକ ଆର ବାଳକରେ ॥
ଉତବାତ କରି କେହୁ ଭୁଟି ଭୁଟି ।
କଳି କରିଣ ହୁଅନ୍ତି ଉଠାଉଠି ॥
କେହୁ କାହା ସଙ୍ଗେ ହୋଇ ବୋଲା ବୋଲି ।
କଥା ନ କହିଣ ମୁହଁ ଫୁଲ ଫଲି ॥
କେହୁ କଥାଛିଦ୍ର ପାଇ ଉକାଉକ ।
କେହୁ ବଚନେ ବଚନେ ଯୋଖାଯୋଖି ॥
କାହା ପଛରେ କାହାକୁ କୁହାକୁହି ।
କେହୁ ଉଚିତ କହଇ ମୁହାଁ ମୁହିଁ ॥
ବାଦ ଲଗାଇଣ ହୋଇ ଜିଣାଜିଣି ।
ପ୍ରୀତି ଧନ ଦେଇ କେହୁ କିଣାକିଣି ॥
ଏକ ଆରକରେ ତହୁଁ ଶିଖା ଶିଖି ।
ବେଶ ଛଇଳ ଗୃଭୁଷି ଦେଖା ଦେଖି ॥
କଥା ଅଭାବରେ କେହୁ ରୁଷା ରୁଷି ।
ଭଲ ଭଲ ଲୋକେ ପଶି ତୋଷା ତୋଷି ॥

କେହୁ କାହା ସଙ୍ଗେ ମିତ ବନ୍ଧା ବନ୍ଧ ।
ହାର କଙ୍କଣ ବସନ ପିନ୍ଧା ପିନ୍ଧ ॥
କହୁ କହୁଣ ବଚନେ ହୁଡା ହୁଡ଼ ।
ଗୋଲ କରନ୍ତେଣ କେହୁ ଛଡାଛଡ଼ ॥
କେହୁ ମାଲ ସୁଛେ ହୋଇମରାମରି ।
ଠାଣମାଣେ ରହି ମୁଥ ମରାମରି ॥
ଆଡ ଗୁଡ଼ ବଙ୍ଗାଇଣ ବଙ୍ଗାବଙ୍ଗ ।
ଦନ୍ତଗୃପି ବାହୁ ମେଲ ଜଙ୍ଘା ଜଙ୍ଘ ॥
ବାହୁବଳରେ ହୁଅନ୍ତି କୋଡ଼ା କୋଡ଼ ।
ଭିଡ଼ା ଭିଡ଼ ହୋଇ ମହୀ ଗଡ଼ା ଗଡ଼ ॥
ଗଦା ଖଡ଼ଗ ଧରିଣ ସନ୍ଧା ସନ୍ଧ ।
କେହୁ ଉତ୍ତମ ମଧ୍ୟମ ଅଧାଅଧ ॥
ଚକା ଗୁଳୁଚ ବରଡ଼ା ପକାପକ ।
ଦଣ୍ଡା ଦ୍ୱୋହସ୍ତା ପଖିଆ ଠୁକା ଠୁକ ॥
ମହାଅଚଳ ପଥର ଟେକାଟେକ ।
ଯନ୍ତ୍ରାସନ୍ତ୍ର ଧନୁବାଣ ଝିଙ୍କାଝିଙ୍କି ॥
ଏକ ଆରେ ବାହେ ବାହା ପେଲପେଲ ।
ଆଣୁଭର ହୋଇ ଆଣ୍ଠେ ଠେଲା ଠେଲ ॥
ଠାଣମାଣେ ଟିପି ଟାଣ ଚଢ଼ା ଚଢ଼ ।
କନ୍ଧେ କାନ୍ଧ ଦେଇ ବାହା ମଡ଼ାମଡ଼ ॥
ତମ ତର୍ଜନାରେ ହୋଇ ହୁଆ ହୁଇ ।
ଦୁଇଆଡ଼େ ଯୋଏ ଥାଇ ଟିହାଟିହି ।
ବଳ ପ୍ରାକର୍ମ ଦେଖାଇ ଡ଼କା ଡ଼କ ॥
ସମବଳ ପାଇ ହୋଇ ଥକାଥକ ।
କରେ କରତାଳ ମାରି ଧୂଆଁ ଧୂଇଁ ।
ପଛେ ଗୋଡ଼ାଇଣ ହାତ ପୁଆପୋଇ ॥
ବାଦ କରିଣ ବୃଷକୁ ଉଠାଉଠି ।
ଫେଡ଼ି ନ ପାରିଣ ହାନ ମୁଠାମୁଠି ॥
ମାରି ପଳାନ୍ତେଣ ଧରି ଗୋଡ଼ା ଗୋଡ଼ ।
ଦୁଇ ହାତେ ମୁଥ ବିଧା କୋଡ଼ା କୋଡ଼ ॥
ହଣକ୍ଷଣି ହୋଇ ହାତେ ଅଡ଼ା ଅଢ଼ ।
ଗାଡ଼ବନ୍ଧେ ପଡ଼ି ମହୀ ଗଡ଼ାଗଡ଼ି ।
ଅଙ୍ଗେ ଅଙ୍ଗେ ନିବଡ଼ରେ ଜକାଜକ ।
ମାଲ ବିନ୍ଧାଣରେ ଛିଦ୍ର ଟକା ଟକ ॥

ଜଗି ଜାଜାଙ୍ଗ ତଳେରେ ଲୁଚାଲୁଚି ।
ଲଗାଲଗି କରେ କେହୁ ବଞ୍ଚାବଞ୍ଚି ॥
ଟାଣ କରି ଉପରେ କେହୁ ଖସାଖସି ।
ଦେଖି ତାଳି ମାରି ପୋଏ ହସାହସି ॥
ଏକ ଉପରେ ଆରେକ ଗଡ଼ାଗଡ଼ି ।
କେଉଁ କାଳନ୍ଦୀ ଜଳରେ ବୁଡ଼ାବୁଡ଼ି ।
କରତାଳି ମାରି ପାଣି [illegible]କାପକ ।
ସାତ ପାଞ୍ଚ ଦଶ ବାଶ ଛକାଛକ ॥
ବୁଢ଼ ଅଣ୍ଡାଳ ଚରଣ ଧରାଧରି ।
ଗ୍ରାହ ପ୍ରାୟ ଓଟାରିଣ ଉରାଉରି ॥
ବୁଡ଼ ପହଁରଣ ଥଳ ଘେନାଘେନ ।
ଭେଳା ଗୁଳପ ଚଢ଼ି କେହୁ ଅନାଅନ ॥
ସାରି ଶୁଆଙ୍କୁ କରିଣ ପଢ଼ାପଢ଼ି ।
ନାନାମତେଣ ପାରୁଆ ଉଡ଼ାଉଡ଼ି ॥
ଧରି ବାନର ବାଳକ ଖେଳାଖେଳ ।
କେହୁ ବୋଲେ ଗୁଡ଼ୁଡ଼ୁଅ ବେଳାବେଳ ॥
ଖିଁ ଖିଁ କରି ଡ଼ାଳେ ଡ଼ାଳେ ଡ଼ିଆଁ ଡ଼େଇଁ ।
ନିଜ ବାଳକ ଡ଼କାଇ କୁହା କୁହି ॥
ରାମକୃଷ୍ଣଙ୍କୁ କରନ୍ତି ଜଗାଜଗି ।
ବନଭୂମି ପଥ କେହୁ ମଗାମଗି ॥
କୁଞ୍ଜେ କୁଞ୍ଜେ ପଶି କେହୁ ଲୁଚାଲୁଚି ।
ଦେଖା ନ ଦେଇ ଅଳପ ବଞ୍ଚାବଞ୍ଚି ॥
ଲତାତରୁ ଉହାଡ଼େ କେ ଛପାଛପି ।
ଋଷି ରୂପ ଧରି ମାଳା ଜପାଜପି ॥
କରି ଦଅନ୍ତ କୁମରେ ଯାଚ ଯାଚ ।
ହସି ତାଳି ମାରି ପୋଏ ନଚାନଚ ॥
ନାନା ଫଳମାନ ଘେନି ଚାଖାଚାଖି ।
କେହୁ ଏକମେଳ କେହୁ ଭିନାଭିନ ॥
ଫୁଲମାଳ ଗୁନ୍ଥି ଉରେ ଲମ୍ବାଲମ୍ବି ।
କାହା ଫୁଲ ଚୋରାନ୍ତେ କେ ଚମାଚମି ॥
କେହୁ ଦେବତା ସ୍ଥାପିଣ ପୂଜା ପୂଜି ।
ନାନାଉପଚାରେ ମନ ମଜା ମଜି ॥
କେହୁ କାହାକୁ କରଇ ଲଗାଲଗି ।
କଳି କରନ୍ତେଣ କେହୁ ଭଙ୍ଗାଭଙ୍ଗି ॥

କେହୁ ଭ୍ରମର କରଇ ବୋଲାବୋଲି ।
କେହୁ ବୋଲଇ ଲଗିବା ପେଲା ପେଲି ॥
କେହୁ କାହାକୁ କରଇ ଭଙ୍ଗାଭଙ୍ଗି ।
ବନେ ବାଛୁରି ଚରାଇ ଫିଙ୍ଗାଫିଙ୍ଗି ॥
ନାନା କଉତୁକେ ପୋଏ ଉନମତ୍ତେ ।
ବନ ବିହାରି ଚରିତ ଯେତେ ଯେତେ ॥
ମଧୁମଙ୍ଗଳ, କୃଷ୍ଣର ଅନୁବାଦେ ।
କଥାଛଳେ ପରିହାସ ପଦେ ପଦେ ॥
ରାମ ସୁଦାମ ସଙ୍ଗରେ ହାସରସେ ।
ଏହିରୂପେ ଯୋଡ଼ ଯୋଡ଼ ପ୍ରୀତିବଶେ ॥
ବନେ ବନେ ବୁଲି ରହି ସ୍ଥାନେ ସ୍ଥାନେ ।
ନୀପମୂଳେ ତ୍ରିଭଙ୍ଗିରେ ବେଣୁସ୍ୱନେ ॥
କେତେବେଳେ ଖେଳ ରଚି କୁତୂହଳେ ।
ଶ୍ରମେ ବସନ୍ତି ଯାଇଁ ସେ ଗଛ ତଳେ ॥
କେତେବେଳେ ଫୁଲ ତୋଳି ମାଳ ଗୁନ୍ଥି ।
କେତେବେଳେ ଶ୍ରୀମୁଖ ପଖାଳନ୍ତି ॥
କେତେବେଳେ ବସ୍ତ୍ର ଲୋଡ଼ି ପାଣି ଦେଇ ।
କେତେବେଳେ ପତ୍ରଶଯ୍ୟା କରି ଶୋଇ ॥
ସ୍ଥାନ ନିର୍ମଳ ଦେଖିଣ କେଉଁଠାବେ ।
ଏକମେଳେ ଭୁଞ୍ଜି ବସି ପ୍ରିୟଭାବେ ॥
କେଉଁଠାରେ ଆରମ୍ଭିଣ ନୃତ୍ୟରଙ୍ଗ ।
ନଟବର ବେଶ ଯୋଡ଼ ଯୋଡ଼ ସଙ୍ଗ ॥
ଶ୍ରମେ ତୃଷିତ ଦେଖିଣ ରାମହରି ।
ମେଘମାନେ ଗଗନରେ ଛତ୍ର ଧରି ॥
ସଭା-ମାଧବୀମଣ୍ଡପ ତଳେ ବସି ।
ପରବାହିନୀ ବାଦନରସେ ରସି ॥
କେତେବେଳେ ସଭା ଭାଙ୍ଗି ବସ୍ତ୍ର ଲୋଡ଼ି ।
ବାକ କରିଣ ବୃକ୍ଷରୁ ଫଳ ପାଡ଼ି ॥
କେହୁ ଝିଙ୍କିଣ ହଲାଇ ଦୋହଲାଇ ।
ଧୀରେ ଚମକ ଧମକ ଓହଲାଇ ॥
କେହୁ ବୃକ୍ଷେ ଚଢ଼ି ତୋଳେ ଡ଼ାଳେ ଡ଼ାଳେ ।
ଟେକା ଫୋପାଡ଼ି ମାରେ କେ ବାହୁବଳେ ॥
କେହୁ ତଳରୁ ଆଙ୍କୁଡ଼ି ବଢାଇଣ ।
ଡ଼ାଳେ ଲଗାଇ ଝାଡ଼ଇ ନୁଆଇଁଣ ॥

କେହୁ ବାହାସ୍ଫୋଟେ ମାରି ଫଳ ଝାଡ଼େ ।
ତରୁ ଝିଙ୍କି ପେଣ୍ଡା ଛିଣ୍ଡ଼ି ତଳେ ପଡ଼େ ॥
ତାଳ ନଟିକାଳ ବେଲ ବରକୋଳି ।
ଗୁର ରସାଳ ବକୁଳ ଭଳଭଳ ॥
ଜାମ୍ବୁ କେଉଠ କପିଥ କରମଙ୍ଗା ।
ଗୁଆ ଖଜରି ଆଦ୍ୟ ଏ ଡେଙ୍ଗା ଡେଙ୍ଗା ॥
ବଳ ବୁଧିରେ ତୋଳନ୍ତି ଏକ ଆରେ ।
ମହା କପିଥ ତରୁଏ ଫଳଭରେ ।
ଯାହା ଉପାୟେ ବଳରେ ନ ପାରିଲେ ।
ସୋଏ ଶ୍ରୀକୃଷ୍ଣ ଛାମୁରେ ଜଣାଇଲେ ॥
ଦେଖ ଉଚ୍ଚ ବିସ୍ତାର ଏ ମହାତରୁ ।
ଫଳ ପାଚି ସୁବାସଇ ଖଣ୍ଡେ ଦୂରୁ ॥
ତଳୁ ଆଙ୍କୁଡ଼ି ବଢାନ୍ତେ ନ ପାଇଲୁ ।
ଚଢି ତୋଳି ତ ସାହସ ନ ବଳିଲୁ ॥
ଫଳ ନ ଝଡ଼ଇ ଯେତେ ହଲାଇଲେ ।
ବଡ ବଡ଼ ସାମରଥ ଓହୋଳିଲେ ॥
ଆମ୍ଭେ ଖାଇବା କପିଥ ମନେ ଅଛୁ ।
ତୁମ୍ଭ ଭାଗରେ ହୋଇଲା ଏହୁ ଗଛୁ ॥
ଦେବ କପିଥ ଜଣକେ ଦଶ ଦଶ ।
କୃଷ୍ଣ କୁମାରଙ୍କୁ ବୋଲେ ହସ ହସ ॥
ଚଉଦିଗକୁ ହୋଇଲେ ଅନା ଅନା ।
ବତ୍ସ ଶିରେ ଅଛୁ ଏକନଖୀବାନା ॥
ମାୟାରୂପ ଧରି ବନେ ବତ୍ସାସୁର ।
ମନ୍ଦ ଶନ୍ତ ଗମେ କୃଷ୍ଣ ସନ୍ନିଧିର ॥
ଚିହ୍ନି ତରକ ଜାଣିଲେ ନନ୍ଦବତ୍ସ ।
ମତେ ମାରିତ ଅସୁର ଆୟୁଅଛୁ ॥
ଧାଇଁ ଧରି ବେନିପାଦ ବୁଲାଇଲେ ।
ନେଇ କପିଥ ଗଛରେ କଚାଡ଼ିଲେ ॥
ଘୋର ରଡ଼ି କରି ଦୈତ୍ୟ ପ୍ରାଣ ଛାଡ଼େ ।
ସବୁ କପିଥ ବୃକ୍ଷରୁ ପଡ଼େ ଝଡ଼ି ॥
ଦେଖି ସୋଏ ମନେ ଆନନ୍ଦିତ ପାଇ ।
ହେଣ୍ଡି ମାରିଣ ନାଚନ୍ତି ଗୀତ ଗାଇ ॥
ପୁଣି ଦୈତ୍ୟରାଜ ମୃତପିଣ୍ଡ ଦେଖି ।
ସୋଏ ଭୟ ତେଜି ମନେ ମହାସୁଖୀ ॥

ଖାଇ କପିଥ କୃଷ୍ଣଙ୍କୁ ପରଶଂସି ।
ଏବେ ନିର୍ଭୟ ହେଲୁଇଁ ବନେ ପଶି ॥
କିସ କରିବ ଆମ୍ଭଙ୍କୁ କଂସରାଏ ।
କୃଷ୍ଣତେଜ-ଅନଳକୁ ତୃଣ ପ୍ରାୟେ ॥
କାହା ଛାରକୁ ଭୟ ଯେ ଅଛୁ ଆଉ ।
ସର୍ବ ଶୁଭେ ଏକା ଆମ୍ଭ କୃଷ୍ଣ ଥାଉ ॥
କେହୁ ବୋଲଇ ପୂତନା ଘାଇ ଏଥି ।
କଂସ ବୋଲେ ଆସିଥିଲେ ଛଳ ବଥି ॥
କେହୁ ବୋଲଇ କେମନ୍ତେ ଗଲା ଚିହ୍ନା ।
କେହୁ ବୋଲେ ଗୋବର୍ଦ୍ଧନ ମଣ୍ଡି ବାନା ॥
ଆମ୍ଭମାନଙ୍କୁ ତା ମନ ପାଇଅଛୁ ।
ଏହାସଙ୍ଗେ ଗଲେ ଭୟ ନାହିଁ କିଛୁ ॥
ପଶି ନ ପାରେ ଯେ ବନେ ଦେବାସୁରେ ।
ବନେ ଆସିବାକୁ ଡ଼ରି ନିରନ୍ତରେ ॥
ଏବେ ବିହରୁ ଅଛଇଁ ଇଚ୍ଛାମତେ ।
ଫଳ ପୁଷ୍ପ ତୋଳୁ ଥାଇଁ କେତେ କେତେ ॥
ଯାହା ଜନ୍ମେ ଦେଖି ଖାଇ ନ ଥିଲୁଇଁ ।
ତିନିପୁରେ ଅପୂର୍ବ ଯେ ଏଥିପାଇଁ ॥
ପାରିଜାତ ନିନ୍ଦେ ଏଥି ପୁଷ୍ପବାସ ।
ଅମୃତରୁ ସ୍ୱାଦୁ ଅଟେ ଫଳରସ ॥
କୃଷ୍ଣ ବାହୁବଳେ ଆସି ଭୋଗ କରି ।
ତିନିପୁରେ ଅଛୁ କେହୁ ଆମ୍ଭ ସରି ॥
ବାଡ଼ ବୁଲାଇଣ ଉଆଁଟଗ ମାରି ।
ବୀର ଡାକରେ ବଜାଇ ଗାଲ ଭୁରି ॥
ଜୟଶଙ୍ଖ ବଜାଇଣ ବାହୁଡ଼ିଲେ ।
ଦେବଗଣ ପୁଷ୍ପ ଶିରେ ନିଉଡ଼ିଲେ ॥
ପଥେ ମିଳିଲେ ଆସିଣ ବ୍ରଜବାସୀ ।
ରାମକୃଷ୍ଣ ରୂପ ଦେଖି ଚିତ୍ତ ତୋଷି ॥
ମାତା ପିତା ଚରଣରେ ପ୍ରଣମିତ ।
ବତ୍ସାସୁର ବଧ ଶୁଣି ଆନନ୍ଦିତ ॥
ଭୟେ ଥରଇ ଶୁଣିଣ ଯଶୋବନ୍ତୀ ।
କୃଷ୍ଣ ମୁଖ ଚୁମ୍ବି ଶିର ଆଉଁସନ୍ତି ॥
ବତ୍ସ ରଖା ଯେତେ ହେଲା ତେତେ ହେଉ ।
ଟାଇଙ୍କର ନେମଲେ ଏବେ ବତ୍ସ ଯାଉ ॥

ସଞ୍ଜ ଆସରେ ଗାଈ ଚଲେ ନୋହୁ ଦୁହାଁ ।
ଏକାବେଳେ ଦୁଧ ତ ନୋହେଁ ମୁହାଁ ॥
ଯହିଁ ଏତେ ଭୟ ତହିଁ ଯିବନି କେ ।
ଏବେ ମରିବ ଅଧିକ ଦକଦକେ ॥
ପୋଏ କହନ୍ତି ବଡ଼ମା ଗରବରେ ।
ମାଏ କେ ମମ ଅଛଇ ଜଗତରେ ॥
କାହା ବଳେ ଆମ୍ଭଙ୍କୁ କେ.କସ କରୁ ।
ଭୟ ନାହିଁ ତନୟର ହନ୍ତ କରୁ ॥
ଦୈତ୍ୟ ମାରଣ ନିର୍ଭୟ କରାଇବୁ ।
କଂସ ବିନାଶିଣ ଛତ୍ର ଧରାଇବୁଁ ॥
ଦେଖା ହସି ବୋଲନ୍ତି ରେ ତମାଳଆ ।
ଏତେ ନ କହ ଗାରମା ବଡ଼ାଣିଆ ॥
ମୋର ଅଧିକକୁ ଲେଜା ନାହିଁ ଭଲେ ।
ସବୁ ପାଇବ ଜୀବନେ ଜିଇଥିଲେ ॥
ଏତେ କହିଣ କୃଷ୍ଣଙ୍କୁ ଘେନଗଲେ ।
ସ୍ନାନ ସୁବେଶ କରାଇ ଭୁଞ୍ଜାଇଲେ ॥
ଗୋଦୋହନ- ସନ୍ଧ୍ୟାଲୀଳା- ସମୟରେ ।
ନିଦ୍ରା ଅଳସ ଶୟନ ପଲଙ୍କରେ ॥
ଆରଦିନ ସେହିରୂପେ ବନ ବିଜେ ।
ରାମକୃଷ୍ଣ ସଙ୍ଗେ ଗୋପସୁତ ମାଝେ ॥
ପଥେ ପାଉଛନ୍ତି ଆସିଣ ଗୋପଲୋକେ ।
ନେତ୍ର ନିଶ୍ଚଳ କରିଣ ଅବଲୋକେ ॥
ଦେଖିବାର ଶରଧାରେ ମତା ମତ ।
ଭିଡ଼ ଗହଳେ ପଶିଣ ଜନ୍ତାଜନ୍ତ ॥
ନଗ୍ର ଛାଡ଼ିଣ କାନନେ ପରବେଶ ।
ପଥ ନିରେଖିଣ ବନ-ଜୀବେ ତୋଷ ॥
ରମ୍ୟ ଉତ୍ତମ ରହସ୍ୟ ସ୍ଥାନେ ସ୍ଥାନେ ।
ବିନୁ ବିନୁ ଖେଳ-ଲୀଳା ଅନୁଆନେ ॥
ବତ୍ସ ଚରାଇ ଯମୁନାପାଣି ଦେଇ ।
ଗୋପ କୁମାର ମେଳରେ ବେନି ଭାଇ ॥
ବୁଲି ଆସନ୍ତେ ଅତଡ଼ାହଦ ବାଙ୍କେ ।
ଦେଖି ଅତି ଭୟଙ୍କର ଏକ ବକେ ॥
ବତ୍ସ ବାଳକ ଓଗାଳି ଆଗେ ଝାମ୍ପେ ।
ଡଣାବାତ ବତାସରେ ମହୀ କମ୍ପେ ॥

ଥଣ୍ଟ ବିସ୍ତାରଣ ଆଗେ ଓଗାଳିଲା ।
ଦୋର ଗରଜନେ ଦିଗ ଆଚ୍ଛାଦିଲା ॥
ଡେଣାପିଟି ମହୀ-ଧୂଳି ଉଡ଼ାଇଲା ।
ରବିକିରଣ ଗଗନେ ଉଡ଼ାଇଲା ॥
କଇଳାସ ଗିରି ପ୍ରାୟେ ଦୈତ୍ୟ କାୟ ।
ଦେଖି କ୍ରମରେ ପାଇଲେ ମହାଭୟ ॥
କୃଷ୍ଣ ଶ୍ରୀମୁଖରେ ଜଣାନ୍ତି ଏକ ଆରେ ।
ଦେଖ ଆଚମ୍ବିତ ରୂପ ଭୟଙ୍କରେ ॥
ବନ ଯମୁନାରେ ପଶି ମଣ୍ଡିଲଇ ।
ଦିନେ ଏମନ୍ତ ଦେଖି ତ ନ ଥିଲଇଁ ॥
ଶୁଣି କୁମାରଙ୍କୁ କୃଷ୍ଣ ପଛ କରି ।
କେଶ ବାସ ବାନ୍ଧ ଦୃଢ଼େ ଆଗସରି ॥
ମନ୍ଦ ମନ୍ଦ ହାସେ ବକ ପାଶେ ମିଳି ।
ରାହୁ ପୂର୍ଣ୍ଣଶଶଧର ପ୍ରାଏ ଗିଳି ॥
ଦେଖି କୁମରେଂ ପଡ଼ିଲେ ମହୀଲୋଟି ॥
ଗୁଣ ଗାଇ ବାହୁନାଇ ହିଆ ଫାଟି ॥
କେହୁ ହାହା କୃଷ୍ଣ ବୋଲି ହିଆ କୋଡ଼ି ।
କେହୁ ଛେଦନା ସ୍ଥାବର ପ୍ରାଏ ପଡ଼ି ॥
କୃଷ୍ଣଚନ୍ଦ୍ର ବିନୁ ଶୋକେ ଗୋପବାଳେ ।
ଦିଗ ନ ଦିଶଇ ମହା ଅନ୍ଧକାରେ ॥
ଜଳବିହୁନରେ ସ୍ଥଳେ ମୀନ ପ୍ରାଏ ।
ସବୁ ନୟନ ଜୀବନ କୃଷ୍ଣ ଦେହେଁ ॥
ଏକ ଉପରେ ଆରେକ ପଡ଼େ ଢକେ ।
ହା ହା ଜୀବନ ଆମ୍ଭର ବନମାଳୀ ॥
ତୋର ବିନେ କି ରହିବୁଁ ଦେହ ଧରି ।
ପୁଣି ଲେଉଟି କି ଯିବୁଁ ଗୋପପୁରୀ ॥
ଧିକ ଧିକ ଏ ଜୀବନ ଯାଉକନା ।
ଏବେ ବିଅର୍ଥ ଜୀବନ ଯାଉକନା ॥
କାହା ସଙ୍ଗେ ବଞ୍ଚିବା ନଶିଦବା ।
ହାସ-ବଚନ କାହାକୁ କହୁଥିବା ॥
ମନ ଜାଣି କେ ଆମ୍ଭଙ୍କୁ ଶିଖାଇବ ।
ନାନା ଆଚମ୍ବିତମାନ ଦେଖାଇବ ॥
ସ୍ୱାଦ ଗୁଖିଣ ଆମ୍ଭର ମୁଖେ ଦେଇ ।
ଆମ୍ଭ ଅଧରୁ ଛଡ଼ାଇ ନେଇ ଖାଇ ॥

ଛଡ଼ିଲେ ଅନ୍ତର ନ କଲେ ଭଜନରେ ।
ଗୁଣ ଗୁଣି କେ ଜୀବନ ଧରି ପାରେ ॥
ଆହା ଗୋକୁଳ-ନାୟକ ଜୀବଧନ ।
କେଉଁଣେ ଗଲୁ କରି ଅଣଅବଧାନ ॥
କଂସ ବାରତା କହିବୁଁ ଗୋପେ ଯାଇଁ ।
ଶୁଣି ଜୀବନ କ୍ଷଣେ ରଖିବେ ନାହିଁ ।
ନନ୍ଦ ଯଶୋଦା ଜୀବନ ଯିବ ଉଡ଼ି ।
ଗୋପ ସମ୍ପଦ ଯାକହିଁ ଯିବ ବୁଡ଼ି ॥
ଆହା ମେଳଶିରୋମଣି ପ୍ରାଣସଖା ।
କେଣେ ଲୁଚିଲୁ ବଦନ ବାରେ ଦେଖା ॥
ଆମ୍ଭେ ଫୁଟିଲେ ବସାଉ ତରୁତଳେ ।
ବସ୍ତ୍ର ଅଡ଼ାଇଣ ଆଣୁ ଏକମେଳେ ॥
ନାନା ହାସରସ କହି ଶତ୍ରୁ ତୋଷୁ ।
ଆମ୍ଭମାନଙ୍କୁ ଶୁଆଇ ଜଗି ବସୁ ॥
ନାନା ସ୍ୱାଦୁଫଳ ତୋଳି ଆଣି ଦେଉ ।
ମନ ବିଷାଦ ବେଦନା ହରି ନେଉ ॥
ନାନା କଉତୁକ ଲୀଳା ହାସରଙ୍ଗେ ।
ମାଲ ବନ୍ଧାଣ ଲଗିବୁଁ କାହା ସଙ୍ଗେ ॥
କାହା ନାଶବାକୁ ତାଳ ପକାଇବୁ ।
କାହା ଗଳେ ଫୁଲମାଳ ଲମ୍ବାଇବୁଁ ॥
ବନେ ବିହରିବୁଁ କାହା ବାହୁବଳେ ।
ଖେଳ ଖେଳିବୁଁ କା ସଙ୍ଗେ କୁତୂହଳେ ॥
ଅତି ବିକଳେ ବାଳକେ ବାହୁନାଇଁ ।
କହ୍ନା ଆମ୍ଭର ଜୀବନ ଯାଉ ନାହିଁ ॥
ଏକ ଉପରେ ଆରେକ ପଡ଼ି ଅଛି ।
ଗୁଣ ଗାଇ କେ ଅବନୀ ଗଡ଼ୁ ଅଛି ॥
ବୁକୁ କୋଡ଼ ହୋଇ ମହୀ ଶିର ମାରି ।
ମୂର୍ଚ୍ଛା ଯାଏ କେ ଡାକଣ ନାମ ଧରି ॥
ଉଚେ ରୋଦନ କରନ୍ତି ଅତିଶୋକେ ।
କେଶ ବାସ ଅସମ୍ଭାଳ ଏକେ ଏକେ ॥
ନେତ୍ର ଲୋତକେ ଅବନୀ କରଦନ ।
ଗଡ଼ବାରେ ତୃଣ ଲତା ମରଦନ ।
ବତ୍ସ ତୃଣ ତେଜ ନେତ୍ରୁ ନୀର ବହେ ।
ଖଗ ମୃଗ ସ୍ତମ୍ଭୀଭୂତ ହୋଇ ରହେ ॥

ବୃଷଭମାନଙ୍କ ଅଙ୍ଗରୁ ଧାର ସ୍ରବେ ।
କୃଷ୍ଣ ଅଭାବୁ ଦୁଃଖିତ ସର୍ବଜୀବେ ॥
ବକା ହିକଟେ ଶୋକରେ ଗୋପବାଳେ ।
କୃଷ୍ଣ ଗିଳିଲୁ ଆମ୍ଭଙ୍କୁ ଗିଳ ଢାଳେ ।
ତାର ସଙ୍ଗରେ ଆମ୍ଭଙ୍କୁ ବେଗେ ଥୁଅ ।
ଏତେ ନିଷ୍ଠୁର ହୃଦୟ ଆଜ ନୁହ ॥
ଶ୍ୟାମ ଚିକ୍କଣ ମୂରତି ମନୋହର ।
କେଉଁରେ ଗିଳିବାକୁ ମନ ହେଲା ତୋର ॥
କେହୁ ଛଟାଗୋଳ କଥା ଭାଷିଆଇ ।
କେହୁ ଗିଳ ବୋଲି ମଥା ଘଷିଆଇ ॥
ବକା କୃଷ୍ଣଙ୍କୁ ଗିଳଣ ଅଣକତେ ।
ପ୍ରାଣ ସନ୍ଧିରେ ଗୋବିନ୍ଦ କଣ୍ଠାଗତେ ॥
ମହାପ୍ରଳୟ ଅନଳ-ତେଜ ଜାଣି ।
ଗିଳ ନ ପାରି ଚଗଟି ଆକ୍ଷି ବେନି ॥
ତେଣୁ ପିଟିଣ ହୋଇଲା ଛଟପଟ ।
ଉଦଗାରି ପକାଇଲା କୃଷ୍ଣ କଣ୍ଠ ॥
କୋଟି ସୂର୍ଯ୍ୟପ୍ରାୟ ତେଜ ପ୍ରକାଶଇ ।
ପୁଣି ପଛପୁଆ ଦେଇ ପଳାଇଇ ॥
ଗୋପକୁମରେ ଦେଖିଣ ବେଗେ ବେଢ଼ି ।
ବକ ଅଙ୍ଗରେ ବୁଲାଇ ପିଟି ବାଡ଼ି ॥
କେହୁ ମୁଥ ବଧା ନେଇ ପ୍ରହାରଇ ।
କେହୁ ଚରଣ ମାରିଣ ଗରଜଇ ॥
କୃଷ୍ଣ ଧଇଲେ ଚଞ୍ଚୁ ତା, ଦୁଇକରେ ।
ଧୁଞ୍ଚ ଧୁଞ୍ଚ ପେଲାପେଲି ବଳଆରେ ॥
ଦୈତ୍ୟ ବଳ କ୍ଷୀଣ ହୋଇ ନ ଚଳଇ ।
ପ୍ରାଣ ଯିବା କାଳେ ମତ୍ତ ହୋଇ ଚଳଇ ।
ଦୁଇ ଫାଳ କରି ଚିରି ପକାଇଲେ ।
ଜୀବ ଯାଆନ୍ତେ ଶ୍ରୀଅଙ୍ଗେ ରଖାଇଲେ ॥
ଦେଖି ଆନନ୍ଦେ ନାଚନ୍ତି ଗୋପବାଳେ ।
ବାଇ ଜୟଶଙ୍ଖ ଶିଙ୍ଗା କୁତୂହଳେ ॥
କୃଷ୍ଣ ଅଲୌକିକ ପରାକ୍ରମ ଦେଖି ।
ପୋଏ ଭୟ ତେଜ ମନେ ମହାସୁଖୀ ॥
କେହୁ ବୋଇଲେ କୃଷ୍ଣ ବଡ଼ ବଳଆର ।
କେହୁ ବୋଲେ କେତେ ବଳ ବକ ଛାର ॥

କେହୁ ବୋଲଇ କୃଷ୍ଣଙ୍କୁ ଦେଲା ଗିଳି ।
ମୋର ବାଡ଼ି ଘାତେ ଗିଳା ଉଦଗାରି ॥
କେହୁ ବୋଲେ ଗୋବର୍ଦ୍ଧନମଲ୍ଲ ଶିକ୍ଷା ।
ବେଳେ ବେଳେ ଆପଦରୁ କରେ ରକ୍ଷା ॥
କେହୁ ବୋଲେ ମୋ ଚରଣ ପ୍ରହାରରେ
ଚଳି ନ ପାରି ଥକ୍କିତ ସେ ପ୍ରାଣରେ ॥
କେହୁ ବୋଲେ ଖାଇ ମୋର ମୁଥଘାତ ।
ଅଧା ପ୍ରାଣ ହୋଇ ହେଲା ସ୍ତମ୍ଭୀଭୂତ ॥
କେହୁ ବୋଲଇ ମାଇଲି ଯେଉଁ ବାଧା ।
ପିଠି ଗୋଳ ହୋଇ ହେଲା ପେଟ ସୁଢା ॥
ପ୍ରାଣ ଛାଡ଼ିଲେ ଥିଲା ଯେ ଆଁ ଆଁ କରି ।
ମଳପିଣ୍ଡ ସିନା ହରି ଦେଲା ଶରି ॥
କେହୁ ବୋଲେ ଆମ୍ଭ ସବୁ ଧର୍ମବଳେ ।
ବାରେ ମରଣୁ ବର୍ତ୍ତିଲା ନନ୍ଦବାଳେ ॥
ଏତେ ବୋଲିଣ ବଣରୁ ବାହୁଡ଼ିଲେ ।
ବକ ପିଣ୍ଡରେ ଲଉଡ଼ି ପ୍ରହାରିଲେ ॥
ବତ୍ସ ଆଗରେ ଚଳାଇ ପଛେ ଗଲେ ।
ମଧ ମୃଦୁ ଶୋଭା ଗୋପସୁତ ମେଳେ ॥
ଜାଣି ପଥରେ ମିଳିଲେ ବ୍ରଜବାସୀ ।
ଚନ୍ଦ୍ର ଚାହିଁଣ ଚକୋର ଯେସନେ ତୋଷି ॥
ବତ୍ସ ସମ୍ଭାଳିଣ ଗୋପ ଯେଝା ପୁରେ ।
କୃଷ୍ଣ ମହିମା କହନ୍ତି ପ୍ରତିଜ୍ଞାରେ ॥
ବକା ମରଣ ଶୁଣିଣ ଗୋପଲୋକେ ।
ଅତି ହରଷ ବିରସ ଏକେ ଏକେ ॥
କେହୁ ପରତେ ନ କରେ ବାଳ ବୋଲେ ।
ଯାକୁ ନ ପାରନ୍ତି ମହା ମହା ମଲ୍ଲେ ॥
ନନ୍ଦବାଳକ କେମନ୍ତେ ନାଶ କଲା ।
ଏହୁ କଥା ତ ମନକୁ ନ ଆସିଲା ।
କଂସରାଜନ ଯାହାର ବାହୁବଳେ ।
ଜିଣି ଜଗତ ସାଧିଲା ଅବହେଳେ ॥
ଏହୁ ବାଳକେ ମାଇଲେ କଉତୁକେ ।
ବକାସୁର ନୋହେ ସେହୁ ଆନ ବକେ ॥
ଯୋଏ ବୋଲନ୍ତି ପର୍ବତପ୍ରାପ୍ତ ଦେହ ।
ଦେବାସୁରେ ନ ପାରନ୍ତି ଆଗେ ରହି ॥

ଚୀର ଚିରା ପରି ହରି ଶରି ଦେଲା ।
ଦୁଇ ଫାଳ ହୋଇ ନିଜ ରୂପେ ମଲା ॥
କେହୁ ବୋଲେ ସନ୍ତୋଷରେ ପଞ୍ଚମୁଣ୍ଡ ।
ଗୋବର୍ଦ୍ଧନମଲ୍ଲ ଦେଲେ ଏହୁ ଦଣ୍ଡ ॥
ସେହୁ ଲଉଡ଼ି କହ୍ନାଇ ଅଛି ପାଇ ।
କୃଷ୍ଣେ ଦାନବ ଜୟ ତେଣୁ ନାହିଁ ॥
କୃଷ୍ଣ ଗୁଣକୁ ପ୍ରଶଂସି ପୌର୍ଣ୍ଣମାସୀ ।
ଯଶୋଦାର ଆଗେ କହୁଛନ୍ତି ବସି ।
ତୋର ପୁତ୍ର ବାହୁବଳେ ଗୋପଜନେ ।
ଧନ ସମ୍ପଦ ବର୍ଦ୍ଧନ ଦିନେ ଦିନେ ॥
ପ୍ରାତୁଁ ଉଠିଣ ବଦନ ନିରେଖନ୍ତି ।
ମନସନ୍ତାପ ବିୟୋଗ ଉପେଖନ୍ତି ।
ଢଳ ତାପ ଯେଣୁ ଚାହିଁ ନ ଲାଗଇ ।
ତେଣୁ କରି ସର୍ବ ମନ ସରାଗଇ ॥
ଆଜ ଯାହା କଲା ବଡ ଆଚମ୍ବିତ ।
ବକାସୁର ନାମେ ମହାବଳ ଦୈତ୍ୟ ॥
ଜଳଘାଟେ ଜଗି ବତ୍ସ ବାଳ ଗିଳେ ।
କୃଷ୍ଣ ଚିରି ପକାଇଲା ଦୁଇ ଫାଳେ ॥
ବତ୍ସ ବାଳକୁ ଜୀଆଁଇ ଆଜ ଦେଲା ।
ଗୋପସମ୍ପଦ ନୋହିଲା ସରିଥିଲା ॥
କ୍ଷୀର ଖାଇଣ ଅଛଇ ତୋର ତହୁଁ ।
ଦେହ ଦାନବେ ଅଜେୟ ହେବ ସେହୁ ॥
ତୁହି ସତୀ ସାଧବୀ ଯେ ଭାଗ୍ୟବତୀ ।
ଅନୁରୂପେ ପୁତ୍ର କଲୁ ଉତପତ୍ତି ॥
ମନ୍ଦ ଚିନ୍ତିଣ ମରିବେ ଦୁଷ୍ଟଗଣେ ।
ଦେଖି ବୋଲନ୍ତି ସବୁ ତୋ କଲ୍ୟାଣେ ॥
ମୋର ଯଶ ପଉରୁଷ କଛି ନୋହୁ ।
ତୁମ୍ଭ ପଦରଜ ଯେବେ ଛୁଇଁଥାଉ ॥
ଆଉ ଅଧିକ ମୋହର ଲୋଡ଼ା ନାହିଁ ।
ଦୁଃଖେ ସୁଖେ ବଞ୍ଚିଥିବ ମୁଖ ଚାହିଁ ॥
ଏହି ମତେ ଆନନ୍ଦ ପ୍ରୀତିଦିନେ ।
ବତ୍ସ ବାଳ ଘେନ ହରି ବିଜେ ବନେ ॥
ମଧୁମଙ୍ଗଳର ସଙ୍ଗେ ପରିହାସେ ।
ବକ୍ର ଉକତି ଇଙ୍ଗିତ ନାନାରସେ ॥

କେହୁ ଦୋସଡ଼ା ବସନ ନେଇ ପଛେ ।
ଆରେକକୁ ଦେଖାଇଣ କହେ ମିଛେ ॥
କେହୁ ଖସି ପଳାଇଲା ଧରୁ ଧରୁ ।
କେହୁ ବାସ ଚୋର ଶବ୍ଦ ବୋଲେ ଦୂରୁଁ ॥
କାନ୍ଧିଁ ପକାଇଲୁ ଶତ୍ର ବାତୁଳରେ ।
ଆଳ ଲଗାଉ ନ ପାଇ ଏତେବେଳେ ॥
ଶୁଣି ସୁବଳ ବୋଲଇ ପଛେ ଥିଲ ।
କାହା ବାସ ପଡ଼ିଅଛି ନ ଛୁଇଁଲ ॥
କୃଷ୍ଣ ବୋଲନ୍ତି ବନ୍ଧୁ ଏ ଭ୍ରମ ହେଲା ।
ବାସ ଖସି ପଡ଼ନ୍ତେଣ ନ ଜାଣିଲା ॥
ଖଣ୍ଡେ ଦୂର ସିନା ଯାଇଁ ଘେନ ଆସ ।
କୁମାରଙ୍କୁ ଠାରି ଦେଇ ହସ ହସ ॥
ସତ ମଣି ବନ୍ଧୁ ପଛ ଅନୁସରି ।
କଣ୍ଠ-ଫଳାଂଶରେ ବନ୍ଧୁ ବାସ ଦଳି ॥
ଖଣ୍ଡେଦୂର ଯାଇ ବାସ ନ ପାଇଲା ।
ଟଳ ମୁଖ କୋକନଦ କମ୍ପାଇଲା ॥
ବସୁଦାମ ବାସ ଯାଚି ଦେଲା ନେଇ ।
ପଥେ ଯାଇ ଘେନ ଆସିଥିଲି ମୁହିଁ ॥
କୃଷ୍ଣ ବୋଲେ ପୁଣି ଏବେ ନ ପକାଅ ।
ବାସ ପାଇଲ ତ ଆଉ ନ ସକାଅ ॥
ଅଙ୍ଗ ଘୋଡ଼ାଇଣ ବାସ ବେଢାଇଲା ।
ବନ୍ଧୁ କୃଷ୍ଣ କରୁଁ ବେତ ଛଡ଼ାଇଲା ॥
ପୋଏ ଦୋଖି ପଳାଇଲେ କରି ଭୟ ।
କଣ୍ଠୁ ପ୍ରତାପ ତାପିତ ବନ୍ଧୁ କାୟ ॥
ନଖେ ବିଦାରି ହୋଇଣ କୁଣ୍ଡିଆଇ ।
କୃଷ୍ଣ ହସନ୍ତି ବଦନ ମୁହଆଇ ॥
ଗଡ଼ଗଡ଼ାଇ ଅବନୀ ନଟଗାଳ ।
ଅଟ୍ଟହାସରେ କୁମରେ ଦେଇ ତାଳ ॥
ଦେଖୁଁ ଦେଖୁଁ ଫୁଲି ଗଲା ଦେହ ଗୋଟି ।
ଏବେ ହେଲେଣି ପରା ହେ ମୋଟାମୋଟି ॥
ଶୁଣି ଧଇର୍ଯ୍ୟ ଧରିଣ ବୋଲେ ବନ୍ଧୁ ।
ଆରେ ମୂଢ଼େ ଆମ୍ଭେ ଯଜ୍ଞବେଦୀ ଅଟୁଁ ॥
ସାନ୍ଦୀପନି ଦେଲେ ଏହି ବାସ ଗୋଟି ।
ଘୋଡ଼ ହୋଇଲେ ଅବନୀ ଯେବେ ଲୋଟି ।
ଯଶ, ଆୟୁଷ ବର୍ଦ୍ଧନ ପୁଷ୍ଟି କାୟେ ।
ଯେତେବେଳେ ଯାହା ଇଚ୍ଛା ତାହା ପାଏ ॥
ତେଣୁ ହଜନ୍ତେ ବସନ କ୍ଷୋଭ ପାଉଁ ।
ଜାଣି ଥିଲେ କି ଯାଚି ଦିଅନ୍ତି ଆଉ ॥
ଆଉବେଳେ ଆମ୍ଭ ତହୁଁ ନିଅ ବୋଲି ।
କଂସ ରାଜାଧିରାଜାଙ୍କ ରାଣ ଦେଲି ॥
ଧାଇଁ ଧରି କାହା ଅଙ୍ଗେ ବାସ ଘଷି ।
ଲଡ଼ା ଛଡ଼ କରି କେହୁ ଗଲା ଖସି ॥
କେହୁ ପିନ୍ଧିଲା ବସନ ଦେଲା ଫେରି ।
ଗୁଟେଳ ଖଣ୍ଡିଆରେ ବୋଲି ଦୁହା ଦେଇ ॥
ତାଳ ହଲାଇ ଗୁଲନ୍ତେ ନାନାମତେ ।
ବନ୍ଧୁ ଗାଳି ଦେଉଅଛି ଯେତେ ଯେତେ ॥
କୃଷ୍ଣ ଶଠପଣେ ବନ୍ଧୁ ଆଶ୍ୱାସନ୍ତି ।
ପୁଅମାନଙ୍କୁ ବୁଝାଇ ଛଆରନ୍ତି ॥
ମେଳମତା ହୋଇ ବୋଲ ନ ମାନନ୍ତି ।
ବନ୍ଧୁ ମରମ କହ୍ୱଣ ଚଳାବନ୍ତି ॥
ବନ୍ଧୁ ଚଳ ଧୂଳି ଧରି ଧାଇଁ ଫିଙ୍ଗି ।
କେହୁ ଓଟାରେ ବସନ ପଛୁଁ ଲାଗି ॥
ଫେରି ଗୋଡ଼ାଇ ଫୁଟିଣ ଫୁକାରଇ ।
ନାନା ଭର୍ତ୍ସନାରେ ଗାଳି ଉଚ୍ଚାରଇ ॥
ଜାତି ଆହୀର ପାଷାଣ୍ଡ ବନଚର ।
ଭଗ୍ନୀମାନଙ୍କୁ ନ ଦେଇ ହାସ କର ॥
ଆଜ ମନ୍ଦରକୁ ଗଲେ ଜାଣି ସିନା ।
ଯାହା ହୋଇ ରଖିବ କି ନନ୍ଦକହ୍ନା ॥
ବକାସୁର କାଲି ସବୁ ଥାନ୍ତା ଗିଳି ।
ପଛ କରି ଆଗ ହୋଇ ଓଗାଳିଲି ॥
ସେହୁ ଗୁଣ କରୁଅଛ ଆଜ ମୋରେ ।
ତୁମ୍ଭ ସାଧିବାକୁ ନାହିଁ କେତେବେଳେ ॥
କୃଷ୍ଣ ବୋଲନ୍ତି ହେ ବନ୍ଧୁ ଆସ ଆସ ।
ଭଲ କରି ଦୃଢ଼େ ବାନ୍ଧ କଟିବାସ ॥
ବଡ଼ ସୁବୋଧ ତ ଏବେ ରାଉଅଛୁ ।
ହେଲେ ଧାଣକ ମାଇଲା କ୍ଷୀର ଭକ୍ଷି ॥
ବଚ୍ଛା କଟୁଡ଼ି କପିଥ ଝଡ଼ାଇଲା ।
ବାଇଡ଼ଙ୍କ ବୋଲି ବିପ୍ର ଗଡ଼ାଇଲା ॥

ସୁଶିଷ ବିପ୍ର, ଗୋ ହତ୍ୟାକୁ ନାହିଁ ଭୟ ।
ମହା ପାତକୀ ନାଶିବ କି ଉପାୟ ॥
ଏହା ସଙ୍ଗେ ଥିଲେ ସର୍ବ ନାଶ ଯିବ ॥
କଉତୁକେ ଏ ବ୍ରାହ୍ମଣ ପ୍ରାଣ ନେବ ।
କୃଷ୍ଣ ବୋଲନ୍ତି କିପାଇଁ ମତେ ବୋଲ ।
ବାଳପୋଏ ଚଳାବନ୍ତି କମ୍ପା ଚଳ ॥
ବଟୁ ବୋଲଇ ସକଳ ଚୋର ହେତୁ ।
ଏତେ ଉପାୟ ରଚିବା ମୂଳ ତ ତୁ ॥
ଗୋପେ ହୋଇଅଛୁ ବଡ଼ ହନ୍ତକାରୁ ।
କୁଳ କୁମାରୀମାନଙ୍କୁ ଆଖି ଠାରୁ ॥
ତୋର ଭୟେ ଯୁବତୀଏ ନ ଚାଲନ୍ତି ।
ବୋଲେ ଓଠାରୁ ତୁହି ଯେ କୁଳବତୀ ॥
କଂସ ବାରତା ପାଇଲେ ଜାଣୁ ଯିନା ।
ମତେ କରୁଛୁ ବନରେ ଯେତେ ଅନା ॥
ଏହା ସୁଝାଇ ତୁମ୍ଭକୁ ଯେବେ ପାରେଁ ।
ତେବେ ପଇତା ବହିବ କନ୍ଧ ପରେ ॥
ଶୁଣି କୃଷ୍ଣ ହସି ବଟୁ କର ଧରି ।
ବସ୍ତ୍ର ବାଳ ଘେନି ବନେ ବନେ ଫେରି ॥
ଲତା ଗହଳ ଗମ୍ଭୀର ଅନ୍ଧକାରେ ।
ଚରାଇଣ ପଞ୍ଚ ଧୁଞ୍ଜେ ବନ ଘୋରେ
ଆଗେ ଚଳାଇ ପଞ୍ଚରେ ଧୁଆଁ ଦେଇ ।
ରହି ଉହାଡ଼େ ଭାଲୁଙ୍କ ଭାଷା କହି ॥
ବଟୁ ନଦେଖି ପଞ୍ଚକୁ ନେଉଟିଲେ ।
ମେଳ ଯମୁନା କୂଳରେ ବହରିଲେ ॥
କେତେବେଳେ ବଟୁ ପାଶେ ମିଳି ଆସି ।
ଏକ ଆରେକ ଅନାଇ ହସାହସି ॥
କିନ ଗୁଆ ପାନେ ଦନ୍ତ ପାଚି ଅଛୁ ।
ବିଶ୍ୱାସରେ ଦୁଇ ଘର ପୁଏ ପୁଛୁ ॥
ଦନ୍ତ ପାଚିବାକୁ କିସ ତୁମ୍ଭେ ଖାଅ ।
ବଟୁ ବୋଲନ୍ତି ତୁମ୍ଭେ କି ଜାଣି ନାହଁ ॥
ମାଣ ମସି ଆ ଓଳୁଅ ବଣ ସାରୁ ।
ଚୂନ ଲବଣ ହଳଦି ବାଇ ଭେରୁ ॥
ଦନ୍ତେ ନିନ୍ଦଣ ରହିବ ମଞ୍ଜନରେ ।
କଣ୍ଟ ନ ସହିଲେ ପାଚେ ନଞ୍ଜନରେ ॥

ଯେବେ ପହଞ୍ଚର ଲେପକୁ ସହିପାରେ ।
ଦନ୍ତ ଅଧର ସୁରଙ୍ଗ ଜ୍ୟୋତି ଧରେ ॥
ତୁମ୍ଭେ ବିଶ୍ୱାସୀ ବୋଲାଣ କହିଲଇଁ ।
ଆନ କୁମରଙ୍କୁ ଏହା ଦେବ ନାହିଁ ॥
ଶୁଣି ମନ କଲେ ତହିଁ ଜଣଚାରି ।
ବଟୁ ବଚନେ ବିଶ୍ୱାସ ସବୁ କରି ॥
ସାରୁଣ ଚୂର୍ଣ୍ଣ ବିମଳ ସୁଧାକର ।
ଲେପ ସଂଯୋଗ କରିଣ ଅଭ୍ୟନ୍ତର ॥
ଦନ୍ତ ପାଚିବା ଶ୍ରଦ୍ଧାରେ ମୁଖେ ନନ୍ଦ ।
କ୍ଷଣେ ନ ସହି ପକାଇ ଉଛେ ଖେଦ ॥
ଦେଖି ଦେଖି ଫୁଲ ମୁଖ ବିରୂପରେ ।
କଥା କହିତ ନ ଆସେ ସ୍ୱରୂପରେ ॥
କୃଷ୍ଣ ଘୂମୁକୁ ଯାଇଣ ଗୋପ ସୁତେ ।
ବଟୁ ଚରିତ କହନ୍ତି କୋପ ଚିତ୍ତେ ॥
ଏହୁ ବାଳକେ ଶିଖାଇ ଏହା କଲା !
ଦେଖ କେତେ ଚତୁରାଇ ପଣ ଭଲା ॥
କୃଷ୍ଣ ବୋଲନ୍ତି ଉଧାର ସୁଝାଇଲା ।
ତୁମ୍ଭମାନଙ୍କୁ ନ ପାରି ଏହା କଲା ॥
ବଟୁ ଉଛେ ତାଳ ମାରି କହେ ହସି ।
ଦନ୍ତ ପାଚିବ ଘଡ଼ିଏ ରହ ବସି ॥
ବଟୁ କଥା ଛନ୍ଦ ପଡ଼ ନ ଜାଣିଲେ ॥
ଲଜ ପାଇଁ ଯେ ଯାହାର ତୁନ ହେଲେ ।
ବସ୍ତ୍ର ନେଉଡ଼ ଆଣି ଠୁଳେ ଦେଲେ ପାଣି ।
ଧୁଇ ଚଲେ ଶୁଆଇଲେ ବେଳ ଜାଣି ॥
ବଟୁ କହଇ କୃଷ୍ଣଙ୍କୁ ମନ୍ଦ ହସି ।
ବଡ଼ ଅପୂର୍ବ ଦେଖିଲି ବନେ ପଶି ॥
ତୁମ୍ଭ ମାନଙ୍କୁ ଲୁଚାଇ ଗଲି ଧାଇଁ ।
ଏକ ଅପୂର୍ବ କାନନେ ହେଲି ଯାଇଁ ॥
ଏଣେ ଥାଇ କିଛି ତାହା ଜାଣ ନାହିଁ ।
କିସ କହିବ ମହିମା ଅବା ମୁହିଁ ।
ହେମ ଜ୍ୟୋତି ଲତା ତରୁ ବିକାଶଇ ।
ଧୀର ମଳୟ ଅନଳ ସୁବାସଇ ॥
ପୁଷ୍ପ ଗନ୍ଧରେ ମୋହିତ ମତି ମୋର ।
ଅତି ରହସ୍ୟ କାନନ ମନୋହର ॥

ଆଜ ଯାଏ ତହିଁକି ଯେ ନାହିଁ ଗମି ।
ଦେବସ୍ତ୍ରିଶଙ୍କର ସେହୁ କ୍ରୀଡ଼ାଭୂମି ॥
ପୁଂସ କାଙ୍ଗେ ନ ଦେଖିଲା ଜନ୍ତୁ ।
ବନ ପବନ ଲାଗିଲେ ସ୍ତ୍ରିଶ ହେତୁ ॥
ଆନ ଜନ ତହିଁ ନାହିଁ ଆତଜାତ ।
ବନେ ପଶି ମୁଁ ହୋଇଲି ସ୍ତମ୍ଭୀଭୂତ ॥
କୁଣ୍ଡ ଦେଖିଲି ନିର୍ମଳ ସ୍ୱାଦୁଜଳ ।
କୂଳ ତରମଳ ପୀଢ଼ ତରୁମୂଳ ॥
ଗନ୍ଧ ଚନ୍ଦନ କୁଙ୍କୁମ ପ୍ରକଟଇ ।
ମଞ୍ଜୁ ପାଦ ଚିହ୍ନ ପଦ୍ମ ଉକଟଇ ॥
ଅନୁସରିଣି ଚିହ୍ନକୁ ନିରେଖିଲି ।
ଚଉଦିଗରେ କାହାକୁ ନ ଦେଖିଲି ॥
ଏକ ସାରିକା ମାଧବୀମଣ୍ଡପରେ ।
ଭଣେ ସୁସ୍ୱରେ ମନୁଷ୍ୟ ବଚନରେ ॥
ଜୟ ଅଖିଳମୋହିନୀ ଗାନ୍ଧର୍ବିକେ ।
ଜୟ ଭୁବନବନ୍ଦିନୀ ସୁରାଧିକେ ॥
ତାର ଭାଷାମୋଦେ ତୋର ବିଚ୍ଛେଦରେ ।
ମନ ବଳିଲା ରହିବା ଆସିବାରେ ॥
କୃଷ୍ଣ ଶ୍ରବଣେ ଶୁଣନ୍ତେ ଅନ୍ତେ ଜଡ଼ ।
ନିଜ ମନରୁ ଜନ୍ମିଣ କାମ ପୀଡ଼ ॥
ପ୍ରିୟ ସୁଖଦାୟୀ ହେଲେ ବିପରୀତ ।
ବିଷ ପ୍ରାୟେ ମଣି ନରମଇ ଚିତ୍ତ ॥
ସଖା-ସଙ୍ଗ-ଲୀଳା ରସ ନ ରୁଚଇ ।
କଣଲୟ ତଳୁ ତଳେ ବିରହଇ ॥
ଜ୍ଞାନ ପାଇଲେ ବିଷୟେ ଯେହ୍ନେ ତେଜ ।
ବଟୁ ବଚନ ଶୁଣନ୍ତେ ତେହ୍ନେ ମଜ ॥
ପୋଏ ଜାଣି ନ ପାରନ୍ତି କୃଷ୍ଣ ମତ ।
ବେଳୁଁ ବେଳ ଦେଖି ଆଳୁ ଆନ ଗୀତ ॥
ମଧୁମଙ୍ଗଳ ତ କି କି କହୁଥିଲା ।
ସେତେବେଳକୁ କୃଷ୍ଣ ମତି ବଦଳିଲା ॥
କେହୁ କୃଷ୍ଣଙ୍କୁ ଉରସି ନ ପରୁରେ ।
ବଟୁ କହିଲା କି ଭାବ ଅନ୍ତରରେ ॥
ସାୟଂ ପ୍ରବେଶ ବାହୁଡ଼ି ପୁରେ ଆସି ।
ସ୍ନାନ ସୁବେଶ ଭୋଜନେ ମନ ତୋଷି ॥

ମଧୁମଙ୍ଗଳ ସଙ୍ଗରେ ପୀତବାସ ।
ଏକା ପଲଙ୍କେ ପହୁଡ଼ି କଥାରସ ॥
ପୁଣି ପୁଣି ପୁଚ୍ଛନ୍ତି ହରି ଶରଧାରେ ।
କିସ କିସ ଭଣେ ସାରୀ କହ ମୋରେ ॥
ବଟୁ ବୋଲେ ସାରୀ ଭଣେ ସୁରାଧିକେ ।
କେତେବେଳେ ପୁଣି ବୋଲେ ଗାନ୍ଧର୍ବିକେ ॥
କୃଷ୍ଣ ଆସ୍ୱାଦ ନାମକୁ ପ୍ରକାଶଇ ।
ସୁରନାୟିକା ରାଧିକା ନାମ ହୋଇ ॥
ଭୋଗବିଳାସ ସ୍ୱଭାବେ ଗାନ୍ଧର୍ବିକେ ।
ନେତ୍ର ସୁଫଳ ହୋଇବ ଅବଲୋକେ ॥
ଶୋଭା ସୁକୁମାର ତା କେ କହିବ ପାରୁ ।
କାନ୍ତି କିରଣେ ଗଉର ଲତାତରୁ ॥
ସର୍ବସୁଲକ୍ଷଣୀ ଗୁଣେ ଗୁଣମୟୀ ।
ଯାର ଦାସୀ ପାଦେ ପଦ୍ମ ବିକାଶଇ ॥
ମୁଖ ପ୍ରସନ୍ନ ମଧୁର ମୃଦୁହାସେ ।
ବନଭୂମି ଦିଗ ଆଦି ଶୋଭା ଦିଶେ ॥
ସ୍ନେହବନ୍ଧରେ ଆବଦ୍ଧ ଖଗ ମୃଗେ ।
ଧନ୍ୟ ଧନ୍ୟ ବାଳା ସେହୁ ମହାଭାଗେ ॥
ନାମ ଗୁଣ ଗାଉଛନ୍ତି ବନଜୀବ ।
ପୂର୍ବଜନମେ ଯଦି ଏ ଭାଗ୍ୟ ଥିବ ॥
ତେବେ ସୁଫଳ ଜାଣିବା ବେନି ଆଖି ।
କାଲି ଗହନେ ପଶିବା ବୁଲି ଦେଖି ॥
ଛନ୍ନ ଛନ୍ନ ମନ ଅତି ଉଦବେଗେ ।
ନିଦ୍ରା ନ ମାଡ଼େ ନୟନେ ନିଶାଭାଗେ ॥
କେତେବେଳେ ଅଚେତନ ଶୟନରେ ।
ସେହି ଚରିତ ଦେଖନ୍ତି ସ୍ୱପନରେ ॥
ପୁଣ ଚେତି ବସି ମନ ବିଷାଦରେ ।
ଯତ ପରାଏ ମଣିଣ ବିଚ୍ଛେଦରେ ॥
ଆହା ସୁନ୍ଦରି ବୋଲିଣ ଡାକେ ରବେ ।
ଭିନ୍ନ କରାଇଣ ବଟୁ କହେ ଭାବେ ॥
ରୂପ ନ ଦେଖି ଶୁଣିଣ ଏତେ ଘାରି ।
ଦେଖିଥିଲେ ଧଇର୍ଯ୍ୟ କି ପାର ଧରି ॥
ପିତା ମାତା ଶୁଣି ଏହା କି ବୋଲିବେ ।
ଆମ୍ଭମାନଙ୍କୁ ବୋଲଣା କରାଇବେ ॥

ଆମ୍ଭେ ଜାଣୁ ନ ମନ୍ତ୍ର ଗୁଣ ଜ୍ଞାନ ।
ଭିକ୍ଷା କଥାକୁ ହେଉଛୁ ଏତେ ମନ ॥
କୃଷ୍ଣ ବୋଲନ୍ତି ଭୋ ମିତ ଶୁଣ ତୁହି ।
ସ୍ୱପନରେ ଯା ଦେଖିଲି ଆଜ ମୁହିଁ ॥
ଯେହୁ ବଚନ ତୋ ତହୁଁ ଶୁଣିଥିଲି ।
ଏକା ହୋଇଣ ପ୍ରବେଶ ତହିଁ ହେଲି ॥
ଅଗ୍ରତରୁ ମୂଳେ ଅଛି ବସି ହୋଇ ।
ଏକ ଅପୂର୍ବସୁନ୍ଦରୀ ମିଳେ ତହିଁ ॥
ମୁଁ ତ ଏମନ୍ତ ସୁନ୍ଦରୀ ନାହିଁ ଦେଖି ।
ଶୁଣୁଥାଇଁ ଯେତେ ଶୋଭା ଉପଲକ୍ଷି ॥
ରୂପ ଉପମା ଦେବାକୁ ସମ ନାହିଁ
ସ୍ତମ୍ଭୀଭୂତ ମୁଁ ହୋଇଲି ଶୋଭା ଚାହିଁ ॥
ବଚନରେ କହିବାକୁ ନ ଆସଇ ।
ହେତୁ ବୁଦ୍ଧି ରେଣ୍ଡ ମନ ଆଭାସଇ ॥
ମତେ ଅଳପ ନୟନ କୋଣେ ଚାହିଁ ।
ମନ୍ଦ ହସିଣ ସଖୀକି କିସ କହି ॥
ତାର ଲାବଣ୍ୟସାଗରେ ଥିଲି ମଜ୍ଜି ।
ଲତା ଉହାଡ଼ୁ ହୁଅନ୍ତେ ନିଦ୍ରା ଭଞ୍ଜି ॥
ବାଳା-ବିଚ୍ଛେଦ-ବିହ୍ୱଳ ବଚନରେ ।
ଶୋଭା ସ୍ୱରୂପ ରହିଲା ଲୋଚନରେ ॥
କାଳି ଉଚ୍ଚରେ ଭେଟାଇ ଯେବେ ପାରୁ ।
ତେବେ ବୋଲିବା ସେ ବଟୁ କଳ୍ପତରୁ ॥
ହଉ ହଉ ବୋଲି ବଟୁ ଆଶ୍ୱାସଇ ।
ନିଶି ଶେଷରେ ଅରୁଣ ପ୍ରକାଶଇ ॥
ଛନ୍ଦ ଛନ୍ଦ ଗୋଦୋହନ ଭୋଜନରେ ।
ବତ୍ସ ବାଳକ ଘେନିଣ କାନନରେ ॥
ବତ୍ସ ଚରାଇଣ ନଦୀ କୂଳେ କୂଳେ ।
ବନେ ପଶିଲେ କେବଳ ଗୃହମେଳେ ॥
ମଧୁମଙ୍ଗଳ ସୁବାହୁ ସୁବଳାଦି ।
ସଖା ସୁଦାମ ଏ ଗୃହ ପରସିଦ୍ଧି ॥
ସଙ୍ଗ କୁମରେ କହନ୍ତି କୃଷ୍ଣ ହସି ।
ସ୍ୱାଦୁଫଳ ଲୋଡ଼ିଆଣୁ ବନେ ପଶି ॥
ବତ୍ସ ଚରାଇ ଏଠାରେ ଦେବା ପାଣି ।
ଫଳ ଘେନିଣ ଆସିବୁଁ ଏଡ଼ିକ୍ଷଣି ॥

ଏତେ କହି ପଶି ବନେ ତୋଷମନେ ।
ଅନୁସରଣ ଲୋଡ଼ନ୍ତି ସ୍ଥାନେ ସ୍ଥାନେ ॥
ବଟୁ କଡ଼ାଉଅଛନ୍ତି ଆଗେ ଆଗେ ।
ବନ୍ଦୀ ହୋଇଲେ ନ ଜାଣି ଦଗଭାଗେ ॥
ଭ୍ରମି ଭେଟ ନ ପାଇଲେ ବଟୁ ଯଥା ।
କୃଷ୍ଣ ମନରେ ପାଇଲେ ବଡ଼ ବ୍ୟଥା ॥
କାହ୍ନୁ ବଦନ ବିରସ ଯୋଏ ଦେଖି ।
ମଧୁମଙ୍ଗଳ ବଚନ ହାସ ଦେଖି ॥
ଏହା କଥା ସତ ପରା ମଣୁ ହରି ।
ତେଣୁ ଆମ୍ଭଙ୍କୁ ଆଣିଲୁ ସାଥି କରି ॥
ଏବେ ଚାଲ ଯମୁନାର କୂଳେ ଯିବା ।
ନାହିଁ ରହି କଥା ପୁଣ ବିଚାରିବା ॥
ମଧୁମଙ୍ଗଳ ବଚନ ନ ସ୍ଫୁରଇ ।
ଆଗ ପଛକୁ ଚରଣ ନ ଚଳଇ ॥
ଏମନ୍ତରେ ଦେଖି ବୃଦ୍ଧ ମରକଟୀ ।
ମୁଖ ପାକୋଇ ଚରଣଫରକଟୀ ॥
ଆଗ ଉଗାଳି ବୋଲଇ ଆରେ ବାଇ ।
ଏତେ ଅଗମ୍ୟେ ପଶିଲ କାହିଁପାଇଁ ॥
ବୃନ୍ଦାବନୀ ଦେବୀଙ୍କର ନାହିଁ ଆଜ୍ଞା ।
ଏଣେ ଅଇଲ ବହୁଣ ପରତିଜ୍ଞା ॥
କ୍ଷଣେ ନ ରହି ପଳାଅ ବେଗେ ବେଗେ
ଅଜଗର ପଡ଼ିଅଛି ଏହି ଲାଗେ ॥
କପାଁ ଅଇଲ ନ ଜାଣି ଏହି ବନେ ।
ଏତେ ଦୂର ନ ଆସଇ କେହୁ ଜନେ ॥
ବାତ ଲାଗିଲେ ପୁରୁଷ ଲିଙ୍ଗ ଯାଇ ।
ଜଳ ଖାଇଲେ ଯୁବତୀ ରୂପ ହୋଇ ॥
ଏତେ ଦୁର୍ଗମେ ଅଇଲ କାହିଁପାଇଁ ।
ମୋର ବଚନେ ଲେଉଟ ବାପ ଭାଇ ॥
ଏଣେ ଅଧିକ କାର୍ଯ୍ୟ ତ ନାହିଁ କିଛି ॥
ବଣା ହେବ ଯାହା ନିଜ ତନୁ ଲୋଚି ॥
ଶୁଣି ବାନରୀ ଅପର୍ବ ଏହୁ ଗୀର ।
ବେଗେ ବାହୁଡ଼ି ମିଳିଲେ ନଦୀତୀର ॥
ନିଜ ବାଳକ ମେଳରେ ଯାଇଁ ମିଶି ।
ଗୁଛଇତଳେ ବସି ଦେହଶ୍ରମ ନାଶି ॥

ପୋଏ ବୋଲନ୍ତ କି ଫଳ ଆଣିଅଛ ।
ମଧୁମଙ୍ଗଳର କଥା ସବୁ ମିଛ ।।
ଷଣ୍ଡି ଆର କଥାକୁ ଯେ ପ୍ରତେ ଯାଇ ।
କାର୍ଯ୍ୟ ନ ପାଇ ବଦନେ ଲାଜ ପାଇ ॥
କି କି କହି କହ୍ନାଇ କି ଭୁଲାଇଲା ।
ମହାଘୋରବନେ ନେଇ ବୁଲାଇଲା ॥
ବଟ୍ ବୋଲ କଲେ ସର୍ବେ ନାଶ ଯିବା ।
ଏହା ସଙ୍ଗରେ କ୍ଷଣହେଁ ନ ରହିବା ॥
ବଟ୍ ବୋଲଇ ରେ ଭଲ କୁହ ପୁଏ ।
ବକ ପଲେ ଏକ ହଂସ ଶୋଭା ନୁହେଁ ॥
ଦଳଗଡ଼ିଆ ବେଙ୍ଗର ଯେତୁ ଜାଣେ ।
ମାନସରୋବର ଗୁଣ କି କେ ମଣେ ॥
ତୁମ୍ଭେ ଆମ୍ଭର ଆମ୍ଭେ ତ ଯଜୁର୍ବେଦୀ ।
ତୁମ୍ଭ ଆମ୍ଭର ବହୁତ ଭେଦାଭେଦ ॥
ଆମ୍ଭ ନାମ ସ୍ୱଭାବରେ ବଟ୍ ବଟୁଁ ।
ଜାଣି ବଣା ହେଉଛ ତ ଖଟ୍ ଖଟଁ ॥
ଶୁଣି ଗୋବିନ୍ଦ ହସନ୍ତି ମନ୍ଦେମନ୍ଦେ ।
ମଧୁମଙ୍ଗଳ ବଚନ ଅନୁବାଦେ ॥
ଅନନ୍ତରେ ଶୁଭେ ବନେ ହୁଳହୁଳି ।
ହଗ ମଙ୍ଗଳ ଆନନ୍ଦ ମହୀସ୍ଥଳୀ ॥
ଶୀତ ସୁଗନ୍ଧ ମରୁତ ଆମୋଦଇ ।
ବନ ଜୀବଜନ୍ତୁ ମନ ପ୍ରମୋଦଇ ॥
କୃଷ୍ଣ ଶୁଣି ପଚାରନ୍ତି ଏକ ଆରେ ।
କିସ ଶବଦ ଶୁଭଇ ଶୁଣ ଧୀରେ ॥
ହୁଳହୁଳି ପଡ଼ିଏ ତ ଶୁଭୁଅଛି ।
ଜାଣିଆସ ବେଗେ ବୋଲେ ନନ୍ଦବଚ୍ଛି ॥
ଏତେ ବୋଲି ସୁବଳର ମୁଖ ଚାହିଁ ।
ବନେ ପଶିଲା କୃଷ୍ଣର ଆଜ୍ଞା ପାଇ ॥
ହୁଳହୁଳି ଶବଦର ଅନୁସରେ ।
ଯାଇ ଦେଖିଲା ସୁବଳ କେତେ ଦୂରେ ॥
ସ୍ଥାନ ପବନ ଗଉରୀତୀର୍ଥ ନାମେ ।
ବ୍ରହ୍ମସେନା ଦେବୀ ପୂଜା ଅନୁରାଗେ ॥
ସୁଲକ୍ଷଣୀ ସୀମନ୍ତିନୀବୃନ୍ଦ ମିଳି ।
ଦେବୀଜା ସ୍ଥଳେ ଦେଇ ହୁଳହୁଳି ॥

ଜାଣି ସୁବଳ ବହନ ଲେଉଟିଲା ।
ଧୂପଧୂଆଁ ଗନ୍ଧେ ବନ ଚହଟିଲା ॥
କୃଷ୍ଣ ସନ୍ନିଧେ ମିଳିଲା ବେଗେ ଆସି ।
କଳ୍ପତରୁ ତଳେ ଏକାନ୍ତରେ ବସି ॥
ଶୁଣ ହେ ମିତ ଅଇଲି ଦେଖି ଯାହା ।
ତ୍ରିନପୁରେ ମୁଁ ଅପୂର୍ବ ମଣେ ତାହା ॥
ସର୍ବଗୁଣରେ ସୁନ୍ଦରୀ ସୁଲକ୍ଷଣୀ ।
ନବଯଉବନ ଜାତି କମଳିନୀ ॥
ଶଚୀ ପାର୍ବତୀରୂପକୁ ସମ ନୁହେ ।
ଦେଖନ୍ତେଣ ଯୋଗିଜନ-ମନ ମୋହେ ॥
ଏକରୂପକୁ ଆରେକ ରୂପ ବଳି ।
ପୂଜା କରଣେ ଦିଅନ୍ତି ହୁଳହୁଳି ॥
ଅତି ଉତ୍ସବେ ଆନନ୍ଦ ନାରୀବୃନ୍ଦ ।
ବ୍ରହ୍ମସେନା ସ୍ତୁତି କରି ବନ୍ଦ ପାଦ ॥
ତଥି ମଧ୍ୟରେ ତରୁଣୀ ଶିରୋମଣି ।
ତନୁ ହରଇ ତପତ ହେମ ଛଣି ॥
କାନ୍ତି କରଣେ ଗଉର ବର୍ଣ୍ଣ ହୋଇ ।
ଜୀବ ନିର୍ଭୟେ ନିଷ୍ଟଳେ ରହି ଚାହିଁ ॥
ମନ ବୁଦ୍ଧି ଚାହିଁ ତହିଁ ମଜାଇଲା ।
ଦେଖି ଆସିବା ଚେତନା ହଜାଇଲା ॥
ଲତା ଉହାଡ଼ରେ ଥାଇ ଦେଖିଲଇଁ ।
ନେଇ ସୁଫଳ ସକଳ ଲେଚ୍ଛୁଲଇଁ ।
ଏକମେଳରେ ଗଉରୀତୀର୍ଥ ଜଳେ ।
ସ୍ନାନ ସାରିଣ ସୁବେଶ ହେଲେ କୂଳେ ॥
ଦିବ୍ୟବସନ ଭୂଷଣ ଅଳଙ୍କାର ।
ଗନ୍ଧଚନ୍ଦନ କୁସୁମ ମଣିହାର ॥
ଯେଝା ଅନୁରୂପେ ବେଶ ବହନରେ ।
ପଣି କୁସୁମ ତୋଳନ୍ତି ବହନରେ ॥
ହୁଳହୁଳିରେ ମଙ୍ଗଳଗୀତ ଗାଇ ।
ପୂଜା ଆରମ୍ଭିଲେ ଏକରୁଣ୍ଡ ହୋଇ ॥
ଦିବ୍ୟମଣ୍ଡପ ମଣ୍ଡିଣ ପଞ୍ଚ ବର୍ଣ୍ଣେ ।
ବିଜେ ପ୍ରତିମା ବସନ ନବରତନେ ॥
ଗନ୍ଧପୁଷ୍ପ ଧୂପଦୀପ ନଇବେଦ୍ୟ ।
ଷୋଡ଼ଶ ଉପଚାରରେ ବାଢ଼ି ସର୍ବ ॥

ପୂଜା କରାଇ ପ୍ରସାଦ ଶିରେ ଘେନି ।
ପାଦେ ଓଳଗି ମେଲାଣି ସମର୍ପି ॥
ତଥ୍ୟ ନ ଜାଣିଲି ସେଠୁ ଗଲେ କାହିଁ ।
ତୁମ୍ଭ ଆଗେ କହିବାକୁ ଅଇଲଇଁ ॥
ଶୁଣି ଶରଧା କୃଷ୍ଣର ବେଳୁଁ ବେଳ ।
ସେହି ସ୍ଥାନ ଦେଖିବା ଲୋଭ ମିଳି ଗଲା ॥
ଶୁଣି ସୁଦାମ କହଇ ଧୀରପଣେ ।
କନ୍ୟା ନ ଥିବେ ଯିବା ଯା ଅକାରଣେ ॥
ନିଜ ପୁରେ ଯାଇ କଥା ବିଚାରିବା ।
ପୌର୍ଣ୍ଣମାସୀଙ୍କି ଯଇଣ ପଚାରିବା ॥
କାହିଁ ଅଇଲେ ଏଥକୁ କନ୍ୟାଗଣେ ।
କେଉଁ କାମନାରେ ପୂଜା ଏ ଅରଣ୍ୟେ ॥
ମଧୁମଙ୍ଗଳ କହିଲା ଯାହା ଏହି ।
ଖୋଜ ଭେଟ ନ ପାଇଣ ବଣା ହୋଇ ।
ଏବେ ଦେଖିଲଙ୍କୁ ମନେ ପ୍ରତେ ଗଲା ।
ଚାଲି ଯିବା ପୁରେ ଦିନ ଶେଷ ହେଲା ॥
ଏତେ ବୋଲିଣ ବାହୁଟି ଅଡ଼ାଇଲେ ।
କୃଷ୍ଣ ବିସ୍ମୟେ ଚରଣ ବଢାଇଲେ ॥
ନିଜ ମନ୍ଦିରେ ପ୍ରବେଶ ହେଲେ ଯାଇଁ ।
ଦେବୀ ଯଶୋଦା ପାଳନ୍ତି ସୁଖେ ନେଇ ॥
କାମଶର ଭେଦେ କୃଷ୍ଣ ଅଙ୍ଗେ ବେଗେ ।
ମଧୁମଙ୍ଗଳର ସଙ୍ଗେ କଥାରଙ୍ଗେ ॥
ପୂର୍ବେ ଗୋବର୍ଦ୍ଧନମଲ୍ଲ ପୁରେ ଗଲି ।
ତାର ରମଣୀର ନାମ ଚନ୍ଦ୍ରାବଳୀ ॥
ବନ୍ଧୁ ଆଗମେ ଆଳତି ବନ୍ଦାଇଲେ ।
ମନ ଲାବଣ୍ୟ ରଜ୍ଜୁରେ ବନ୍ଧାଇଲେ ॥
ଲାଜେ ମୁଖ ପୋତି ରୂପ ଦେଖି ନାହିଁ ।
ଚନ୍ଦ୍ର ଉଦେ କି କରଣ ପ୍ରକାଶଇ ॥
ଆହା ଲାଜେ ତନୁମନ ପୁଲକିତ ।
ଅଙ୍ଗ ସଉରଭ ଲୋଭେ ସ୍ତମ୍ଭୀଭୂତ ॥
ହେଲୁ ବୁଦ୍ଧି ହରାଇଲି ଫୁଲବାଣେ ।
ଅର୍ଘ୍ୟ ଦେଇଣ ବାହୁଡ଼େ ତତକ୍ଷଣେ ।
ସଖୀ ସଙ୍ଗରେ ଗମନ ଧୀରେ ଧୀରେ ।
ଗତି ମତ୍ତଗଜ ହଂସ ନିନ୍ଦା କରେ ॥

ବାଜେ ନୂପୁର ମଦନ ସାର ତୁର ।
ଘୁମୁ ଖଣ୍ଡିଆ ଝଣ୍ଡିଆ ଡାକେ ଧୀର ॥
ପାଦପଦ୍ମ ସୁରଙ୍ଗିତ ଯାବକରେ ।
ଅବଲୋକେ ଦହେ କାମ-ପାବକରେ ॥
ଚାରୁ ଅଙ୍ଗୁଳି ଅଶୋକ ସୁକଳିକା ।
ନଖଚନ୍ଦ୍ର ଅକଳଙ୍କ-ସୁଚନ୍ଦ୍ରିକା ॥
ଦେଖି ନୟନ-ମଧୁପ ଲୋଭେ ବସି ।
ମନ ବୁଦ୍ଧି ଚଇତନ ଗଲା ମିଶି ॥
ମୋର ନୟନେ ଲାଗିଛି ଏତେବେଳେ ।
ତନୁ ଲାବଣ୍ୟ ଦେଖି ତ ନାହିଁ ଭଲେ ॥
ପାଦ ଦର୍ଶନ କଲି ମୁଁ ବହୁ ଭାଗ୍ୟେ ।
ନବ ପୁରାଇ ଦେଖିବା କେଉଁ ଯୋଗେ ॥
ସତେ ପ୍ରସନ୍ନ ମତେ ସେ ହେବ ଆସି ।
ଦଶଦ୍ୱର ଦରେ ଯେହ୍ନେ ନିଧି ପଶି ॥
ଚନ୍ଦ୍ରାବଳୀ ଗୁଣ ଚିନ୍ତି ଦାମୋଦର ।
ଫୁଲ ଧନୁ ଧରି ଶର ବଳଆର ॥
ବେଳୁଁ ବେଳ ବିରହର ତାପ ବଢ଼େ ।
ମନ ଛନ୍ନ ଛନ୍ନ ସୁଖଭୋଗ ଏଡ଼େ ॥
ଚନ୍ଦ୍ର ଚନ୍ଦନ ଅନଳ ପ୍ରାୟେ ଦହେ ।
ବିଷଜାଳ କି ମଳୟ ଚଳୁ ବହେ ॥
ମତି ନ ବଳେ ସୁବେଶ ଭୋଜନରେ ।
ନିଦ୍ରା ନ ମାଡେ ହଂସତୂଳ ପଲଙ୍କରେ ॥
ଏଣି ଦିବସ ଅଶେଷ ନ ସରଇ ।
ମବ ବିଳାସ ବିଷୟ ବିସାରଇ ॥
ପ୍ରିୟସଖା କେବଳ ସେ ଭେଦ ଜାଣେ ।
ଦୁଇ ଚାରିଜଣ ମନ ପରମାଣେ ।
କୃଷ୍ଣ ବେଦନା ଦେଖିଣ ମନେ ବ୍ୟଥା ।
ପାଶେ ବସିଣ ପ୍ରବୋଧି ନାନାକଥା ॥
ଭେଦ କରନ୍ତି ଆପଣା ଉପାୟରେ ।
ଚିନ୍ତି ଚନ୍ଦ୍ରାବଳୀ କୃପା ହୃଦୟରେ ॥
ବ୍ୟାଧି ଦିନକୁ ଦିନ ଯେ ବଳିଆଇ ।
କୃଷ୍ଣ ବିବେକ ବିରହେ ଭୁଲିଆଇ ॥
ଆନ ଜନକୁ ଚରିତ ଅଗୋଚର ।
ହେତୁ ଜାଣନ୍ତି କେବଳ ଅନୁଚର ॥

କୃଷ୍ଣ ସଙ୍ଗେ ସଖୀ ଏନ୍ତ ଲୀଳା ରସ ।
ଏହି ଦ୍ୱିତୀୟ ବୋଲ ଯେ ହେଲା ଶେଷ ॥
ମୁନିବର କହେ ଧନପତିପୁଟେ ।
ସଦା ଭଜ ଗୋପବନ୍ଧୁ ପଦ୍ମନେହେ ॥
ଗୁରୁ ବୈଷ୍ଣବଙ୍କ ପାଦ ଆଶ୍ରୟରେ ।
ପଦ ଛନ୍ଦିଲ ବିଷୟ ବିଷାଦରେ ॥
ଗୁରୁଦେବ କଣ୍ଣଦାସ ପାଦେ ସେବି ।
ଦେଶ ଭାଷାରେ ଗୋକୁଳ ଲୀଳା ଭାବି ॥
ଏଣୁ ତରିବା ଭରସା କରି ଅଛୁ ।
ସାଧୁଜନେ ନ ଧରିବା ଦୋଷ କିଛୁ ॥

ଇତି ଦ୍ୱିତୀୟ ବୋଲ ସମ୍ପୂର୍ଣ୍ଣ



ଶ୍ରୀ ଚୈତନ୍ୟଚନ୍ଦ୍ରାୟ ନମଃ

## ତୃତୀୟ ବୋଲ

( ଦେଶାକ୍ଷ ବାଣୀରେ ଗାଇବ )

ଜୟ ଜୟ ସରସ୍ୱତୀ ହରି-ବଲ୍ଲଭୀ ।
ବେଦପତି ଅଧିକାର ତୋ ପଦ ସେବି ॥
ଯୋଗମାୟା ଯୋଗମୂର୍ତ୍ତି ପରମେଶ୍ୱରୀ ।
ଅନ୍ନପୂର୍ଣ୍ଣା ଭଗବତୀ ଭୁବନେଶ୍ୱରୀ ॥
ପାଶାଙ୍କୁଶଧାରିଣୀ ପୁସ୍ତକଲେଖନୀ ।
ତନତାପ ନିସ୍ତାରି ସଂସାରତାରିଣୀ ॥
ଭବଭୟନାଶିନୀ ପ୍ରଳୟମୋଚନୀ ।
ଶୁଦ୍ଧକନକକାନ୍ତି କମଳଲୋଚନୀ ॥
ଜଗଦ୍ଧାତ୍ରୀ ଲୋକମାତା ଧାତାବନ୍ଦିନୀ ।
ଚରାଚର ଚତୁର୍ଦ୍ଦଶଲୋକବନ୍ଦିନୀ ॥
ବୀଣାବାଦିନୀ ମୋହିନୀ ସୁଖଦାୟିନୀ ।
ଜନପ୍ରମୋଦିନୀ ପୁଣି ମହାଯୋଗିନୀ ॥
ଗୁଣମୟୀ ପରମ ସଙ୍ଗୀତ କବିତା ।
ଧୀରଧୈର୍ଯ୍ୟ ଦାୟିନୀ ଶାନ୍ତବକତା ॥
ଗାନ୍ଧାର ଗ୍ରନ୍ଥେ ଆଶ୍ରିତ ଜନ ମୋହିନୀ ।
କ୍ଷମା ଦୟା ଶାନ୍ତ ହରିହୃଦୟାସିନୀ ॥
ବୁଦ୍ଧିଦାୟିନୀ କଣ୍ଠସଙ୍ଗନିବାସିନୀ ।
ସ୍ତୁତି ପାଠ ପଠନେ ପ୍ରସନ୍ନ ମୋଦିନୀ ॥
କାଳ ନିଦ୍ରାବଞ୍ଚକ ବୁଦ୍ଧିକବାହିନୀ ।
ବିଦ୍ୟାବତୀ ଗୁଣବତୀ ଭକ୍ତ୍ୟପାହିନୀ ॥
ବ୍ରହ୍ମ ଭାରତୀ ଗିର୍ବାଣେଶ୍ୱରୀ ସାଧବୀ ।
ମେଧା ଶ୍ରଦ୍ଧା ସତ୍ୟ ବିଷ୍ଣୁପ୍ରିୟା ବାନ୍ଧବୀ ॥
ସତୀ ସାରଦା ବରଦା ଜନତୋଷିଣୀ ।
କୁନ୍ଦ ମନ୍ଦାର ମାଳତୀମାଳ-ଭୂଷଣୀ ॥
ଶ୍ୱେତବସନା ଶ୍ୱେତକୁସୁମାଭରଣୀ ।
ଶ୍ୱେତ ମଣି ଅଳଂକାର-ହାର-ମଣ୍ଡଣୀ ॥
ଶଙ୍ଖ ଚୂଡ଼ ମୋତିହାର ଚନ୍ଦ୍ରବଦନୀ ।
ହୀରା ହାଟକ ଠାଟକେ ମନମୋହିନୀ
ନାରଦପୁଣ ଦ୍ୱିବଶୀର ବୀଣାରସରେ ।
ସୁନାମରେ ନଦୀ ହୋଇ କାନ୍ତିବସରେ ॥
ଲୋକପାବନୀ ଅବନୀ ସାଗର ଭେଦି ।
ବନ୍ଦେ ଭକ୍ତ ବଇଷ୍ଣବ ଚିହ୍ନ ସମ୍ପାଦି ॥
ଊର୍ଦ୍ଧ୍ୱ ପୁଣ୍ଡ୍ରର ପୁଳକ ଚସାଦ ପଙ୍କେ ।
ନଳନାକ୍ଷ ମାଳା ଶୋଭେ ହୃଦୟ ଅଙ୍କେ ॥
ମତ୍ସ୍ୟ କଚ୍ଛପାଦି ରୂପ ଅନ୍ତେ ଧରଇ ।
ମୋତ ଅବଧି ପ୍ରଭୁ କୀର୍ତ୍ତନ କରଇ ॥
ସ୍ତମ୍ଭ ସ୍ୱେଦ ରୋମାଞ୍ଚ ସ୍ୱରଭଙ୍ଗ କମ୍ପ ।
ବୈବର୍ଣ୍ଣ ଅଶ୍ରୁ ଲୟ ସାତ୍ତ୍ୱିକ ରୂପ ॥
ନମି ଜାଣିରେ ସ୍ତମ୍ଭ ଧାରଣ ସ୍ୱେଦ ।
ବରତାରେ ପୁଳକ ସ୍ୱରଭଙ୍ଗ ନାଦ ॥

କର୍ମତରଙ୍ଗ ଅଗ୍ରେ ପରି ଧାରାବନ୍ଧ ।
ସିନ୍ଧୁ ସଙ୍ଗମେ ପ୍ରଳୟ ଦେହ ହଜାଏ ॥
ହରିଭାବରେ ଅଷ୍ଟସାତ୍ତ୍ୱିକ ବିକାର ।
ମୂର୍ତ୍ତିବନ୍ତ ନଦୀ ବୈଷ୍ଣବ ଆକାର ॥
ଅତି ପବନ ନିର୍ମଳ ଶୀତଳ ରୀତ ।
ଦରଶନେ ସ୍ପରଶନେ ଅଜ୍ଞାନେ ଶୁଚି ॥
ସର୍ବ ଦୋଷକୁ ନାଶଇ ନାମ ଉଠନେ ।
ପାପୀ ପାଷାଣ୍ଡ ତାରେ ମର୍ତ୍ତ୍ୟ ପର୍ଯ୍ୟଟନେ ॥
ଜୟ ଜୟ ଚୈତନ୍ୟ ସଚ୍ଚିଦାନନ୍ଦ ।
ରାଧା କୃଷ୍ଣ ଭକ୍ତ ତନୁରୂପ ଆନନ୍ଦ ॥
ଗଉରାଙ୍ଗ ବର୍ଣ୍ଣ କମଣ୍ଡଳୁ ଧାରଣ ।
ଷଡ଼ଭୁଜ ପ୍ରତାପ ରୁଦ୍ର ନିସ୍ତାରଣ ॥
କଳିକଳୁଷ ନାଶନେ ଏ ଅବତାର ।
ହରିନାମେ ପ୍ରମୋଦ କରାଇ ସଂସାର ॥
ହରେକୃଷ୍ଣ ରାମ ମହାମନ୍ତ୍ର ଉଦାରେ ।
ଘରେ ଘରେ ନାମ ସଂକୀର୍ତ୍ତନ ପ୍ରଚାରେ ॥
ସଦା ଶରଣ ଚରଣ ତଳେ ତାହାର ।
ବକ୍ରେଶ୍ୱର ପଣ୍ଡିତ ସେବକ ଯାହାର ॥
ସେହୁ ସଖୀଭାବରେ ଗାନ୍ଧାର ରସରେ ।
ନାମେ ନୃତ୍ୟ ଚଉବଂଶ ପ୍ରହର କରେ ॥
ମୁଁ ଆଶ୍ରିତ ଅବଲମ୍ବି ତାଙ୍କ ଚରଣେ ।
ଗୁରୁଗୋପାଳ ଗୋସାଇଁ ଜୀବକାରଣେ ॥
ଏହୁ ଗୋସାଇଁ କ୍ଷଣଭଙ୍ଗୁର ଶରୀରେ ।
ମହାପ୍ରଭୁ ନାମ ଜପେ ପ୍ରଚୁର କରେ ॥
[illegible]ଳେ ହରିପାଦାଙ୍କିତ ତିଳକ ରଚେ ।
ଅଭିରାମ ଦଣ୍ଡବତ ମରଣୁଁ ବଞ୍ଚେ ॥
ଏହି ପୟରକୁ ନିତ୍ୟେ ମୋ ସୁମରଣ ।
ଧ୍ୟାନାନନ୍ଦ ଆଶ୍ରୟ ଯେବଣ ଚରଣ ।
ଏହାଙ୍କର ମହିମା ଜଗତେ ବିଦିତ ॥
କୃଷ୍ଣଚରଣ ଧ୍ୟାନେ ସଦା ପ୍ରମୋଦିତ ।
ପରାପର ଗୁରୁ ଏହୁ ଶରଣ ମୁହିଁ ।
ପୁରୁଷୋତ୍ତମ ଦାସ ଯାର ଅନୁଗ୍ରହୀ ॥
ଏହୁ ହରି ଭକତ ଶାସ୍ତ୍ରରେ ବିଦିତା ।
ପ୍ରାଣୀନିସ୍ତାରଣେ କୃଷ୍ଣରସେ କ୍ଷମତା ॥

ଗୁରୁ ପରମଗୁରୁ ପାଦେ ମୋ ବିଶ୍ୱାସ ।
ଏହାଙ୍କର କୃପାପାତ୍ର ଶ୍ରୀକଣ୍ଠଦାସ ॥
ରାଧାଗୋବିନ୍ଦ ସେବା ଷାଠିଦଣ୍ଡ ଭାବେ ।
ସାଧୁସେବା କୃଷ୍ଣଯାତ୍ରା ମହାଉତ୍ସବେ ॥
ସଦଗୋଷ୍ଠୀରେ ରତି ମୋ ପିଣ୍ଡ କାରଣ ।
ସଦା ଶରଣ ଗୁରୁ-ଗୋସାଇଁ ଚରଣ ॥
ଏହି କୃପାରୁ କିଛି ହୋଇଲା ସ୍ଫୁରିତ ।
ଦଗମାନ ଏ ବ୍ରଜବିହାର ଚରିତ ॥
ପୂର୍ବେ ନଳକୁବେର ନାରଦ ସମ୍ବାଦ ।
ଏ ତୃଷ୍ଣାୟୁବୋଲ ତେରଅକ୍ଷରେ ପଦ ॥
ଚନ୍ଦ୍ରାବଳୀ ଅନୁରାଗ ଗଉଡ଼ସାଙ୍ଗେଥେ ।
ବନ୍ଧୁସେମ-ପୂଜା ଯେହ କୁମାରୀଯୂଥେ ॥
ବଛାବାଳକ ମେଳେ ହରି ବିହାରିଲେ ।
ବନ ବନ କୃଷ୍ଣ ସଙ୍ଗରେ ବିହରିଲେ ॥
ଚୌରି ରତିରେଁ ହରିଙ୍କ ପୁରେ ଲୁଚଇ ।
ନାନାମତେ ସଖୀ ମୁଖରାକୁ ବଞ୍ଚାଇ ॥
ଅଘାସୁର ହତ ବାଲ ବଚ୍ଛା ହରଣ ।
ବ୍ରଜେ ଦୁର୍ବାସାଙ୍କ ସୂର୍ଯ୍ୟ ପୂଜାର କାରଣ ॥
ରାଧା ବୃନ୍ଦାବନ ନବାଗମ ମଧ୍ୟାହ୍ନେ ।
ପାଦଚିହ୍ନ-ଶନପଠ ଅନୁସନ୍ଧାନେ ॥
ଏହି ସୂତ୍ର ମାତ୍ର ପୌର୍ଣ୍ଣମାସୀ ବିଧାନ ।
ରାଧାକୃଷ୍ଣ ଯୁଗଳକୁ ମୂଳ ପ୍ରଧାନ ॥
ଏହୁ ଦେବଚରଣ ମୋ ହୃଦରେ ରହୁ ।
ରାଧାକୃଷ୍ଣ ରସଗୀତ ସ୍ଫୁରିତ ହେଉ ॥
ସାଧୁଜନ ଶୁଣି ମୋ ନ ଘେନିବା ଦୋଷ ।
ମୂର୍ଖ ପାଷଣ୍ଡେ ଗୀତ ନ କରି ପ୍ରକାଶ ॥
ହରିବିମୁଖଜନେ କହନ୍ତି ଭଙ୍ଗାଇ ।
ନାନାମତେ ଦୋଷ ଦୁର୍ବାଦକୁ ଲଗାଇ ॥
ଏଣୁକରି ତୁମ୍ଭ ଚରଣରେ ବନ୍ଦନ ।
କର୍ଣ୍ଣେ ନ ଶୁଣି ଗୋବିନ୍ଦ ନାମ ନିନ୍ଦନ ॥
ନଳକୁବର ମୁନି କରି ପ୍ରଦକ୍ଷିଣ ।
ଦଣ୍ଡ ପ୍ରଣାମ କରି ପୁଛେ ପୁଣ ପୁଣ ॥
ଚନ୍ଦ୍ରାବଳୀ ଶ୍ରୀହରି ଉଭୟ ବିରହ ।
କେମନ୍ତରେ ମିଳନ ହେଲେ ମୁନିକହ ॥

ଧନପତିସୁତ ଅଶ୍ରୁ ପୁଲକ ଗ୍ରହିଁ ।
ମୁନି ଆନନ୍ଦେ କହନ୍ତି ସୁଦୟା ବହି ॥
ଚନ୍ଦ୍ରାବଳୀ ବିରହରେ ନନ୍ଦନନ୍ଦନ ।
ପୌର୍ଣ୍ଣମାସୀ ଚରଣେ କରନ୍ତି ବନ୍ଦନ ॥
କାଲି ବଡ଼ ଆଚମ୍ବିତ ଦେଖିଲୁ ବନେ ।
ଦେବୀପୂଜା ସ୍ଥଳରେ ଆସି କନ୍ୟାଗଣେ ॥
ହୁଳହୁଳି କୋଳାହଳ ଗଉରୀତୀର୍ଥେ ।
ବଞ୍ଚା ରଖିଥିଲୁଁ ଆମ୍ଭେ ମଥୁରା ପଥେ ॥
ଧୂପ ଧୂଆଁ ସୁଗନ୍ଧରେ ବନ ସୁବାସେ ।
ଲତା ତରୁ ପୁଲକ ଉଉର ବିକାଶେ ॥
ସେହୁ କନ୍ୟାମାନେ କେହୁ କାହୁଁ ଅଇଲେ ।
ହୁଳହୁଳି ଉତ୍ସବ ମଙ୍ଗଳ ଗାଇଲେ ॥
କହ କହ ହେ ଦେବୀ କେବଣ ଚରିତ ।
ବନେ କନ୍ୟାଙ୍କର ଏ କି ପୂଜା ଚରିତ ॥
ଦେବୀ ବୋଲନ୍ତି ଶୁଣ ହେ ନବନାଗର ।
ଆଜ ପଡ଼ିଲେ ସୁନ୍ଦରୀ ଭୂମି ଆଗର ॥
ଗୋବର୍ଦ୍ଧନମଲ୍ଲପ୍ରିୟା ସେ ଚନ୍ଦ୍ରାବଳୀ ।
ସଖୀମାନଙ୍କ ସଙ୍ଗେ ବନେ କରେ କେଳି ॥
ବନେ ବନେ ବୁଲି ନାନା କୁସୁମ ତୋଳି ।
ପୂଜାମଙ୍ଗଳ ଛଳେ ଦେଇ ହୁଳହୁଳି ॥
ନବକୁମାରୀଯୂଥ ଯେନ ସୁଲୋଚନା ।
ବିଘ୍ନସେନୀ ଚରଣେ କରନ୍ତି ଅର୍ଚ୍ଚନା ॥
ସେହୁ ଉତ୍ସବ ଦେଖିଲ ସୁଫଳ ଆଜ ।
ନିଶ୍ଚେ ଲଭିବ ମନୋରଥପୂର୍ଣ୍ଣ କାର୍ଯ୍ୟ ॥
ପୂର୍ବ ଅନୁରାଗ ଏବେ ସଂଯୋଗ ହେବ ।
ଚନ୍ଦ୍ରାବଳୀ ବରଣମାଳା ଗଳେ ଦେବ ॥
ଶୀଘ୍ର କହି ସକଳ ମନ ବଳାଇବ ।
ନବକନ୍ୟାଗଣଙ୍କ ସଙ୍ଗେ ମିଳାଇବ ॥
ଏତେ କହି ପୌର୍ଣ୍ଣମାସୀ ଅନ୍ତର ହେଲେ ।
ବଞ୍ଚା ବାଳ ଯେନ ହରି ବନକୁ ଗଲେ ॥
ଏଥି ଅନନ୍ତରେଣ ସେହୁ ଚନ୍ଦ୍ରାବଳୀ ।
ସଖୀ ସଙ୍ଗରେ ଗଉରୀ ତୀର୍ଥରେ ମିଳି ॥
ସ୍ନାନ ବେଶ ହେଲେ ସେ ନାନା ଅଳଙ୍କାରେ ।
ଗନ୍ଧଚନ୍ଦନ-ଚୂଆ-ପୁଷ୍ପ-ତାମ୍ବୂଳରେ ॥

ନୟନେ ଅଞ୍ଜନ, ସିନ୍ଦୂର ଶିଖକ ଭାଲେ ।
ବେଶ ଅନୁରୂପେ ଏକ ଆରକୁ ବଳେ ॥
ସମବୟସ୍କା ନବୀନା ସକଳବାଳୀ ।
ପୂଜାଛଳରେ ବନେ ପଶି ଫୁଲ ତୋଳି ॥
ଅଗ୍ରତରୁ ତଳରେ କନକଚଉରା ।
ମଧ୍ୟେ ମଣିମଣ୍ଡପ ମଣ୍ଡଣୀରେ ତୋରା ॥
ସିଂହାସନେ ବିଘ୍ନସେନା ପ୍ରତିମା ସ୍ଥାପି ।
ପୂଜାବିଧାନେ ହୋମ ଇଷ୍ଟମନ୍ତ୍ର ଜପି ॥
ଗନ୍ଧପୁଷ୍ପ ଧୂପ ଦୀପ ନୈବେଦ୍ୟ ଦେଇ ।
ନାନା ଯନ୍ତ୍ର ବଜାଇ ଆଳତି ବନ୍ଦାଇ ॥
ପ୍ରିୟସଖା ସଙ୍ଗେ ସେହୁ ବନେ ଗୋବିନ୍ଦ ।
ଗୁପତରେ ରହି ଦେଖି ଅତି ଆନନ୍ଦ ॥
ଧୈର୍ଯ୍ୟ ଧରି ନ ପାରିଣ ମିଳିଲେ ଆଗେ ।
ଚନ୍ଦ୍ରାବଳୀ ଅବଲୋକେ ସଜନୀ ସଙ୍ଗେ ॥
ଗରୁଁ ଶତେ ଗୁଣରେ ବିକାର ବାଧିଲା ।
ସାହା ପାଇ ମଦନ ଅଧିକେ ବିନ୍ଧିଲା ॥
କନ୍ୟାଗଣ ଚକିତେ ନିରେଖି ନିଶ୍ଚଳେ ।
ପୂଜା-ଉତ୍ସବ ଛନ୍ନ-ମନର ଚଞ୍ଚଳେ ॥
ଏକ ଆରକେ ମନାସିଲେ ବର ଦେଖି ।
ଅତି ଉତ୍ସବରେ ଆଖି ରହିଲା ଲାଖି ॥
ଅନଳକୁ ଦେଖିଣ ପତଙ୍ଗ ଯେସନ ।
କୃଷ୍ଣରୂପ ଦେଖି କନ୍ୟାଗଣ ତେସନ ॥
କେହୁ ବୋଲେ ଅପୂର୍ବ ଏ ଅଇଲେ କାହୁଁ ।
କେହୁ ବୋଲଇ ସଖି ବ୍ରତଫଳ ଏହୁ ॥
କେହୁ ବୋଲଇ ବିହି ଘଟିଣୁ ବାହାର ।
ଅତି ବିଚକ୍ଷଣ ରୂପ ଦେଖ ଏହାର ॥
ଦରଶନେ ନାଶ ଗଲେ ସର୍ବ ଅଶୁଭେ ।
କୋକନଦ ଚରଣ ଭୁଲନ୍ତେ ନ ଶୁଭେ ॥
ଶିର ବିଚିତ୍ର ଶିଖା ଝୁଲନ୍ତେ ଉକୁଟେ ।
ଯେସନେ କମନୀୟ ରାଜା ଶିର ମୁକୁଟେ ।
କେହୁ-ବୋଲଇ ଆଜାନୁଭୁଜ ଲମ୍ବିତ ।
କୁନ୍ଦ କଳି ମରକତ ସ୍ତମ୍ଭ ନିର୍ମିତ ॥
କେହୁ ବୋଲଇ ହୃଦୟ ଦେଖ ବିସ୍ତାର ।
ନୟନେ ଦରଶନ ମାନସେ ହେଲ ନିସ୍ତାର ॥

କେହ୍ହୁ ବୋଲଇ କଣ୍ଠ ଏ କମ୍ବୁ ଆକାର ।
ଦେଖି ମନେ ହେଲ୍ଲ ମୋର କାମ ବିକାର ॥
କେହ୍ହୁ ବୋଲଇ ରମ୍ଭିତ୍ଥି ଚରଣ ଛନ୍ଦେ ।
କେହ୍ହୁ ବୋଲଇ କଟି କେଶରୀକୁ ନିନ୍ଦେ ॥
କେହ୍ହୁ ବୋଲେ ଅଧର ପକ୍ୱବିମ୍ବ ଜିଣି ।
ଗଦ୍ଗଦ ଶୁଭେ ମେଘ ଗମ୍ଭୀର ବାଣୀ ॥
କେହ୍ହୁ ବୋଲଇ ନାସା ତିଳଫୁଲ ନିନ୍ଦୁ ।
ମୋତି ଅମୃତବିନ୍ଦୁ ଏ ନୟନ ଇନ୍ଦୁ ।
କେହ୍ହୁ ବୋଲଇ ନୟନ ନଳିନ-ବାଣ ।
କେହ୍ହୁ ବୋଲଇ ଭ୍ରୂଲତା କାମକମାଣ ॥
କେହ୍ହୁ ବୋଲେ କପୋଳ ଅଷ୍ଟମୀ-ଚନ୍ଦ୍ରମା ।
ଗୋରୋଚନା ତିଳକ ଦିଶଇ ସୁଷମା ॥
କେହ୍ହୁ ବୋଲଇ ଭ୍ରମର ଚିକୁର ଜୂଡ଼ା ।
ନାନା କୁସୁମରେ ଶୋଭା କେତକୀ ବେଢ଼ା ॥
ଚଉରୀର ଚୂଳ ଚନ୍ଦ୍ରିକାକୁ ଭୁ ଗୃହ୍ନି ।
ଯୁବା ଯୁବତୀ ଦଳନେ ମଦନ ସାହା ॥
କୃଷ୍ଣ ଯୌବନ ଅଙ୍ଗେ ଯା ନୟନ ପଡ଼ି ।
ଆନ ଠାବକୁ ନ ଯାଇ ଶୋଭାକୁ ଛାଡ଼ି ॥
ନୀପମୂଳରେ ତ୍ରିଭଙ୍ଗ ଛନ୍ଦରେ ।
ବାୟେ ମୋହନ ମୁରଲୀ ବିମ୍ବଅଧରେ ॥
ନବ ଜମ୍ବୁନଦ ମୂର୍ତ୍ତି ତଡ଼ିତବାସ ।
ଶିଖୀଶିଖଣ୍ଡ ଶକ୍ରକୋଦଣ୍ଡ ସଦୃଶ ॥
ମେଘଗମ୍ଭୀର ବେଣୁନାଦ ଘୋଷ ଜାଣ ।
ମଣି ମୁକୁତାହାର ଏ ବଳାକାଶ୍ରେଣୀ ॥
ବୃନ୍ଦାବନେ ଲାବଣ୍ୟ ଅମୃତ ବରଷେ ।
ଚକ୍ଷୁଚାତକ ପିବନ୍ତି ଅତି ହରଷେ ॥
କନ୍ୟା କୁଚ କମ୍ପେ କେକୀ କରେ ନର୍ତ୍ତନ ।
ଶୁଣି ଯାଉ ବହିଲ କୋକିଳ ବଚନ ॥
ଅଙ୍ଗ ଅବନୀ ଲୋତକ ପୁଲକ ନଦୀ ।
ନୀବିବନ୍ଧ ବିଗଲ ଫୁଲବାଣ ଭେଦି ॥
ପ୍ରେମରସପୂର୍ଣ୍ଣ ମୋଦ ମାନସ ହଂସେ ।
କୂଳ ଲଂଘେ ପ୍ରଖର ପବନ ନିଃଶ୍ୱାସେ ॥
ଝଲେ ସିନ୍ଦୂରବିନ୍ଦୁ ଇନ୍ଦ୍ର ଇନ୍ଦ୍ରଗୋପ ।
ମେରୁ ଧଇର୍ଯ୍ୟ ଦୋହି ଏ ଘନକଳାପ ।

ଲଜ୍ଜା ସୂର୍ଯ୍ୟ ଉହାଡ଼ ଶ୍ୟାମଘନ ଛଳେ ।
ମାର ଶର ଧାରରେ ଜରଜର ବଳେ ॥
ସ୍ତମ୍ଭ ପ୍ରତିମା ପରିଏ ନିଶ୍ଚଳେ ରହି ।
ଦେହ ବୁଦ୍ଧି ପାସୋରିଲେ ସାତ୍ତ୍ୱିକ ବହି ॥
କନ୍ୟାଗଣ ନିରେପିଣ ନନ୍ଦଦୂରେ କହି ।
ମନ୍ଦମନ୍ଦ ହସିଣ କହେ ନନ୍ଦବତ୍ସ ॥
ନବସୁନ୍ଦରୀ ବନେ କିସ ପୂଜା କର ।
ଦୟା କରି କହ ଚିତ୍ତେ ଶରଧା ମୋର ॥
ବହୁକାଳ ତପ କଲେ ତୁମ୍ଭଙ୍କୁ ଲଭି ।
ଓଷା ପୂଜା କର ତୁମ୍ଭେ କାହାକୁ ଭାବି ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ସୁନ୍ଦରୀ ।
ପାଦତଳ ଶୋଭାକୁ ସେ ନୁହନ୍ତି ସରି ॥
ନେସ ସୁଫଳ ବହୁତ ପୁଣ୍ୟଫଳରେ ।
ଯୋଗେ ଅଇଲ ଏ ବନେ ବିହି ବଳରେ ॥
ଚକ୍ଷୁ କୃପଣ ଲଭିଲ ଅମୂଲ୍ୟନିଧି ।
ଚିର ତୃଷିତ ପାଇଲ ସ୍ୱାଦୁ ପୟୋଧି ॥
ବନେ ତୁମ୍ଭଙ୍କୁ ଦେଖିଲୁଁ ଶିବପ୍ରସନ୍ନେ ।
ନୋହେ ବିଫଳ ଉତ୍ତମ ଜନ ଦର୍ଶନେ ॥
ନନ୍ଦନନ୍ଦନ ବଚନ ମୋହନ ଫାସି ।
ସର୍ବସୁନ୍ଦରୀ ମନ ମଦନେ ଆକର୍ଷି ॥
ଚନ୍ଦ୍ରାବଳୀ ଆଳି ପଦ୍ମା ନାମେ ଚତୁରୀ ।
ସେ ବୋଇଲା ଶୁଣ ଯାହା ପଚ୍ଛର ହରି ॥
ଗୋବର୍ଦ୍ଧନମଲ୍ଲ ପ୍ରିୟା ଏ ଚନ୍ଦ୍ରାବଳୀ ।
ମନରତ୍ନ ପୂର୍ବେ ଏହାର ଗଲା ଚୋରି ॥
ସଖୀ ପ୍ରାଣଧନକୁ ନ ପାଇ ବିମନ ।
ଲେଶ୍ଚି ସ୍ନାନ ଭୋଜନ ଆଉ ଭୋଗମାନ ॥
ସଖୀ ଧନ ବିରହେ ବାତୁଳ ହୋଇଲା ।
ଯେତେ ଉପାୟ କଲୁଁ ଏ ଭଲ ନୋହିଲା ॥
ନାନାଯନ୍ତ୍ରଜ୍ଞ ଗଣକ ଜନଙ୍କୁ ପୁଚ୍ଛୁଁ ।
ଚୋରର ଭେଟ ପାଇବାକୁ ବନେ ବୁଲୁଛୁଁ ॥
ପୌର୍ଣ୍ଣମାସୀ ଆଜ୍ଞାରେ ଗଉରୀ ଚରଣେ ।
ପୂଜା କରନ୍ତୁଁ ମନରତନ କାରଣେ ॥
ଦେବୀ କହିଛନ୍ତି ଏ ଶଙ୍କଟ ତୁଟିବ ।
ଓଷା ପୂର୍ଣ୍ଣ ଦିବସେ ଚୋରକୁ ଭେଟିବ ॥

ବ୍ରତପୂର୍ଣ୍ଣ ନିଯୋଗରେ ଭେଟିଲୁ ତୁମ୍ଭଙ୍କୁ ।
ବେଗେ ଦେବା ହେଉ ସଖୀ-ମନ ଧନକୁ ॥
ଲୋକ ନ ଜାଣୁ ଏବେ ବେଗ କରି ଦିଅ ।
ଭଲଲୋକ ବୋଲାଇଣ ଗୋପରେ ଥାଅ ॥
କୁଳବଧୂ ହୃଦରୁ ଚିତ୍ତ ଚୋରାଇଲେ ।
ଗୋପେ କେଉଁ ଦ୍ରବ୍ୟ ଆଉ ରହିବ ଭଲେ ॥
ଏତେ ବୋଲି ଧଇଲା ଶ୍ରୀକୃଷ୍ଣ ଅଞ୍ଚଳ ॥
ଗିରେ ଗଦଗଦ ହରି ଅତି ଚଞ୍ଚଳ ।
କୃଷ୍ଣ ବୋଲନ୍ତି ନୋହୁ ଆମ୍ଭେ ତୁମ୍ଭ ଚୋର ।
ଏବେ ମନକୁ ବଳେ ନେଉଛ ଆମ୍ଭର ॥
ଯେବେ ଅପ୍ରତ କଲ ନିୟମ ଦିଆଅ ।
ଚନ୍ଦ୍ରାବଳୀ କୁଚଶମ୍ଭୁ-ଶିର ଛୁଆଁଅ ॥
ବେଣୀ ଫଣୀ ଶିରେ ଅର୍ଦ୍ଧଚନ୍ଦ୍ର ଭୂଷଣ ।
ଛୁଇଲେ କୃତାର୍ଥ ହେବ ଲେଛୁ ଦୂଷଣ ॥
ଦୋଷେ ପଡ଼ିଲେ ଦଣ୍ଡିବ ଚୋର ବେଭାରେ ।
ଧର୍ମ ବୁଝାମଣା କର ତୁମ୍ଭ ସଭାରେ ॥
ମଧୁମଙ୍ଗଳ ମିଳିଲେ ଏମନ୍ତ ଦେଖି ।
ଦୁଇ ଦିଗ ଅନୁମତେ କରାଇ ସାକ୍ଷୀ ॥
ବଟୁ ବୋଇଲେ କହ ଏ କିସ ଚରିତ ।
କଥା ଜାଣିଲେ ସିନା କହିବା ଉଚିତ ॥
ପଦ୍ମା ବୋଇଲେ ଏ ଆମ୍ଭ ପୁରକୁ ଗଲେ ।
କଥା ନ କହି ତଳକୁ ବଦନ କଲେ ॥
ଆମ୍ଭ ଚନ୍ଦ୍ରାବଳୀକି ଭେଳିକି ଲଗାଇ ।
ଦମ୍ଭ ଧଇର୍ଯ୍ୟ ଧୀର ବିବେକ ଭଞ୍ଜାଇ ॥
ରଞ୍ଜି ଲୋଚନେ ଅଞ୍ଜନ ମୋହ କରାଇ ।
ସଖୀ-ମନ ଧନକୁ ଆଣିଲେ ଚୋରାଇ ॥
ସେହିଦିନୁ ସୁନ୍ଦରୀ ବିଷମ ଉଚାଟ ।
ଏତେକାଳେ ଯୋଗ ଆମ୍ଭେ ପାଇଛୁଁ ଭେଟ ॥
କଥା ମିଛ ହୋଇଲେ ଏହାଙ୍କୁ ପଚାର ।
ସତ୍ୟ ଉଭୟ ମତରେ ଚିତ୍ତେ ବିଚାର ॥
କୃଷ୍ଣ ବୋଇଲେ ଏବେ ଆମ୍ଭ ତହୁଁ ଶୁଣ ।
ଏହୁ ମାନେଣ୍ଟି ଗଳ ବଧିକାରୀଗଣ ॥
ହୂଳହୂଳି ସୁସ୍ୱର ଆଣିଲ କଡ଼ାଇ ।
ଧୂପଗନ୍ଧ ମାନସ ସୁବାସବଢ଼ାଇ ॥
ରୂପ ଟୋପରେ ପକାଇ ରଖିଲେ ଧରି ।
ପ୍ରତ୍ୟକ୍ଷରେ ଦେଖିଲ ପରଛ କି ବିଚାରି ॥
ବଟୁ କହିଲେ ଧର୍ମ ସେ କହିବୁ ଆମ୍ଭେ ।
ପକ୍ଷ କହିବୁ କି ଯେତେ କହିଲେ ତୁମ୍ଭେ ॥
ଚନ୍ଦ୍ରାବଳୀ ମନ ଧନ କରିଛ ଚୋରି ।
ଆମ୍ଭେ ଜାଣିଲୁଁ ତୁମ୍ଭ ବିଷୟ ବିଚାରି ॥
ବେଳେ ନେଇଥିଲେ ଯେ ଆରବେଳେ ମନ ॥
ଲୋଭ ବହି ଯଶ ପାଇ ସେ ଚୌରଜନ ॥
ଏହାଙ୍କର ମତେ ଥିଲେ ବ୍ରତ ବିଧାନେ ।
ତୁମ୍ଭେ ଲୁଚି ଲୁଚି ଅଇଲ ସନ୍ନିଧାନେ ॥
ଚହ୍ନି ଧଇଲେ ଗତକଥା ହେଉ କରି ।
ନେଇ ଚୋର ଦଣ୍ଡରେ ଦଣ୍ଡିବେ ଚତୁରୀ ॥
ଭୁଜ ରଜ୍ଜୁରେ ନିବନ୍ଧେ କରି ବନ୍ଧନ ।
ନଖ-ଦନ୍ତକ୍ଷତରେ କରି ଛିନ୍ନଭିନ୍ନ ॥
ଗାଢ଼େ କଚଗିରିବର ରଖୁ ମଡ଼ାଇ ॥
ଆଜ ଜାଣିବା କେମନ୍ତେ ଯିବ ଛଡ଼ାଇ ॥
ଏତେ କହିଣ ବଟୁ ବଦନ ମୋଡ଼ିଲେ ।
କୃଷ୍ଣ ତରୁଣୀ-ପ୍ରେମ ସମୁଦ୍ରେ ବୁଡ଼ିଲେ ॥
ହରିଭାବେ ସୀମନ୍ତିନୀବୃନ୍ଦ ଆବେଶେ ।
ନେତ୍ର ଖଞ୍ଜନ ବନ୍ଧ ସେ ଲାବଣ୍ୟ ପାଶେ ॥
କି କହିବା କି କରିବା ବୁଦ୍ଧି ନ ଦିଶେ ।
ଜାଣି ଶୀଘ୍ର ମିଳିଲ ପୌର୍ଣ୍ଣମାସୀ ଆଦେଶେ ॥
କନ୍ୟାଗଣକୁ ରାଇ ବିଶ୍ୱାସେ କହିଲେ ।
ତୁମ୍ଭ ପ୍ରାଣନାଥ ଏହୁ ବର ବୋଇଲେ ॥
ଯେଉଁ ନିମନ୍ତେ ଏତେ ବ୍ରତ ପୂଜା କର ।
ଉପବାସେ ଜାଗର ନିଶି ଉଜାଗର ॥
ଯାତ୍ରା ତୀର୍ଥ ସ୍ନାନ ଦାନ ମୂର୍ତ୍ତି ଦର୍ଶନ ।
ଏହି ପୁଣ୍ୟରେ ହରି ହୋଇଲେ ପ୍ରସନ୍ନ ॥
ଇଚ୍ଛାବର ବରି ଏହୁ ବଚନ ବିହରି ।
ପୌର୍ଣ୍ଣମାସୀ ଦେବୀ ଆଜ୍ଞା ଶିରେ ଧରି ॥
ବନ୍ଦି ବୃନ୍ଦାଳି-ମାର ରନ୍ଧ୍ର ପାଇ ଯେହ୍ନେ ।
ଶୀଘ୍ର ବଚନେ ଗୋପକନ୍ୟାଗଣ ତେହ୍ନେ ॥
ବନେ ପଶିଣ ସୁନ୍ଦରୀ କୁସୁମ ତୋଳି ।
ଅନୁରୂପେ ଯେ ଯାହାର ଗୁନ୍ଥିଲେ ମାଳ ॥

କୃଷ୍ଣ ବିଜୟେ କଲୁ ପାଦପ-ମଣ୍ଡପେ ।
କାମ-ବିମୋହନ-ନବଘନ ଶ୍ୟାମରୂପେ ॥
ଚନ୍ଦ୍ରାବଳୀ କରେ ଘେନି ଚମ୍ପକମାଳା ।
କର୍ଣ୍ଣମାନେ ଲଗାଇଲେ ମୋହନ ଗଳା ॥
ହରି ହସ୍ତରେ ଘେନି ମରକତ-ମାଳା ।
ମୃଦୁହାସେ ଲମ୍ବାଇ ଚନ୍ଦ୍ରାବଳୀ ଗଳା ॥
ଗୁରୁ ଚନ୍ଦ୍ର ମିଳନେ ସମ୍ପ୍ରୀତି ଦୁହେଁ ।
ମାଳା ଦେଇ ବରିଲେ କୁମାରୀସମୂହେ ॥
ହରି ହୃଦ ଶୋଭାବନ ବରଣମାଳେ ।
ପ୍ରେମନଦୀ ବହିଲା କି ଶୀଳ ଶଇଳେ ॥
ଇଚ୍ଛାବର ବରିଲେ ଗୋପକନ୍ୟାଯୂଥ ।
ସୀୟ ବୋଇଲେ ନାମ ଆଜଠୁଁ ଗୋପୀନାଥ ॥
କୃଷ୍ଣ ବେଢି ଚଉପାଶେ ନବସୁନ୍ଦରୀ ।
ମରକତ-ପୁରଟ-କନକ ପାଟେରୀ ॥
ବଚ୍ଛାବୃନ୍ଦ ବେଢ଼ିଣ ଆବର ଦ୍ୱିତୀୟେ ।
ବନଜୀବ ରହିଲେ ବେଢ଼ିଣ ତୃତୀୟେ ॥
ଶ୍ୟାମା ବୋଲି ଏକ ଗୋପୀ ପଛରେ ଥିଲା ॥
କିଶଳୟ -କୁସୁମେ ସେ ମାଳା ଗୁନ୍ଥିଲା ॥
ଚଉପାଶରେ ବୁଲି ନ ପାଇଣ ବାଟ ।
ଖେଦଭରେ ସୁନ୍ଦରୀ ମନରେ ଉଚାଟ ॥
ଦୂରରେଣ ଥାଇ ତାହା ଜାଣିଲେ ହରି ।
ଆସ ଆସ ବୋଲିଣ ବାମ କରେ ଠାରି ॥
କନ୍ୟା ବେଢ଼ିଥିଲେ ଯେ ବଳୟ ଆକାରେ ।
ମନେ ଗରବ ବହି ଏକ ଆରକରେ ।
ମୁହିଁ ମାଳା ଦେଇଣ ବରିଛି ଆଗରେ ।
କୃଷ୍ଣ ନୟନ ମନ ମୋ ଅନୁରାଗରେ ॥
ଆଉମାନଙ୍କ ଠାରେ ଅନୁରାଗ ନାହିଁ ।
ସବୁ ମନେ ଏମନ୍ତ ଗର୍ବଭାବ ବହି ॥
କରେ ବେଣୁ ଧରିଣ ବେଗରେ ଫୁଙ୍କାରେ ।
ସମ୍ଭାବନା ପାଇଣ ପଛ ଅନୁସରେ ॥
ବାହାରେଣ ଥାଇଣ ଜାଣିଲା ଗୋପିକା ।
କୃଷ୍ଣ ସନ୍ନିଧିକୁ ବୋଲି ଗମିଲା ଏକା ॥
ଗୋପୀମାଳା ହରି କଣ୍ଠ ମୂଳେ ବହିଲେ ।
ବୀର ଦେଖି ବନମାଳୀ ନାମ ଥୋଇଲେ ॥

ବାହୁ ଅବଲମ୍ବି ସେ ଗୋପିକା କାନ୍ଧରେ ।
ଶୋଭା ହୋଇଲା ଯୁଗଳ ମଣ୍ଡପ ମଧ୍ୟରେ ॥
ଦେଖି ସୁନ୍ଦରୀ ଗଣ ଗର୍ବ ହେଲା ଧ୍ୱଂସି ।
ଅଧୋ ବଦନରେ ପାଦ ମହୀରେ ଘଷି ॥
ଅପମାନ ପାଇଲେ ଜାଣି କହେ ହରି ।
କି କେ ମୁଖ ପୋଛିଲ ସକଳ ସୁନ୍ଦରୀ ॥
ଏହୁ ଗୋପିକା ଆମ୍ଭର ଜାଣିଲା ମନ ।
ମାଳା ହୃଦୟେ ପୁରି ବକ୍ଷୋଦେଶ ଚୂର୍ଣ୍ଣି ॥
ନାନା କୁସୁମେ ଗୁନ୍ଥି ସର୍ବେ ଦେଲେ ମାଳା
କିଶଳୟ-ପୁଷ୍ପ ଶ୍ରେଣୀ ଏହୁ ଦେଲା ॥
ବାହୁ ଅବଲମ୍ବ ତେଣୁ କଲୁ ତା କନ୍ଧେ ।
ଜାଣିଣ ଦର୍ପ ଯେ ତାହାକୁ ନ ବାଧେ ॥
ଆମ୍ଭ ମନ ଅନୁସରି ସେ ବା ଖଟିଲା ।
ତୁମ୍ଭମାନଙ୍କ କର୍ମ୍ମ ହରଷ ଛୁଟିଲା ॥
କରଯୋଡ଼ି କହନ୍ତି ସକଳ ସୁନ୍ଦରୀ ।
ଗର୍ବଗଞ୍ଜନ ନିଜ ନାମ ବିସ୍ତାରି ॥
ଏତେ ବୋଲି ପାଦେ ପଡ଼ି ସକଳ ବାମା ।
ଦୀନବତ୍ସଳ ନାଥ ଦୋଷକର କ୍ଷମା ॥
ହସି କନ୍ୟାକୁ ତୋଳି ହୃଦରେ ଧଇଲେ ।
କୃଷ୍ଣ ଅଙ୍ଗ ସଙ୍ଗ ପାଇ କ୍ଷୋଭ ଛାଡ଼ିଲେ ॥
ଗୋପୀଗଣଙ୍କୁ ଘେନିଣ ବନେ ବିହରି ।
ଧୀର ଧୂର୍ତ୍ତ ଲଳିତ ଅଛନ୍ତି ଶ୍ରୀହରି ॥
ସର୍ବେ ବସିଲେ ମାଧବୀ ମଣ୍ଡପ ତଳେ ।
ଉପରଣ-ବସନ ଆସନକୁ ଦେଲେ ॥
ଗୀତ ଗାନ୍ଧାର ପଞ୍ଚମସ୍ୱରେ ଗାୟନ ।
ବୀଣା ଅମୃତ-ରବ ଶ୍ରୁତି ରସାୟନ ॥
କୃଷ୍ଣ ସଙ୍ଗରେ ବସି ଗାବନ୍ତି ସୁନ୍ଦରୀ ।
ରସ ମଧୁର ଧ୍ୱନି ଦଶ ଦିଶ ପୂରି ॥
ସ୍ୱର୍ଗ ବିଦ୍ୟାଧର ଆଦି ସେ ସ୍ୱର ଘେନି ।
ପୁଷ୍ପ ବରଷି ଆନନ୍ଦ ଦିଗ ଅବନୀ ॥
ବହେ ମନ୍ଦ ସୁଗନ୍ଧି ବଳୟ ମରୁତ ।
ବୃନ୍ଦାବନରେ ମଙ୍ଗଳ ଧ୍ୱନି ପୂରିତ ॥
କୃଷ୍ଣ ଚନ୍ଦ୍ରାବଳୀ ଶୋଭା ଦିଶେ ଆକାଶ ।
ଆହ୍ଲାଦ ପାଇଣ କୁସୁମ ବିକାଶ ॥

ନଦୀ ସ୍ଥକିତ ହୋଇ କୂଳକୁ ଲଙ୍ଘିଲେ ।
କରି କେଶରୀ ଆଦି ହିଂସାକୁ ଛାଡ଼ିଲେ ॥
ତରୁ ମଧୁଧାର ସ୍ରବେ ପାଷାଣ ଦ୍ରବେ ।
କୃଷ୍ଣ ଭାବେ ପୁଲକ ବନଭୂମି ସ୍ୱନେ ॥
ସିଂହାସନରେ ହରି କୋଳେ ଚନ୍ଦ୍ରାବଳୀ ।
ନବଘନେ ସ୍ଥକିତ କି ହେଲା ବିଜୁଳି ॥
ଶ୍ୟାମା ଭଦ୍ରା ମଙ୍ଗଳା ପାଳୀ ପୃଥେଶ୍ୱରୀ ।
ଏହାଙ୍କର ମେଳରେ ଅନେକ ସୁନ୍ଦରୀ ॥
ପଦ୍ମା ସବ୍ୟା ତାରକା ସୁଚିତ୍ରା କପାଳୀ ।
ଲୀଳା ବିମଳା ତରଙ୍ଗିଣୀ ଚନ୍ଦ୍ରଶାଳୀ ॥
କାମମଞ୍ଜରୀ ମଞ୍ଜୁଭାଷୀ ମନୋରମା ।
କେଳିମଞ୍ଜରୀ କୃଷ୍ଣସାରଙ୍ଗ କୁଙ୍କୁମା ॥
କେଳିରବୀ କମଳା ଶାରୀ ସୁସାରସାକ୍ଷୀ ।
ହାରାବଳୀ ତାରାବଳୀ ସେ ଚକୋରାକ୍ଷୀ ॥
ଗୁଣବତୀ ଭାରତୀ ସୁମୁଖୀ କୁମୁଦା ।
ବଳାକରୀ ଖଞ୍ଜନେକ୍ଷଣୀ ବିଶାରଦା ॥
ଏହୁ ଆଦି ଅନେକ ଚନ୍ଦ୍ରାବଳୀ ସଖୀ ।
ଅନ୍ତ କରି କି ତାହା ମୁଁ ପାରିବି ଲେଖି ॥
ଯେଝା ସେବା ନିଯୋଗି ଜଗି ଚଉପାଶେ ।
ଖଦି ଚାମର ତାଳ କେ ପୁଷ୍ପ ବରଷେ ॥
କେହୁ ଆଲଟ ବିଞ୍ଚଣି ଦର୍ପଣ ଦେନି ।
ଧୂପଧୂଆଁ ସଜ ଦେନି କେହୁ କାମିନୀ ॥
କେହୁ ବଡ଼ଆ ଭାଙ୍ଗିଣ କରାଏ ଲାଗି ।
ପାନପିକ ପରାଖ କେହୁ ଦେନି ଜଗି ॥
ରତ୍ନଝରରେ ସୁବାସ ନୀର ପୂରାଇ ।
କେହୁ କୁସୁମଶଯ୍ୟା ରଚନା କରଇ ॥
ବସ୍ତ୍ର ଅଲଙ୍କାର ଦେନି କେହୁ ମୃଗାକ୍ଷୀ ।
ଚତୁଃସମ ଗନ୍ଧ ପେଡ଼ି କେ ଦେନିଅଛି ॥
କେହୁ ଉଭା ହୋଇ ଛନ୍ଦ ପାଦୁକା ଧରି ।
ମଧୁପାତ୍ର ଦେନନ୍ତି କେବଣ ଚତୁରୀ ॥
କେହୁ ବେତ ଧରିଣ କରଇ ଜଣାଣ ।
କେହୁ ପାଏଡ଼ା ପାରି ପହଣ୍ଡ ମଣାଣ ॥
କେହୁ ଭୋଜନେ ନାନା ଦ୍ରବ୍ୟ ନିଯୋଗଇ ।
ଲଡୁ ଶାକର ଖଣ୍ଡସର ଘୃତ ଖାଇ ।
ଆମ୍ବ ପଣସ କଦଳୀ ଏ ନଟିକାଳ ।
ଜାମୁ ଜମ୍ବିଲ ଗୋଟିକା ସର ବହୁଳ ॥
ଏହିରୂପେ ଯେ ଯାହାର ସେବା ଆଚାର ।
କୃଷ୍ଣଚନ୍ଦ୍ର ଚନ୍ଦ୍ରବଳୀ ଚିତ୍ତକୁ ହରି ॥
ଅତି ମତ୍ତ-ଉତ୍କଣ୍ଠା ସେ କାମଲାଳସେ ।
କାନ୍ତ ସଙ୍ଗତରେ ଏକାନ୍ତରେ ବିଳସେ ॥
ହାସରସ ରହସ୍ୟ ଇଙ୍ଗିତ ବଚନ ।
ପ୍ରେମ ଚୁମ୍ବନ ହାବ ଭାବ ଆଲିଙ୍ଗନ ॥
ବାଙ୍କେ ଚାହିଁବା ରହିବା ଅଙ୍ଗଭଙ୍ଗିମା ।
ମାନେ ନୟନ ଧରେ ଅଧର ରଙ୍ଗିମା ॥
ଅନନ୍ତ ଜଗତ ପ୍ରେମ ମିଳେ ନାହିଁ ନାହିଁ ।
ଏକ ସଖୀକି ଦେଖାଇ ଆନେରଜ କହି ॥
ଚନ୍ଦ୍ରାବଳୀ ଅନୁଗତେ କରନ୍ତି କୋଳ ।
କୃଷ୍ଣ ଅଙ୍ଗ ସୁଗନ୍ଧ ପାଇ ଗୋପୀ ଭୋଳ ॥
କେହୁ କାହାକୁ ବୋଲଇ କୁଞ୍ଜକୁ ଯାଅ ।
ଚିରକାଳ ମଦନ ବେଦନା ଛଡ଼ାଅ ॥
କେହୁ କହଇ କୃଷ୍ଣକୁ ସଖୀ ହିତରେ ।
ଏକ ସୁନ୍ଦରୀ ଲୁଚେ ଏ କୁଞ୍ଜ ଭିତରେ ॥
ଆସ ଦେଖିବା ବୋଲି ଅଞ୍ଚଳ ଧରଇ ।
ନେତ୍ରଅପାଙ୍ଗ ବିଞ୍ଚି ମନକୁ ହରଇ ॥
ରତିଲାଳସେ ଆଳସେ ରହେ କେ ବାଙ୍କେ ।
କୃଷ୍ଣ ଅଙ୍ଗମାଧୁରୀ ଶୋଭା ଅବଲୋକେ ॥
କର୍ଣ୍ଣମୂଳେ କହେ କେ ଅଙ୍ଗୁଳି ଦେଖାଇ ।
ଏହା ନୟନେ କାମବିଶିଖ ରଖାଇ ॥
ଧାଇଁ ଧରନ୍ତେ କେହୁ ବୋଲେ ମୁହିଁ ନୁହେଁ ।
କାମ ଲୁଚି ଏହା କୁଚକନ୍ଦରେ ରହେ ॥
ହୃଦେ ଲଗାଇ ଭିଡ଼ିବା ଏ କଥ ସତ ।
କୃଷ୍ଣ ବୋଇଲେ ଯାହା କହିଲ ଉଚିତ ॥
କର ବଢ଼ାଇ ଆଲିଙ୍ଗନେ ଆକର୍ଷଣେ ।
ଆଡ଼ ହୋଇ ଦେଖାଇ ଆନ ବିଶେଷଣେ ॥
ଦେଖ କପାଳରେ ଶୋହେ କସ୍ତୁରୀ ଚିତା ।
ଭବଭୟ କାମଦେବ ଗୋପନ ଲତା ॥
ଭ୍ରୂକମାଣ ଅଞ୍ଜନସୁରେଖ ବାଣ ।
ନେତ୍ର ପଞ୍ଚମବାଣେ ଅପାଙ୍ଗ ପୂରଣ ॥

ଗୁଡ଼ି ଅନ୍ତର୍ଦ୍ଧି ଟାଣି ମନ୍ଦ ମୃଦୁ ହାସେ ।
କାମ ବନ୍ଧ ବେଢ଼ କରେ ଶ୍ରବଣ ପାଶେ ।।
ମଦନ ବୁଡ଼ାଇ ରୂପ ମୋହନ ସାଗରେ ।
ଆଜ ଯୋଗ ପଡ଼ିଅଛି ତୁମ୍ଭ ଆଗରେ ।।
କାମ ସଂଗ୍ରାମେ ରହିଛି କର ବଢ଼ାଇ ।
କଞ୍ଚୁଳା କେତକୀ ବେଢ଼ା ପତାକା ଉଡ଼ାଇ ।।
ଯେବେ ଏହାକୁ ସଂଗ୍ରାମେ ସାଧି କରିବ ।
ତେବେ ରସିକ ନାଗର ଛନ୍ଦ ଧରିବ ।।
କୃଷ୍ଣ ଶୁଣି ଉତରେ ତାର କର ବଢ଼ାଇ ।
ବାସ ଧରିଣ କହନ୍ତି କର ଛଡ଼ାଇ ।।
ଦେଖ ପାଳିକା ମଦନା ମଦନ ସାକ୍ଷୀ ।
ହେମ କୁମ୍ଭେ ଅମୃତ ହୃଦେ ଅଛି ରଖି ।।
ମୁଦ କସ୍ତୁରୀ ଚିହ୍ନ ବସନ ଆଚ୍ଛାଦ ।
ଭସ୍ମ ଅଙ୍କୁର କାମ ଶିବେ ହବ ବାଧ ।।
ଏହୁ ସୁଧା ଘଟ ଲୁଟ ମହତବାଧ ।
ହରି ପାଳିକା କୁଚ ଦଳିବାରେ ସଧ ।।
ଆଡ଼ ହୋଇ ବେଷ ବନ୍ଧ ଛନ୍ଦ୍ରମ ଦମ୍ଭେ ।
ମଙ୍ଗଳାକୁ ଦେଖାଇଣ କହେ ଆରମ୍ଭେ ।।
ଆରେ ମଙ୍ଗଳା ଥାଉ ପାଳିକା ସ୍ମରଣି ।
ଏହୁ ତାପିତ ହେ ଶ୍ୟାମଘନ ବରଷି ।।
କୂଟଗିରି ଅଞ୍ଚଳେ ଆଚ୍ଛାଦେ ଚଞ୍ଚଳା ।
ଉଡ଼ପାଉ ଉଚ ଉରଜ ମୋତିମାଳା।
ଗଣ୍ଡେ ତାମ୍ବୁଳ ବୋଳ ଇନ୍ଦ୍ରଧନୁ ଦିଶୁ ।
ନାଦ ଗମ୍ଭୀର କିଙ୍କିଣି ନୂପୁର ଘୋଷୁ ।।
ଶ୍ରମଜଳେ ହୃଦୟ-କାମାନଳ ଲିଭୁ ।
ପ୍ରେମଲତା ଅଙ୍କୁରି ଭାବଫଳ ଲଭୁ ।।
ଶୁଣି ଆଗଭର ହରି ପାଳି ବଚନେ ।
ଅନୁରାଗ ମଙ୍ଗଳା ବାଳୀ ଆଲିଙ୍ଗନେ ।।
ଚନ୍ଦ୍ରାବଳୀକି ସେ ଯେ ଦେଖାଇ ଭାଷଇ ।
ଚନ୍ଦ୍ର ଥାଉ ରାହୁ ଆନ ଗ୍ରହେ ଗ୍ରାସଇ ।।
ପୂର୍ଣ୍ଣ ଅମୃତ ପାନ କରିବ ଯହିଁରେ ।।
ସେହୁ ରସ ପାଇବ କି ଆନ ତହିଁରେ ।
ଚନ୍ଦ୍ରଗ୍ରହଣେ ସର୍ବ ଆନନ୍ଦେ ପୂରିତ ।
ତାମ୍ବୁଳେ ଜଳେ ଯେହ୍ନେ କୁସୁମ ପତ୍ର ।।

ଶୁଣି ହରି ଚନ୍ଦ୍ରାବଳୀ ଆଳିଙ୍ଗନେରେ ।
ଦେଖି କୁଙ୍କୁମା କହଇ ସଖୀ ଜନରେ ।।
ଅନୁରାଗେ ଉପରାଗ କଳାବଛଦେ ।
ପୂର୍ଣ୍ଣଚନ୍ଦ୍ର କୃଷ୍ଣ ବିଧୁନ୍ତୁଦ ଆଚ୍ଛାଦେ ।।
ପୂର୍ବଦିଗୁଁ ଚିବୁକ କଳା ପାଞ୍ଚାଙ୍ଗୁଳେ ।
ସୁଧାଧର ପାନେ ଗ୍ରାସ ସମ୍ପୂର୍ଣ୍ଣେ ଭଲେ ।।
କଇରବୀ କୁମୁଦକ ରହେ ସଙ୍କୁଚିତେ ।
ପଦ୍ମା କମଳା ଦେଖି କହେ ପ୍ରଫୁଲ୍ଲିତେ ।।
କାମତୀର୍ଥରେ ସ୍ନାନ ବାକ୍ୟ କେହୁ ଜାଣ ।
''ବ୍ୟା ବୋଲେ ମନ୍ତ୍ର ମୁଁ କରିବ ବଖାଣ ।

ଶ୍ଳୋକଃ ।

ସ୍ୱସ୍ଥାନଂ ଗମ୍ୟତାଂ କୃଷ୍ଣ ତଜ୍ୟତାଂ ଚନ୍ଦ୍ରସଙ୍ଗମଃ
କାମକୁଣ୍ଡାଳୟୋର୍ନିଷ୍ଟ୍ ସ୍ନାତପୀଡ଼ା ଷଣ୍ଡଂକୁରୁ ।।

ମଙ୍ଗଳାକୁ ତେଜି କୃଷ୍ଣ ନିକୁଞ୍ଜେ ଗମେ ।
କାମକୁଣ୍ଡାଳ ଯେ ଚନ୍ଦ୍ରାବଳୀ ସଙ୍ଗମେ ।।
ରତିତୀର୍ଥେ ସ୍ନାନରେ କାମପୀଡ଼ା ଯାଉ ।
ଏହୁ ଯୁଗଳ ଆମ୍ଭର ହୃଦରେ ରହୁ ।।
ମନୋରମା ବୋଲେ ସ୍ନର ବାକ୍ୟ ହୋଇଲା ।।
ଜପ ମନ୍ତ୍ର ଧ୍ୟାନ ଏଥି ଜାଣ କି ଭଲ ।
ଶୁଣି ମନ୍ତ୍ର ବିଧାନ କହେ ଶିବାବାଳୀ ।।
ହରି ଚନ୍ଦ୍ରାବଳୀଭ୍ୟାମ୍ ନମୋ ମନ୍ତ୍ର ବୋଲି ।।
ଏହି ଯୁଗଳ ରୂପ ହୃଦରେ ଚିନ୍ତିବ ।
ତାରା ବୋଲେ କି ଦାନ କେଉଁ ବିପ୍ରେ ଦେବ ।।
ବୋଲେ ବିମଳା ଦାନ ସ୍ନର ଶାସ୍ତ୍ର ମତେ ।
ଚଉଷଠି ବନ୍ଧ କଳା ବିଧାନ ଯେତେ ।।
ବିପ୍ରଲବ୍ଧା ଚିନ୍ତା ନିଜ ଧନ ସୁରତ ।
ବୃନ୍ଦାବନ ଦ୍ୱିଜରାଜ ଦେଇ ପୀରତ ।।
ସାତ କୁମ୍ଭ କୁଚ କୁମ୍ଭ କର ଦକ୍ଷିଣା ।
ସ୍ୱସ୍ତି କରି ଚନ୍ଦ୍ର ଚିହ୍ନ ନଖ ଲକ୍ଷଣା ।।
ଏହି ପୁଣ୍ୟ ଫଳେ ହରି ପ୍ରସନ୍ନ ହେବେ ।
ଶୁଣି କୃଷ୍ଣଚନ୍ଦ୍ରାବଳୀ ହୃହାସ ଭାବେ ।।
ମଞ୍ଜୁତର ନିକୁଞ୍ଜପୁଞ୍ଜ ପୁଷ୍ପ ଶେଯେ ।
ବନମାଳୀ ଚନ୍ଦ୍ରାବଳୀ ଏକାନ୍ତ ବିଜେ।

ସଖୀଗଣମାନ ଅଷ୍ଟଦ୍ୱାରେ ଯେ ରହେ ।
କେତେବେଳେ ବିହରେ ଯୁବତୀ ସମୂହେ ॥
କେତେବେଳେ ଶୟନ ପାନ ସମ୍ପାଦନ ।
କେତେବେଳେ ସଭା ବସି ନୃତ୍ୟଗାୟନ ॥
କେତେବେଳେ ବସି ଖେଳ ପଶାରେ ହୋଡ଼ ।
ସଖା ସଖୀ ମିଳନେ ଦୁଇଆଡ଼େ ପୀଡ଼ ॥
କେତେବେଳେ ବା ସ୍ନାନ ସୁବେଶ ଭୋଜନ ।
ନାନାବେଶେ କନ୍ୟାଗଣ ମନରଞ୍ଜନ ॥
ଏକେ ଏକେ ରମିଲେ ନିବିଡ଼ କୁଞ୍ଜରେ ।
ମନ ପୂରେଇ ରଖିଲେ ସୁଖ ପିଞ୍ଜରେ ॥
କୃଷ୍ଣ ନାଗରବର ପୁରୁଷ ଉତ୍ତମ ।
ସର୍ବଚିତ୍ତ ଆକର୍ଷଣ ନେତ୍ର ବିଶ୍ରାମ ॥
ଚନ୍ଦ୍ରାବଳୀର ବିଳମ୍ବ ଦେଖି ମୁଖରା ।
ପୁରୁଁ ବାହାର ହୋଇଣ ତେଜ ପ୍ରଖରା ॥
ବନେ ପ୍ରବେଶ ହୋଇଣ କରେ ଗର୍ଜନା ।
ଶୁଣି ସଭା ଭାଙ୍ଗିଲେ ସକଳ ଅଙ୍ଗନା ॥
କୃଷ୍ଣ କୁଞ୍ଜରେ ପଶିଣ ଗଲେ ପଳାଇ ।
ସଖା ସଙ୍ଗେ ମିଶିଣ ବାଛୁରୀ ଚରାଇ ॥
ତରତର ସୁନ୍ଦରୀ ପୁର ଆଗମନେ ।
ଆଗେ ଯିବା ମୁଖରା ନ ଦେଖି ଏ ସ୍ଥାନେ ॥
କୃଷ୍ଣବିଚ୍ଛେଦ ଗୁରୁଜନ ଅପବାଦ ।
ଉଭୟ ମତରେ ନ ଚଳେ ବେନିପାଦ ॥
ବିରସରେ ଆସନ୍ତେ ପଥରେ ଦେଖିଲେ ।
ଦେଖି ମୁଖରା କୋପେ ବଚନ ବୋଇଲେ ॥
ଏତେବେଳ ଯାଏ କହିଁ ଆଜ ରହିଲ ।
ଭୟ ନ କରି ମନେ ଗରବ ବହିଲ ॥
ଇଚ୍ଛାମତେ ଏକାନ୍ତେ କାନନେ ବିହର ।
କୁଳବଧୂରେ ଏତେ ସାହସ କାହାର ॥
ଆଜ ଏ ବନେ ଥିଲା ଯଶୋଦାତନୟ ।
ଶୁଣିଲା ବେଳରୁ ମୋତେ ଲାଗିଲା ଭୟ ॥
ସଖୀଗଣ ବୋଇଲେ ଶୁଣ ଠାକୁରାଣୀ ।
ଆଜ ପୂଜା ପ୍ରସନ୍ନ ହେଲେ ଗୋସାମଣି ॥
ପ୍ରତ୍ୟକ୍ଷରେ ମନୋରଥ ବର ପାଇଲୁଁ ।
ବ୍ରତ ପୂର୍ଣ୍ଣ କରିବା ନିମନ୍ତେ ରହିଲୁଁ ॥

ପଥ ଦେଖିଲୁଁ ବହୁ ଚରାଏ କହ୍ନାଇ ।
ବଣା ହେଲୁଁ ବାଟ ଘୁଡ଼ି ତାଙ୍କୁ ଅନାଇ ॥
ତେଣୁ ପାଦ ଥକାଇ ପଛକୁ ଅନାଉଁ ।
ତୁମ୍ଭେ ତାପ କରିବା ଜାଣି ଖେଦ ପାଉଁ ॥
ପୁଣି ବୋଇଲେ ଦେଖା ବେଶ କମ୍ପା ଭଙ୍ଗ ।
ଲିଭା ସିନ୍ଦୂର କଜ୍ଜଳ ଗଣ୍ଡେ କି ରଙ୍ଗ ॥
ଫିଟି କବରୀ ଲୋଟଇ ଚରମ ଦେଶ ।
ବିପରୀତ କରି ଏହୁ ପିନ୍ଧିଛୁ ବାସ ॥
ଶୁକ ଚଞ୍ଚୁଘାତ ପରି ଅଧର-ବିମ୍ବ ।
ବକ୍ଷଦେଶେ ନଖ ଚିହ୍ନ ଏ କି ବିଡ଼ମ୍ବ ॥
ରାହୁମୁକ୍ତ ଚନ୍ଦ୍ର ପ୍ରାୟେ ଦିଶେ ଆନନ ।
ମଧୁକରେ ମଧୁପାନ ଦିଶେ ସୁମନ ॥
ଶୈବ୍ୟା ବୋଲେ ଯାହା କହିଲ ଅନୁସରି ।
ଚନ୍ଦ୍ରାବଳୀ ସେବନ୍ତୀ ତୋଳେ ଡାଳ ଧରି ॥
ଅଳିକୁଳ ଫୁଲ ତେଜି ଏ ମୁଖେ ବସେ ।
ଭୟେ କଣ୍ଟକ ଲତାର ଭିତରେ ପଶେ ॥
ଭୃଙ୍ଗ ନିବାରେ କଣ୍ଟକ ଅଙ୍ଗେ କଣ୍ଟିଲା ।
ଉର ଅଧର କ୍ଷତ କବରୀ ଫିଟିଲା ॥
ପୁଣ ପୁଣ ଝାମ୍ପଇ ମଧୁପ ଚୁମ୍ବନେ ।
କେଶ ବସନ ଶ୍ଳଥ ମୁଖ ଆଚ୍ଛାଦନେ ।
ଆମ୍ଭେମାନେ ଥିଲୁକୁ ଆଣିଲୁଁ ସମ୍ଭାଳି ।
ଏକା ହୋଇଲେ କି କରନ୍ତା ଚନ୍ଦ୍ରାବଳୀ ॥
ବୁଢ଼ୀ ବୋଇଲା କହିଲ ସତ ଲୁଚାଇ ।
ନାନାପ୍ରକାରେ ଦେଖାଇ କଥା ବଞ୍ଚାଇ ॥
ଏବେ ମାରଗମାଳା ପାଇଲ କାହିଁ ।
ଏ ତ ଅମୂଲ୍ୟନିଧି ଆମ୍ଭ ଘରେ ନାହିଁ ॥
ଏଣୁକରି କଥାମାନ ଆନ ଜାଣୁଛୁ ।
ତୁମ୍ଭ ସବୁରି ଚରିତ ପରମାଣୁଛୁ ॥
ପଦ୍ମା ବୋଲେ ଏ ମାଳ ଯେ ଶ୍ୟାମଳ ଶ୍ୟେନ ।
ଗଗନରେ ଉଡ଼ନ୍ତେ ପଡ଼ିଲା ଅବନୀ ॥
ଏହା ଯାଇ ଚନ୍ଦ୍ରାବଳୀ ଉରେ ବହିଲା ।
ହେମଗିରି ଶିଖରେ ଯମୁନା ବହିଲା ॥
ଆଜ ପୂଜା ଫଳରେ ଯେ ଏହା ପାଇଲୁଁ ।
ପ୍ରତ୍ୟକ୍ଷରେ ବର ବୋଲି ଯାହା ବୋଇଲୁଁ ॥

ଚନ୍ଦ୍ରାବଳୀ ଆଣ୍ଟ କି ନ ମଣାଲ ବଳ ।
ମୁଖ ଗୁଡ଼ି ନ କରେଣି କହୁଁ ନ ବୋଲ ॥
ଏକମେଳ ହୋଇ ନିଜ ଭୁବନେ ମିଳ ।
ଚନ୍ଦ୍ରାବଳୀ ବନମାଳୀ ସୁରତ କେଳ ॥
ବନେ ବିନୋଦ ସଙ୍କେତ ଗଉସଣ୍ଟାର୍ଥେ ।
କେଉଁ ଦିନ ଭେଟ ହୁଏ ଯମୁନା ପଥେ ॥
ସଖୀଗଣ ଘେନି ଫୁଲ ତୋଳି ଯାଇ ।
ସଖାଗଣ ଘେନି ହରି ବତ୍ସ ଚରାଇ ॥
ଦୁଇଜଣ ଉମାଷ୍ଟାର୍ଥେ ବନେ ମିଳନ ।
ଦିନୁଦିନୁ ବଢ଼ିଲା ଅତି ପ୍ରୀତିଧନ ॥
ନ ରହନ୍ତି ସଦନରେ ମଦନ ଡରେ ।
ନ ମଣନ୍ତି ଗୁରୁଜନ କୁଳ ବେଭାରେ ॥
ଏକ ଆରେକ କାନ-କୁହାକୁହି ଗୋପେ ।
ହରି ଚନ୍ଦ୍ରାବଳୀ ପ୍ରୀତି ଆନନ୍ଦ ରୂପେ ॥
ଲୋକ ଅପବାଦ ଶୁଣି ଆକଟେ ଶାଶୂ ।
ସଙ୍ଗେ ଜଗିଆ ଦେଇଣ ନ ଛାଡ଼ନ୍ତି ପାଶୁଁ ॥
ଦୁଇଜଣ ବିଚ୍ଛେଦରେ ବିରହ ବଢ଼ି ।
ମନସିଜ ମରମ ପାଇ ଗାଢ଼େ ପୀଡ଼ି ॥
ଜଗିଜଗିଣି ଭେଟ ନ ପାଏ କହ୍ନାଇ ।
ଶିବ ଦେବୀଙ୍କି ରାଇଣ କହେ ମନାଇ ॥
ପ୍ରାଣବାନ୍ଧବୀ ମୋତେ ଏଡ଼େ ହେଲା କଲି ।
କାମନଦୀ ବଢ଼ିଲେ ବୁଡ଼ାଇଲା ହେଲା ॥
ଭାସି ଯାଉଅଛି ମତେ ଲଗାଅ କୂଳେ ।
ଅବଲମ୍ବ କରାଅ ଚନ୍ଦ୍ରଲତା ମୂଳେ ॥
ମୋର ଜାଣନ୍ତେ ଦୋଷ କରିନାହିଁ କିଛି ।
କେଉଁ କାରଣେ ଭେଟ ନ ଦିଏ ମୃଗାକ୍ଷୀ ॥
ଝାସି ଅନଳ-ଅନଙ୍ଗେ କରଇ ତପ ।
ନାମମନ୍ତ୍ର ଜପିଣ ଧ୍ୟାନମସ୍ତୁ ରୂପ ॥
ଏତେ ତପରେ ମୋତେ ନୋହିଲା ପ୍ରସନ୍ନ ।
ଧ୍ୟାନେ ଦେଖିଲି ସାକ୍ଷାତେ ନୁହେ ଦର୍ଶନ ॥
ଜୀବଦାନ ଦେଉ ଦେଇ ଅଧରୁ ସୁଧା ।
ପ୍ରୀତିଧନ ଦେଇ ମନ ନେଇଛି ବନ୍ଧା ॥
ଚନ୍ଦ୍ର ଘନ ନ ଦେଖି ଚକୋର ଚାତକ ।
ଚନ୍ଦ୍ରାବଳୀ ନ ଦେଖି ମୁଁ ତେତେହେଁ ଆତଙ୍କ ॥

ଅରବିନ୍ଦ ମକରନ୍ଦ ଚୁମ୍ବି ସେ ଅଛି ।
ସେହି ଅଳି ମନ ଆନ ଫୁଲ କି ଅଛି ॥
ନେତ୍ରପିଚ୍ଛିଳ ଦରଭ୍ରୂଭଙ୍ଗି ସୁନ୍ଦରୀ ।
ଗୁଣଗଉରୀ ପ୍ରାଣଧନ ଜୀବେଶ୍ୱରୀ ॥
ମୋର ବିରହ-ବେଦନା ତା ଆଗେ କହ ।
ତାର ଦର୍ଶନ ଲାଳସେ ରହିଛି ଦେହ ॥
ବେଗେ କହିଣ ଆଣ ସେ ଅବୋଧ ବାଳା ।
ଏତେ ବୋଲି ଦେଲେ କଣ୍ଠ-କମଳମାଳା ॥
ପୁଷ୍ପ ସନ୍ଦେଶ ଘେନି ଭ୍ରମରେ ଚଳିଲେ ।
ଚନ୍ଦ୍ରାବଳୀ ସନ୍ନିଧି ଏକାନ୍ତେ ମିଳିଲେ ॥
ଗଳେ ମାଳା ଦେଇ ବସି ସନ୍ଦେଶ କହେ ।
ବନେ ବନେ ବୁଲେ ହରି ତୋର ବିରହେ ॥
ବ୍ରଜରାଜ-ନନ୍ଦନ ଗୋକୁଳ-ନାୟକ ।
ତୋର ହେତୁ ପୀଡ଼ା କଲା ଫୁଲସାୟକ ॥
ସ୍ନାନ ସୁବେଶ ଭୋଜନ ନ ରୁଚେ କିଛି ।
କ୍ଷୀଣ ତନୁ ତୋର ଗତ ସୁରତ ଇଚ୍ଛି ॥
ଚନ୍ଦ୍ର ଚନ୍ଦନ ପବନ ବିଷ ସମାନ ।
ସଖା ସଙ୍ଗ ସୁଖରଙ୍ଗ ନ ରୁଚେ ମନ ॥
ନାହିଁ ବିଦଗଧ ବାଣୀ ବାଙ୍କଚାହାଣି ।
ନାହିଁ ବିମ୍ବାଧରେ ହାସ ତ୍ରିଭଙ୍ଗ-ଠାଣି ॥
ନାହିଁ ହାର ଭୂଷଣ ବନପୁଷ୍ପମାଳ ।
ନାହିଁ ଲୋଟଣୀଜୁଡ଼ା ଶିଖିପୁଚ୍ଛଚୂଳ ॥
ନାହିଁ ନୃତ୍ୟମଣ୍ଡଳୀ ଗାନ୍ଧାର ଗାୟନ ।
ନାହିଁ ତାଳ ତାନମାନ ରମ୍ୟ ବାୟନ ॥
ଏକା କେବଳ ତୋର ଗୁଣ ଗାଉଅଛି ।
ଶ୍ରବଣେ ତୋ ନାମ ଶୁଣି ସୁଖ ପାଉଛି ॥
କେଶ କାଳନ୍ଦୀ ବଦନ ନଳିନ ଗନ୍ଧ ।
ଦନ୍ତପନ୍ତି କୁନ୍ଦ ଅଧର କୋକନଦ ।
ହାସ କଇରବ ଅଳି ଅଳକାବଳୀ ।
ଜଳ ନିର୍ମଳ ମୁଖ ଉପମାରେ ଛଳି ॥
କର ମୃଣାଳ କୁଚ ଚକ୍ରବାକ ମଣେ ।
ଲମ୍ବି କେଶରୀ ମଝି କ୍ଷୀଣ ପରିମାଣେ ॥
ବୀଣା ଭ୍ରମି ନିତମ୍ବ ବୋଲି ମନେ ଧରେ ।
ରମ୍ଭାତରୁ ଏ ଉରୁ ପରିରମ୍ଭ କରେ ॥

ହଂସାଗମନ ଦେଖି ପଥ ମଣିମଣ୍ଡଳେ ।
ପିକ ନାଦ ଶୁଣି ଚକ୍ର କରଇ କୋକିଳ ॥
ଉଡ଼ୁ ଚକୋରନ୍ତ ବଦନ ପ୍ରବୀଣ ଲେଉଡ଼ଇ ।
ନ ଦେଖି ମୋହନ ମୂର୍ଚ୍ଛା ଯାଇ ପଡ଼ଇ ।
କେତେ ବେଳରେ ପୁଣିହିଁ ପାଇ ଚେତନା
ଏହିରୂପେ ତୋର ରୂପ କରେ ଭାବନା ॥
ମୋତେ ଯାଇଣ ତୋର ସମ୍ମୁଖକୁ ପେଷିଲା ।
ତୋର ରୂପ ଲୟ କରି କୁଞ୍ଜେ ବସିଲା ॥
ଗୋପ ନରେଶ ନାଗେଶ ବଶ ଯାହାକୁ ।
କସ ଭେଳକ ଲଗାଇ ଅଛୁ ତାହାକୁ ॥
ବେଗେ ଯାଇ ପ୍ରାଣନାଥ ଜୀବନ ରଖ ।
ତୋର ବନ୍ଧୁ ହୋଇଅଛୁ ଅନ୍ତ ନରେଖ ॥
କେଳିକୁଞ୍ଜ ନିରେଖି ଲୋତକ ଝରଇ ।
ମୂଣ ପୁନ ପଲ୍ଲବଶଯ୍ୟା ଅନୁସରଇ ॥
ଏହା ତହୁଁ ଶୁଣି ପ୍ରାଣନାଥ ବିରହ ।
ଛନ୍ନ ମନ ତରଳିତ ତନୁ ଅବହ ॥
ଚନ୍ଦ୍ରାବଳୀ ବୋଇଲେ ଶୁଣ ବକ୍ର ଦେଶୀ ।
କୃଷ୍ଣ ବିଚ୍ଛେଦେ ହେଲି କାମେ ପରାଭବ ॥
କପଟେ କୃଷ୍ଣ ବିରହ ମୁଁ ତହୁଁ ଅଧିକେ ।
ଚଉପାଶେ ଜଗିଆ ଯିବାକୁ ସନ୍ଧିକେ ॥
ଗୁରୁଜନ ଆକଟେ ଜନ ଅପବାଦେ ।
ଉଦ୍‌ବେଗ ମନ ମୋର କୃଷ୍ଣ ବିଚ୍ଛେଦେ ॥
ଫୁଲଶର ଘାତରେ ଯାଆନ୍ତା ଜୀବନ ।
ଯେଣୁ ଅଧରୁ ଅମୀୟ କରିଛୁ ପାନ ॥
ତେଣୁ ଜୀବନ ଯାଉ ବେଦନା ସହଇ ॥
କାମ ବିଷମ ବାଣ ହୃଦୟ ଦହଇ ।
ବନେ ଯିବାକୁ ମୋତେ ନ ଦିଶେ ଉପାୟ ॥
ଆଜ ପୁରକୁ ମୋର କରନ୍ତୁ ବିଜୟ
ଏତେ କହିଣ କର୍ପୂର ବିଡ଼ିଆ ଦେଲେ ।
ଶାରୀ ସନ୍ଦେଶ ଘେନି ତ୍ୱରିତ ଚଳିଲେ ॥
କୃଷ୍ଣ ସନ୍ନିଧି ଯାଇ ହୋଇଲେ ପ୍ରବେଶ ।
ଦେଖି ହରି ଆସନ ତେଜିଣ ହରଷ ॥
ଦେଇ କର୍ପୂର ବିଡ଼ିଆ ସନ୍ଦେଶ କହେ ।
ହରି ଚନ୍ଦ୍ରାବଳୀ କ୍ଷୀଣ ତୋର ବିରହେ ॥

ଚନ୍ଦ୍ର ବଦନ ମଳୟାନିଳ ଅନଳ ।
ହାରମାଳା ପଙ୍କଜ ଅଶନ ଗରଳ ॥
କାମଦାରୁଣ ବାରଣ ମରମେ କଣ୍ଟଇ ।
କେଶବାସ ଫିଟିଣ ଅବନୀ ଲୋଟଇ ।
ନେତ୍ର ଅମ୍ବୁ କୁଚଶମ୍ଭୁ ଶିରେ ଢାଳଇ ॥
ରତ୍ନ ମରକତ ପୁଷ୍ପେ ନୀଳ ଉତ୍ପଳ ।
ଗନ୍ଧେ ମୃଗମଦ ବାସେ ଶ୍ୟାମଦୁକୂଳ ॥
ହାର ଅଙ୍ଗନ ଭୂଷଣ ଏ ପଞ୍ଚଦ୍ରବ୍ୟ ।
ଯେତେ ରତ୍ନ ଆଭରଣ ବିଷ ସରବେ ॥
ଗୁରୁଜନଙ୍କ ଆକଟେ ନୁହେ ବାହାର ।
ତୋର ଦର୍ଶନେ ବଡ଼ ଉତ୍ସାହ ତାହାର ॥
କଥା ଦେଖାଇ ମୋତେ ଏତେକ ଭାଷିଲା ।
କୃଷ୍ଣ ପକ୍ଷେ ଚନ୍ଦ୍ରାବଳୀ ଶୋଷ ନାଶିଲା ॥
ଦିନୁ ଦିନୁ କ୍ଷୀଣ ନିତ୍ୟରେ ଷିନଦଶା ।
ଅଭିସାର ପ୍ରଥମେ କରି ପୂର୍ଣ୍ଣଆଶା ॥
ଦିଷ୍ଟିସୂରେ ମିଳନ ତୃଷ୍ଣାସୂରେ ଗମନ ।
ଦୂରେ ରହିଲା ଦେଖି ସେ କାନ୍ତ ମଳିନ ॥
କାନ୍ତୁ ବିଚ୍ଛେଦକୁ ଭାବ କାନ୍ତ ମଳିନ ॥
ଦିନ ପ୍ରଖର ତାପେ ତାରକାହି ବନେ ।
ଲୁକେ ନିଜ ସଦନେ ପଶିଣ ଭ୍ରମନେ ॥
ପୁଣି ସୁଧା ପାଇଲେ ଉଦୟ ହୋଇବ ।
ଏ ସମସ୍ୟାକୁ କୃଷ୍ଣଙ୍କ ସମ୍ମୁଖରେ କହିବ ॥
ସଖୀ ଚନ୍ଦନ କର୍ପୂର ଲେପନେ ତନୁ ।
ତାପ ପାଇ ତମକ ମଣଇ କୃଶାନୁ ॥
ଭୃଙ୍ଗକୁଳ ଝଙ୍କାରେ ଶ୍ରବଣ ବୁଜଇ ।
ପିକଧ୍ୱନି ଭେଦିଲେ ଚେତନା ହଜଇ ॥
ତୋର ସନ୍ଦେଶ ଶୁଣି ସଚେତ ହୋଇଲା ।
ଘେନ କମଳା ମଳା ହୃଦେରେ ବହିଲା ।
କଥା ଅମୃତ ଶ୍ରବଣେ କରି ଆପାନ୍ୟ ॥
ଯାହା ଦେଖିଲି ତୋର ବିନୁ ନାହିଁ ଆନ ।
ଗୁଡ଼ ପୀରତ ଶୀରତ ବିଧି ବିଧାନ ॥
ବସି ତୋର ରୂପ କରେ ଅନୁସନ୍ଧାନ ।
ବଦନରେ କୃଷ୍ଣ କୃଷ୍ଣ ମାଳୀ ଜପଇ ॥
ନବଘନେ ତଡ଼ିତ ଲତା ନିରୋପଇ ।

ଘର ଗିରସ୍ତ ଅଛଇ ମଥୁରାପୁରେ ।
ଶାଶୁ ନଣନ୍ଦ ଶୁଅଇ ଦାଣ୍ଡଦୁଆରେ ॥
ଦୁଇଶ୍ୱର ପ୍ରିୟାସହଚରୀ ସଙ୍ଗେନେ ।
ଅନ୍ତେଶ୍ୱର ନେତା ପୁରେ ଅଛି ଏକାନ୍ତେ ॥
ଅତି ସୁଯଞ୍ଜ ଘଞ୍ଜ ଯେ ନକ୍ର ଲତିକା ।
ଦିବସରେ ଅନ୍ଧକାର ବନବାଟିକ ॥
ଆଜ ରଜନୀ ପାଞ୍ଚ ଘଡ଼ିରେ ଗମନ ।
ଶୁଣି ଶ୍ୟାମମୋହନ ମନ ଛନ୍ଦ ଛନ୍ଦ ॥
ଏତେ କହିଣ ଗୀତ ହୋଇଲେ ଅନ୍ତର ।
ମଧୁମଙ୍ଗଳ ସୁବଳ ସଙ୍ଗେ ବହୁର ॥
ଉଦବେଗ ହୋଇ ହରି କାମେ କାତର ।
ଭୁଣ୍ଡି ଜାଡ଼ ବାନ୍ଧଣ ନ ଆସେ ଉତ୍ତର ॥
ତନୁ କମ୍ପଇ ମଦନଶରଘାତରେ ।
ହୃତାନଳେ ତରଳ କଦଳୀ ବାତରେ ॥
ସଙ୍ଗସୁଖ ସଦନେ ନ ରମଇ ମନ ।
ଚିତ୍ତ ଚଞ୍ଚଳ ବିପରୀତ ଆଲୁଆନ ॥
ନେତ୍ର ଶତପତ୍ରମିତ୍ର ଅସ୍ତ ବାଞ୍ଛଇ ।
ମନକୁମୁଦ ଚନ୍ଦ୍ର ଉଦୟ ଇଚ୍ଛଇ ॥
ଦିଶ ବାସର ନିଶାଗମ ଅନୁସରେ ।
ତରୁତମାଳ ଗହଳ ଦେଖେ ସୁଖରେ ॥
ଶ୍ରଦ୍ଧା ନହଇ ଅମିୟ ଅଶନ ଦ୍ରବ୍ୟେ ।
ଚନ୍ଦ୍ରାବଳୀର ବଡ଼ୟା କେବଳ ଚର୍ବେ ॥
ପ୍ରିୟଜନ ସନ୍ନିଧେ ଦେଖିଲେ ବିରସ ।
ଗତି ବିପରୀତ କଥା ଅତି ନୀରସ ॥
ଏମନ୍ତେ ଯେ ରବି ମେରୁ-ଉହାଡ଼େ ଗଲେ ।
ଆକାଶରେ ତାରାଗଣ ପ୍ରକାଶ ହେଲେ ॥
ଜଗତରେ ଆସିଣ ତିମିର ଘୋଟିଲା ।
କାମଶର ମରମେ ଅଧିକ କଣ୍ଟିଲା ॥
କୃଷ୍ଣ ମିତ୍ର ବଢ଼ାଇ ଛଦ୍ମ ଶୟନେ ।
ଚନ୍ଦ୍ରାବଳୀ ସନ୍ଦେଶେ ନିଦ୍ରା କି ନୟନେ ।
ପୂର୍ବ କବାଟ କଳ ପଶ୍ଚିମ ଦୁଆର ।
ରାଜ ପାଞ୍ଚଘଡ଼ିମାନେ ହେଲେ ବାହାର ॥
ସଙ୍ଗେ ଅଛନ୍ତି ସୁବଳ ମଧୁମଙ୍ଗଳ ।
ଲୋକଭୟେ ଗମିଲେ ତରୁତଳ ତଳ ॥

କଷ୍ଟ କଷ୍ଟରେ ଶିଷ୍ଟ ମେଣ୍ଟାଇ ଚଳିଲେ ।
ଗୋବର୍ଦ୍ଧନମଲ୍ଲ ପୁର ଅନ୍ତେ ମିଳିଲେ ॥
ଦ୍ୱାର ଆକଟ ଭିତରେ ନ ପାରେ ପଶି ।
ଚଉପାଶେ ବୁଲନ୍ତି ଉପାୟ ନ ଦିଶି ॥
ଚନ୍ଦ୍ରାବଳୀ ଚନ୍ଦ୍ରଶାଳ-ପୁର ପାଚେରି ।
ନାନା ତରୁ ଫଳଭରେ ହୋଇଅଛି ଘେରି ॥
ବୃଳବଳ ଓହଳ କରମଙ୍ଗା ଡାଳେ ।
ମଧୁମଙ୍ଗଳ କାନ୍ଧେ ଚଢ଼ି ତା ଧଇଲେ ॥
ରଜ୍ଜୁ ଛନ୍ଦଣୀ ନିଶ୍ରେଣୀ ସୁବଳ ଦେଲେ ।
ଡାଳେ ଲଗାଇ ଖସି ଭିତରେ ପଶିଲେ ॥
ଚଉପାଶେ ବୁଲିଣ ଦ୍ୱାରେ ଠାବ କରି ।
କବାଟରେ ଧୀରେ କର ଠକିଲେ ହରି ॥
ଚନ୍ଦ୍ରାବଳୀ ଜାଣିଣ ସଖୀଙ୍କି କହିଲେ ।
କବାଟରେ କେ ହସ୍ତ ମାଇଲା ବୋଇଲେ ॥
ଶୁଣି ସଜନୀ ଦ୍ୱାର ଫେଡ଼ିଣ ଅନାଇ ।
ଛପିରହିଛନ୍ତି ଦେଖିଲେ ସେ କହ୍ନାଇ ॥
ବେଗେ ଧରି ବୋଲନ୍ତି ଏ କାହିଁର ଚୋର ।
ଏତେ ଆକଟେ କେହ୍ନେ ପଶିଲା ଭିତର ॥
କୃଷ୍ଣ ବୋଲନ୍ତି ମୁଁ ଏହି ପୁରରେ ଚୋର ।
ମୋତେ ଧରି ଜଗିବାକୁ ଶକ୍ୟ କାହାର ॥
ପ୍ରାଣସଖୀ ନିମନ୍ତେ ଦୁର୍ଗମେ ଅଇଲି ।
କରମଙ୍ଗା ସ ାକୁ କରମେ ପାଇଲି ॥
ମତେ ତୁମ୍ଭେ ବହୁତ ନକର ଜଞ୍ଜାଳ ।
ଜଳୁଅଛି ମୋ ଅଙ୍ଗେ ଅନଙ୍ଗ ଅନଳ ॥
ବେଗେ ଲଭିଅ ଚନ୍ଦ୍ରାବଳୀ ପ୍ରେମଜଳେ ।
ଶୁଣି ସଖୀ ହସି ପାଦ ମଣାଇ ନେଲେ ॥
ଚନ୍ଦ୍ରାବଳୀ-ଶୟନ ପଲଙ୍କରେ ବିଜେ ।
ଅତି ମୃଦୁଳ ମଞ୍ଜୁଳ ଲତନ ବିରାଜେ ॥
ଦେଖି ଛଦ୍ମେ ନିଦ୍ରା-ତରଳିତ କାୟେ ।
ଦମଦମ କ୍ରିୟା ଖରନିଶ୍ୱାସ ବହେ ॥
ସ୍ତମ୍ଭ ସାତ୍ତ୍ୱିକ୍ୟଭାବେ ମଦନରେ ଜଡ଼ ।
କୃଷ୍ଣ ଲାବଣ୍ୟ ପିଅଇ ନୟନ ଫେଡ଼ ॥
କୃଷ୍ଣଚରଣ ତଳେ ଦେଇ ଚିତ୍ତବୃତ୍ତି ।
ମିଳେ ଦରିଦ୍ରପୁରେ କି ଅମୂଲ୍ୟନିଧି ॥

ହରି କରକମଳ ଧଇଲେ ଯେ ତରେ ।
ତନୁ ଶୀତଳ ନିଜ ସ୍ୱଭାବକୁ ଧରେ ॥
ସୁହ୍ନିଁ ଚମକି ଉଠି ବଦନ ଲମ୍ବାଇ ।
କୁଚ ହେମାଚଳ ମୁଖ-ଶଶୀ ସମ୍ଭାଇ ॥
ଦେଖି ଆରମ୍ଭେ କୃଷ୍ଣ ବିନୟ ବଚନ ।
ମୋର ଦୁଃଖମାନ ସଖୀ କର ମୋଚନ ॥
କହ୍ନାଁ ସଖୀ ତଳମୁଖ କରୁଛ ମାନେ ।
ମାନ ତେଜି ବର ଦିଅ ଯେ ଆଲିଙ୍ଗନେ ॥
ହରି ଆକାଶ ଶୋଭା ଦନ୍ତ ହରଷେ ।
ତନ୍ତ୍ର ଲତାଧରେ ପ୍ରେମାମୃତ ବରଷେ ॥
ଫୁଲକୁଳ ପ୍ରଫୁଲ୍ଲ କୈରବୀ ହାସେ ।
ମାନ-ଅନ୍ଧାର ଗମିଲା ତମାଳ ପାଶେ ॥
ଗତ ସୁରତ ଚିନ୍ତା ଚିତ୍ତ ବିଚଳିଲା ।
ଧୀର ଧଇର୍ଯ୍ୟ ମୋର ଧରଣ ନ ଗଲା ॥
ଏତେ ବୋଲି ଭୁଜେ ଭିଡ଼ି ଲଗାଇ କୋଳେ ।
ମୁଖ-ଚନ୍ଦ୍ର-ଶୋଭା ପ୍ରେମସିନ୍ଧୁ ଉଛୁଳେ ॥
ଚନ୍ଦ୍ରାବଳୀ ବୋଇଲେ ହେ ନାଗରରାଏ ।
ଆସି ନ ଜାଣିବା ଜାଣି କରଇ ଭୟେ ॥
ଆଜ ଦଇବ ଗଉଡ଼ ନାହିଁ ମନ୍ଦିରେ
ଜଗି ମାଏ ଶୋଇଛନ୍ତି ମେଲା କନ୍ଦରେ ॥
ପଥେ ଅଇଲ ଲୋକ ନ ଦେଖିଲେ କେହି ।
ଏଡେ ଉଚ ପାଚେରି କି ପ୍ରକାରେ ଡେଇଁ ॥
ଭୟ ନ କରି ମନରେ ଭିତରେ ପଶି ।
ଗୋପେ କାହାର ହୋଇବ ଏଡ଼େ ସାହସ ॥
ନିଶାପାଳ ଦେଖିଲେ ଯେ ଦଣ୍ଡ ଦିଅନ୍ତା ।
ଗୋପେ କସ ଅପଯଶ ଧ୍ୱନି ଶୁଭନ୍ତା ॥
କାମେ ଆରତ ହରି ହୋଇ ଏଡ଼େ ବାଇ ।
ବିଭା କରାଇବା ନନ୍ଦରାଜାଙ୍କୁ କହି ॥
ଆଉବେଳେ ନ କରିବ ଏମନ୍ତ ବୁଦ୍ଧି ।
ବେଭାରେଣ ମୁଁ ହେଲି ବଡ଼ ଅପରାଧୀ ॥
କୃଷ୍ଣ ବୋଇଲେ ବେଦନା ଜାଣିଲ ଯେବେ ।
ଦୁଃଖ ନାଶ ଗଲା ସୁଖ ପାଇଲୁଁ ତେବେ ॥
ଦେଖା ବୋଇଲେ ନୂଆ ନୂଆ ହିନାକେତେ ।
ଅନୁରାଗ ପୀରତି ହୋଇଥାଇ ଯେତେ ॥

ସେତୁ ଆଦର ପୁଣ ନ ରହଇ ପଛେ ।
ଯେସନ୍ତ ମଧୁପ ମଧୁ ଚୁମ୍ବି ପୁଷ୍ପ ଲେଛେ ॥
କୃଷ୍ଣ ଚାହିଁଲେ ଚକୋର ଚନ୍ଦ୍ରକୁ ସୁହ୍ନିଁ ।
ହନୁହନ ଅନୁରାଗ ବଢ଼ଇ ପାଇ ॥
ଏହିରୂପେ ବେନି ଜନେ ବଚନ ଛଳ ।
କେହି କାହାକୁ ବଚନେ ନ ପାରେ ବଳ ॥
ନାନା ହାସ ରସରେ ରଜନୀ ବଞ୍ଚିଲେ ।
ସୁରଶାସ୍ତ୍ରମତେ କେଳି ଆରମ୍ଭ କଲେ ॥
ଏମନ୍ତେ ରଜନୀ ଯେ ହୋଇଲା ଶେଷ ।
ହରେ ପୂର୍ବଦିଗରେ ପାଣ୍ଡୁର ଆକାଶ ॥
ତାମ୍ରଚୂଡ଼-ଧ୍ୱନି ଶୁଣି ଉଚାଟ ଲାଗେ ।
ବେନିଜନ ମନଦୁଃଖ ସଙ୍ଗ ବିଯୋଗେ ॥
ଲୋକଖ୍ୟାତି ପ୍ରେମପ୍ରୀତି ବିବାଦ ପଡ଼ି ।
କେହି କାହାକୁ ସତ ନ ବଳଇ ଛାଡ଼ି ॥
ଦୁଇ ସହଚରୀ ଯାଇ ଉଚାଟ କଲେ ।
କଥା ଦେଖାଇଣ କହେ ଏକକୁ ଆରେ ॥
ଚନ୍ଦ୍ର ତେଜି ରଜନୀ ନିଜ ସ୍ଥାନେ ଗଲା ।
ହିବାଗମେ କୁମୁଦ ସଙ୍କୁଚିତ ହେଲା ॥
ପଦ୍ମ ବିକାଶେ ଆକାଶେ ତାରା ମଳିନ ।
ଉଦେ ଅରୁଣ କାମୀ ହୃଦୟ ମଳିନ ॥
କାକ କୁକୁଟ କପୋତ କୁଟିଳ ଧ୍ୱନି ।
ଶୁଣି ଲଜ୍ଜା ଆବୋରିଲେ କୁଳକାମିନୀ ॥
ଏହିକ୍ଷଣି ମୁଖରା ଯେ ମିଳିବ ଏଥେଁ ।
ଶୁଣି ବିରସେ କୃଷ୍ଣ ଗଲେ ଗତ ପଥେ ॥
ଦୁଇ ସଖା ସଙ୍ଗେ ନିଜପୁରେ ଶୟନ ।
ନିଦ୍ରା ଆଳସେ ଘୂର୍ମିତ ପଦ୍ମନୟନ ॥
ନିଶା ଶେଷେଣ ମୁଖରା ନିଦ୍ରା ତେଜିଲା ।
ମୁଖ ପଖାଳି ଶ୍ରୀହରି ନାମ ଭଜିଲା ॥
ପୁଣି ସଜନୀଗଣ ମନରେ ଶଙ୍କିଲେ ।
କୃଷ୍ଣ ଆସିବା ଜାଣି ନାମ ବା ଡାକିଲେ ॥
ଗୃହଚର୍ଯ୍ୟ କରେ ପରିଜନ ରାଇ ।
ଦୁଧଭାର ରଖାଇଣ ଦହି ମୁହାଁଇ ॥
ଚନ୍ଦ୍ରାବଳୀ ଶୟନମନ୍ଦିରେ ଠିକିଲା ।
ପୂର ସୁବାସ ଶୋଭା ବୃହ୍ନିଁ ପରକାଶିଲା ॥

ଆଜ-ଚରିତ ତ ଆନ ଆନ ଦିଶଇ ।
ଚଉପାଶ ଚଢ଼ନ୍ତି ସୁଗନ୍ଧ ବାସଇ ॥
ଏହି ପାଟେର କନେ ଦକ୍ଷିଆ ପଡ଼ୁଛି ।
ଆନ୍ତପାଟେ ଅନାଶା ପବନ୍ତ ଛୁଡ଼ୁଛି ॥
ଶୁଣି ଶୈବ୍ୟା କହୁଛନ୍ତି ଶୁଣ ଗୋ ମାଏ ।
କାଲି ଠେଉଁ ପଶିଲ କସ୍ତୁରୀ ଗୋଠାଏ ॥
ରାସପାନ୍ଥବାପାଏ ଏଥି ରହିଥିଲ ।
ଲୋକ ପ୍ରଚଳ ହେବା ଜାଣି ଡେଇଁଗଲ ।
ବୁଢ଼ୀ ବୋଇଲ ଏହୁ କାହା ପାଦଚିହ୍ନ ।
ଅଷ୍ଟାଦଶ ଲକ୍ଷଣ ଦିଶେ ଭିନ୍ନ ଭିନ୍ନ ॥
ପଦ୍ମା ବୋଇଲ ଯେଉଁ ବ୍ରତ ବିଧି କଲ ।
ତାର ଫଳ ଏକଠୁ ହୋଇ ରହିଲା ॥
ପଦ୍ମନିଧି ଶଙ୍ଖନିଧି ଏ ଅଇଶ୍ବର୍ଯ୍ୟ ।
ପୂର୍ଣ୍ଣକଳସ ବାସଙ୍ଗ ସ୍ୱସ୍ତିଧ୍ୱର୍ଯ୍ୟ ॥
କାମଧେନୁ ସମ୍ପଦ ଠୁଳ ତ୍ରିକୋଣ ।
ଗୃହଚନ୍ଦ୍ର ବଜ୍ରାଙ୍କୁଶ ରିପୁ-ମାରଣ ॥
ଶତ୍ରୁ ମିତ୍ର କ୍ଷୟବୃଦ୍ଧି ବିଧିଲକ୍ଷଣ ।
ରେଖାଯିବ ଏ ଶୁଭକର୍ମକୁ କାରଣ ॥
ଦେବ ଦେଲା ବର ମୂର୍ତ୍ତିମନ୍ତ ହୋଇଲା ।
ଧର୍ମପୁରୁଷ ତୁମ୍ଭ ପୁରକୁ ଅଇଲ ॥
ରାଜଶିରୀ ଲକ୍ଷଣ ଚରଣୁ ଉକୁଟେ ।
ରୂପଗୁଣ ଭୂଷଣ ମଣ୍ଡଳ ମୁକୁଟେ ॥
ବ୍ରତ ପୂଜିବାର ଫଳ ପ୍ରତ୍ୟକ୍ଷେ ନେଖ ।
ଆମ୍ଭମାନଙ୍କୁ ପଛେ କରୁଥାଅ ଦୁଃଖ ।
ଶୈବ୍ୟା ବୋଲେ କାଲି ଚିନ୍ତା କଲ ମନରେ ।
ପୁତ୍ର ରହିଲା ମଥୁରା ରାଜ ସେବାରେ ॥
ଖଟି ନ ପାରେ ନିପୁଣ ରାଜନିଯୋଗ ।
ଆଜଯାଏ ତ ନଇଲ କସ ବିଯୋଗ ॥
ଧର୍ମପୁରୁଷ ବିଜେ କଲେ କ ଦେଖାଇ ।
ଶଙ୍ଖ ପୁରାଇ ଚନ୍ଦନ ଉହାଡ଼ ରଖାଇ ॥
ପଦ୍ମ ପ୍ରାୟେ ମୁଖ ରାଜା ପ୍ରସନ୍ନ ହେଲ ।
ଅନୁଗ୍ରହେ ବସନ୍ତ ଶାନ୍ତି କରିଦେଲ ॥
ଯବରେଖା ଲେଖାପାଇଁ ଆସେ କୁମର ।
ଧନୁ ଅର୍ଦ୍ଧଚନ୍ଦ୍ର ବାଣ ଧରିଣ କର ॥

ଗୋପପୁରେ ପାଇଲ ଖୋଳୁଲ ସମ୍ପଦ ।
ଅଷ୍ଟମଙ୍ଗଳ ସ୍ୱସ୍ତିକ ଶଙ୍ଖଶବଦ ॥
ପୂର୍ଣ୍ଣକୁମ୍ଭ ମୀନ ଅନୁକୂଳ ମଙ୍ଗଳ ।
ଶିରେ ଧରାଇ ଚିକେଣ ଛନ୍ଦଚରାଲ ॥
ଦେଇଣ ଅଙ୍କୁଶ ହସ୍ତୀ କନ୍ଧ ଚଢ଼ାଇ ।
ବଜ୍ର ହୋଇ ରହେ ମହାଭୋଗ ବଢ଼ାଇ ॥
ରାଜଶିରୀ ଲକ୍ଷଣେ ପାଇଲେ କାଲି ।
ତୁମ୍ଭ ତୁଣ୍ଡ ସୁତୁଣ୍ଡ ହେଉ ବୋଲି ॥
ଶୈବ୍ୟାବାଳୀ ବୋଲେ ଏହୁ ପ୍ରମାଣ ହେଲ ।
ଚନ୍ଦ୍ରାବଳୀ ବାମଜାନୁ ନେତ୍ର ଫୁରିଲ ॥
ତେଣୁକର ମନ୍ଦର ରୁଚିର ସୁବାସେ ।
ଲକ୍ଷ୍ମୀ ନାରାୟଣ ବିଜେ ଶୁଭ ପ୍ରକାଶେ ॥
ଏହିକ୍ଷଣି ତୁମ୍ଭର ସମ୍ପଦେ ଆସିବେ ।
ଦେଖନ୍ତେଣ ସବୁ ମନସ୍ତାପ ନାଶିବେ ॥
ବୁଢ଼ୀ ବୋଇଲେ ଏହୁ ସତ୍ୟ ହେବ ଯେବେ ।
ଯାହା ମାଗିବ ବଧାଇ ପାଇବ ତେବେ ॥
ଏହି ସମୟେ ଶୁଭେ ଗୋପେ କୋଳାହଳ ।
ହସ୍ତୀ ଚଢ଼ି ଆସଇ ଗୋବର୍ଦ୍ଧନମଲ୍ଲ ॥
ଶାନ୍ତି ପାଇଲ ସକଳ ଗୋପାଳକୁଳେ ।
ସରଘର ଅଧିକାର ରାଜନ ଦେଲେ ॥
ବୁଢ଼ୀ ବାରତା ପାଇ ଛାଡ଼ ମନୋବ୍ୟଥା ।
ବଡ଼ ଆଚମ୍ବିତ ମଣେ ତରୁଣୀ କଥା ॥
ମନ ଆନନ୍ଦେ ବହୁତ ଦେଲ ବଧାଇ ।
ପୁତ୍ରସମ୍ପଦ ଦେଖିଣ ଅର୍ଘ୍ୟ ବନ୍ଦାଇ ॥
ସେଦିନର ଦୁହାଁହୁଁ ଏରୂପେ ବଞ୍ଚିଲେ ।
ସଖୀ ବୁଦ୍ଧିଏ ପାଞ୍ଚ ଉପାୟ ରଞ୍ଚିଲେ ॥
ଏକଦିନେ ନିଶାଶେଷେ ଶୈବ୍ୟା ଚତୁରୀ ।
କହେ ମୁଖରା ସନ୍ନିଧେ ବିଶ୍ୱାସ କରି ॥
କାଲି ନିଶିରେ ଦେଖିଲି ମୁହିଁ ସ୍ୱପନ ।
ସିଂହବାହିନୀ କହନ୍ତି କୋପ ବଚନ ॥
ମୋର ତୀର୍ଥ ଆରାଧନା ପୂଜା ନ କଲ ।
ଯାହା ଆରାଧି ଏତେ ସମ୍ପଦ ପାଇଲ ॥
ଗର୍ବ ବହିଣ ଏବେ କଲ ଅନାଦର ।
ପୂଜା ପଡ଼ିଆ କଲ ମିଥ୍ୟା ଦୁର୍ବାର ॥

ଏବେ ବୋଇଲେ ଗଉରୀତୀର୍ଥକୁ ଯିବୁଁ ।
ଦୋଷ କର ବନ୍ଦୀସେମା ପୂଜା କରିବୁଁ ॥
ଶୁଣି ମୁଖରା ପ୍ରସନ୍ନେ ବୋଇଲେ ଯାଅ ।
ଦେବୀ ପୂଜାରୀ ଚରଣେ ବନ୍ଦିତ ହୁଅ ।
ପୂଜା ବଢ଼ାଇ ପୁରେ ଆସିବୁ ତ୍ୱରିତ ।
କୁଳେ କଳଙ୍କ କଲା କହ୍ନାଇ- ଚରିତ ॥
ଯୋଗ ଭେଟିଲେ ନ ଶୁଣିବୁଁ ନ କହି କଥା ।
ଆଉ ହୋଇଣ ତଳକୁ ପୋତିବ ମଥା ॥
ଯେବେ କହିବ ଶ୍ରବଣ ମୁଦିବ କରେ ।
ମୋହନ ଲଗାଇ କୁଳବତୀଙ୍କି ହରେ ॥
ଏହି କଥାକୁ କରିବ ବଡ଼ ବିଚାର ।
ତୁମ୍ଭେ ଜାଣ ତ ବେଭାର କୁଳ ଆଗର
ସଖୀ ବୋଇଲେ ଆମ୍ଭେମାନେ ଆଉଁ ଯହିଁ ।
ଅବେଭାର କଥାନକ ହୁଅଇ ତହିଁ ॥
ମହାସତୀ ପତିବ୍ରତା ଏ ଚନ୍ଦ୍ରାବଳୀ ।
ଏହା ମନନକ ଆନ ପୁରୁଷେ ବଳି ॥
ଏତେ କହିଣ ମୁଖରା ଆଜ୍ଞାକୁ ଘେନି ।
ଚନ୍ଦ୍ରାବଳୀ ସଙ୍ଗେ ରଙ୍ଗେ ବନେ ସଜନୀ ॥
ଆଗେ ସଙ୍କେତ ଘେନି ଆଇଲା ତାରକା ।
ନୀପ ମୂଳରେ କୃଷ୍ଣଙ୍କୁ ଦେଖିଲା ଏକା ॥
ଚନ୍ଦ୍ରାବଳୀ ଆଗମନ ସନ୍ଦେଶ କହି ।
ଆଜ ଚମ୍ପକ ବନେ କୃଷ୍ଣ ଥିବ ରହି ॥
ଦୂତୀ ତହୁଁ ଶୁଣି କୃଷ୍ଣ ସେବନେ ମିଳି ।
ଚନ୍ଦ୍ରାବଳୀ ନାମେ ଜପି ଉଚାଟ ମାଳି ॥
ଦୂତୀ ଲେଉଟି ଯାଇ ବାରତା କହିଲେ ।
ଚମ୍ପାବନେ ଆସିଣ ମୋହନ ରହିଲେ ॥
ଶୁଣି ଚନ୍ଦ୍ରାବଳୀ ଉଦବେଗ ମନରେ ।
ସଖୀ ସଙ୍ଗରେ ମିଳିଲେ ସେହିବନରେ ॥
ଗଙ୍ଗା ସାଗର ଭେଟ ପ୍ରାୟକ ମିଳିଲେ ।
ନାନାରସେ କୃଷ୍ଣ ସଙ୍ଗରେ ଖେଳିଲେ ॥
ଚମ୍ପା କୁସୁମ ଖସି ଶିରେ ବରଷି ।
ଚନ୍ଦ୍ରାବଳୀ ବୋଲେ ଏହି ବାଳୀ ବିରସୀ
ଏହି ଚମ୍ପା ଦେଖ ହେ ମଦନ ଗୋପାଳ ।
କାନ୍ତ ଅଭାବରେ ହୃଦେ ପୋଡ଼ିଛି ଶୂଳ ॥

ଅତି ଗଉର ରୁଚିର ସୁବାସ ହେଲେ ।
ଭୃଙ୍ଗ ଅଭାବରେ ଶୋଭା ନହେଲେ ଭଲେ ॥
କେଉଁ ଅଭାଗ୍ୟରୁ ଭୃଙ୍ଗ ନ ଆସେ ପାଶେ ।
କୃଷ୍ଣ ବୋଲେ ବିରକତ ଏହି ର ରସେ ॥
ଏହି ଉଆଁସୀ ନାରୀ ବଲ୍ଲଭ ନାସଇ ।
ଜାଣି ସୁଜାଣ ଅଳି ପାଶେ ନ ଆସଇ ॥
ଦେବୀ ବୋଲେ ସେ କୁଟିଳ ପୁଷ୍ପ ଚୁମ୍ବଇ ॥
ଦକ୍ଷ ଦେଖ ଲେଛୁ ଆନ ପୁଷ୍ପେ ଗମଇ ।
ଯେସନେ ଯାର ପୁରୁଷ ବିଟପୀପ୍ରବଣ ।
ଭାବ ଘେନି ଲେଛୁ ଯାଏ ଆରକ କତି ॥
କୃଷ୍ଣ ବୋଲେ ଦକ୍ଷିଣନାୟକ ଭ୍ରମର ।
ବାସ ନିବାସ ପୁଷ୍ପ କରେ ଅଙ୍ଗୀକାର ॥
ନଶି ରହଇ ପଦ୍ମିନୀ ହୃଦେ ଆନନ୍ଦେ ।
ଜାଣି ପ୍ରାଣସଖୀ ବନ୍ଧ ପ୍ରେମାନୁବନ୍ଧେ ॥
ମହା ମହା ଦାରୁକୁ ଯେ କରଇ ଭେଦ ।
ପ୍ରୀତିଭାବେ ବନ୍ଧ ହୋଇ ନ କରେ ଛେଦ ॥
ନାରୀ ଗୁଆଁସ୍ତ୍ରୀ ରସ ବିରସ ମଣଇ ।
ରସବନ୍ତୀ ସେ ରସିକାରସ ଜାଣଇ ॥
ଚନ୍ଦ୍ରଆହାଲାଦ ସବୁଠାରେ ସମାନ ।
ଚନ୍ଦ୍ରକାନ୍ତ କେବଳ ହୁଏ ଦ୍ରବ୍ୟମାନ ॥
ଦେବୀ ବୋଲେ ଏକପତ୍ନି ବ୍ରତ ନାୟକ ।
ମୋହ ଗୁଣ ବଢ଼ଇ ବିବେକ ଘୃତକ ॥
ଘନରସେ କେବଳ କରଇ ପୀରତି ।
ତୃଷା ଆରତେ ଆନେ ନ ବଳଇ ମତି ॥
ରସ ନ ପାଇ କେବେ ବିଟପୀ ନ ହୁଏ ।
କାହା କୁହିଁ ନ ଶୁଣିଁ ନିଜ ରସଲୟେ ॥
ନବକାଳେ ପୀରତି ରୁଚଇ ମନକୁ ।
ଗ୍ରୀଷ୍ମକାଳେ ଚଉଃସମ ଯେସନେ ତନୁକୁ ॥
ହେମ କାଳରେ ତହିଁ ନ କରେ ଆଦର ।
ଏହି ରୂପେ କୀଟ ବିଟପ ସାଦର ॥
ପୁଣ ଉପମ ଇଚ୍ଛୁ କାଳେ ତାହା ମିଳିଛୁ ।
ଜାଳବଞ୍ଚା କୁତ୍ସିତ ଜନ ବଖାଣିଛୁ ॥
କୃଷ୍ଣ ବୋଇଲେ ବାତ ନ ଜନମ ଦୂଃଖି ।
ନଭେ ଭ୍ରମେ ଅଖିଳ ସଖୀ ନାହିଁ ଦେଖି ॥

ସମ-ପ୍ରବନ୍ଧ ପ୍ରୀତି ସର୍ବକାଳେ ସମ ।
ଗ୍ରୀଷ୍ମକୁ ଶୀତଳ ଶୀତକୁ ଉଷ୍ମ ॥
ମନ ଜାଣି ନାୟକକୁ ଅନୁସରଇ ।
ଦିନୁ ଦିନୁ ନାନାରସେ ଚିତ୍ତ ହରଇ ॥
ଏହୁ ଗୁଣବନ୍ତ ପ୍ରୀତି କେ ପାରଇ ଗଢ଼ି ।
ବେଳୁଁ ବେଳୁଁ ଅନୁରାଗ ଅଧିକ ବଢ଼ି ॥
ଯେଉଁ ମଣି ଲାଗି ଲୌହ ହେମ ପାଲଟେ ।
ହେମ ପାଇ ମଣିକୁ କି ଆଦର ତୁଟେ ॥
ଗୋପ-ତରୁଣୀ-ମଣି ଶିରୋମଣି ଧନ୍ୟା ।
ସବେ ତୋ ସୁଖେ ସୁଖୀ ସଖୀ ଭାବ ଘେନି ॥
ଲତାମୂଳ ଜଳେ ଯେସନ୍ତେ ଫୁଲ ପଲ୍ଲବେ ।
ତେସନ୍ତେ ସକଳେ ପ୍ରଫୁଲ୍ଲ ତୋର ସୁଲାଭେ ॥
ଏହି ରୂପେ ଏକ ଆରେ ପିରତି ଛଳେ ।
ନାନାରସେ ବିଳସି ବନେ ବନେ ବୁଲେ ॥
କେଉଁଠାରେ ବସିଣ ସୁବେଶ ହୁଅନ୍ତି ।
କେଉଁଠାରେ ନୃତ୍ୟରଙ୍ଗେ ଗୀତ ଗାବନ୍ତି ॥
କେଉଁଠାରେ ସ୍ତବକ ତୋଳ ମରମର ।
କେତେବେଳେ ବୁଲନ୍ତି ହସ୍ତ ଧରାଧର ॥
କେଉଁ କୁଞ୍ଜେ ଶୟନ ଜାନୁ ସୀମସ୍ଥାନେ ।
କ୍ଷଣ କ୍ଷଣକେ ହୁଏ ଲୀଳା ଅନ୍ୟମାନେ ॥
ଏକ ଆରେକ ଲୁଚି ଖୋଜେ ଅନୁସରି ।
ଦେଖି ପଳାନ୍ତି ଧରି ଓଠାରନ୍ତେ ହରି ॥
ଏହି ସମସ୍ତ ମୁଖର ମିଳିଲା ବନେ ।
ସଖୀମାନଙ୍କ କଥାକୁ ଅପ୍ରୀତ ମନେ ॥
ଲତା ଉହାଡ଼େ ରହି ଧୀରେ ନିରେଖିଲା ।
ବୋଧ୍ୟ ପଣତ କୃଷ୍ଣ ଅଛନ୍ତି ଦେଖିଲା ॥
କୋପଭର ହୋଇଣ ମିଳିଲା ଆଗରେ ।
କୃଷ୍ଣବାସ ଦେଖିଣ ବିରସ ସାଗରେ ॥
ଲଜ ଭୟୁ କାତର ଛନ୍ନମନ ସ୍ତବ୍ଧ ।
ପ୍ରିୟା ବଦନକୁ ଚାହିଁ ହୋଇଲେ ଦଗ୍ଧ ॥
କମ୍ପମାନ ହୋଇ ଚଳ ବୋଲଇ ବୁଢ଼ି ॥
ଏଥି ରାଜା ହୋଇଲୁ କି କଂସ ଘଉଡ଼ି ।
ଏହିବନେ ଏକା ହୋଇ କମ୍ପା ତୁ ରହୁ ॥
ଏଥି ଓଷ୍ଠ ପଡ଼ିକେ ଆସି ମୋହର ବୋହୁ ॥

ଅସି ଏକାନ୍ତେ ନାଗର ପଣ ଦେଖାଉ ।
ନନ୍ଦରାଜା କୁଳକୁ କଳଙ୍କ ରଖାଉ ॥
କୃଷ୍ଣ ବୋଲେ ମୋ ହଜିଲା ମାରଗମାଳୀ ।
ଏହିବନ ପାଇଣ ଅଛି ଚନ୍ଦ୍ରାବଳୀ ॥
ମାଏ ଜାଣିଲେ ଚଳିବେ ବୋଲି ମାଗଇ ।
ଅଳ କରି ଚନ୍ଦ୍ରାବଳୀ ସଙ୍ଗେ ଲାଗଇ ॥
ବୁଢ଼ୀ ବୋଇଲା ଦେହୁ ଦଣ୍ଡ ଓଠାରୁ ।
ଗୋପେ ଏଡ଼େ ବଳୀୟାର କଂସେ ନ ଡରୁ ॥
ଆଜ ପୁଅକୁ କହି ଗୁହାରି କରାଇ ।
ଲେଙ୍କା ବରଗାଇ ତୋତେ ନେବ ଧରାଇ ॥
ଅହର୍ନିଶି ଯେ କଂଶକୁ ସେବା କରଇ ।
ତାର ରମଣୀକି କେହି ବଳେ ଧରଇ ॥
ଚନ୍ଦ୍ରାବଳୀକି ପଇଁ ଆକର୍ଷଣ ତୋର ।
ଆଉ କେଉଁ କୁଳବନ୍ତୀ ଥିବ ବେଭାର ॥
ତୋର ମାତାକୁ ପ୍ରତିପାଳ ଅଛି ଯେଣୁ ।
ଆପେ ବ୍ୟଥା ଲୋକେ କଥା ବୋଲିବେ ତେଣୁ ॥
କୃଷ୍ଣ ବୋଇଲେ ପାଇଲି ଯେବଣ ମାଳ ।
ଚନ୍ଦ୍ରାବଳୀ ଲମ୍ବାଇଥିଲା ତାହା ଗଳା ॥
ମୋତେ ଦେଖିଣ କାଢ଼ି ପଣତେ ଲୁଚାଇ ।
ମୁହିଁ ପଚାରନ୍ତେ କହେ କଥା ବଞ୍ଚାଇ ॥
ତେଣୁ କରି ଏହାର ଧରିଲି ପଣତ ।
ଏଥେ କି ଦୋଷ ମୋହର ପରମାଣତ ॥
ସଖୀମାନେ ବେଢ଼ିଣ କଲେ ହୁରାହୁରି ।
ତୁମ୍ଭ ପୁଅକୁ ବୋଲ ଆଣୁଅଛି ଧରି ॥
ସତ ମିଛ ବା ଏଥଠାରେ ପରମାଣ ।
ଭଲ ମନ୍ଦ ପଣ ହିଁ ଏବେ ତୁମ୍ଭ ଜାଣ ॥
ପର ହୋଇଲେ ଗୋଳ କରନ୍ତି କାହିଁକି ।
ଆପଣାର ବୋଲି ଅଳ ଚନ୍ଦ୍ରାବଳୀକି ॥
ଶାଶୁ ଶୁଣି ପଚାରଇ ଚନ୍ଦ୍ରାବଳୀରେ ।
ତୁ ତ ପାଇଛୁ ମାଳକି ଦଅ କାହ୍ନୁରେ ॥
ଶାଶୁ ବଚନେ ଲ- ଲଜ ଚନ୍ଦ୍ରାବଳୀ ।
ବେଗେ ଅଞ୍ଚଳୁ କାଢ଼ି ଗଳେ ଦେଲେ ମାଳୀ ॥
କୃଷ୍ଣ ବୋଇଲେ ଶରଧା ଯେବେ ମାଳାରେ ।
ନିଅ ମୋତିହାର ବୋଲି ଦେଲେ ଗଳାରେ ॥

ଦେଖି ତରୁଲତାରୁ କୁସୁମ ବରଷେ ।
ବନଜୀବ ମଙ୍ଗଳ ଶବଦ ସ୍ୱରେଣ ॥
ଅନୁକୂଳ ଅନିଳ ଶୀତଳ ସୁଗନ୍ଧେ ।
ଦ୍ୱିଜଦ୍ୱିଜ ପ୍ରମଦା ଦିଅନ୍ତି ପ୍ରମୋଦେ ॥
ବୃନ୍ଦା ଦେଖିଣ ସଖୀ ଗଣଙ୍କୁ ପଚାରେ ।
କେଉଁ କାରଣେ ଏହି ଶୁଭ ଉପଚାରେ ॥
ପଦ୍ମା ବୋଇଲେ ନିରତେ ଉର ଯାହାକୁ ।
ଆପେପଥାଇ ବରଣ କରାଅ ତାହାଙ୍କୁ ॥
ଏହି ହେତୁ ମଙ୍ଗଳ-ଉତ୍ସବ ହୋଇଲା ।
ଶୁଣି ମୁଖରା ମନେ ସଙ୍କୋଚ ପାଇଲା ॥
କୃଷ୍ଣ ମାଳ ଯେଜଣ ଅଇଲେ ପଳାଇ ।
ସଖା ମାନଙ୍କୁ ଯେଜଣ ବାଛୁରି ଚରାଇ ॥
ପୂଜା ନିମିତ୍ତ ବାଳୀ କୁସୁମ ତୋଳିଲେ ।
ବୁଢ଼ୀ ସହିତେ ଗଉରୀ ତୀର୍ଥେ ମିଳିଲେ ॥
ବୁଢ଼ୀ ବୋଇଲା ଥାଇ ଓଷା ପୂଜାଇବା ।
ନାନା ଉତ୍ସବ ମତେ ଓଷା ଉଜାଇବା ॥
ଏତେ ବୋଲି ପୂଜାସ୍ଥାନେ ପ୍ରବେଶ ହେଲେ ।
ମଧୁମଙ୍ଗଳ ବ୍ରାହ୍ମଣ ବରଣ କଲେ ॥
ବୁଢ଼ୀ ପୁଚ୍ଛଇ ଆହେ ବ୍ରାହ୍ମଣ ନନ୍ଦନ ।
ତୁମ୍ଭେ ଜାଣ ତ ଏ ବ୍ରତର ବିଧାନ ॥
ବିଧି ଶରଧା କରି ଏ ବ୍ରତ ପୂଜଇ ।
ଓଷାପୂର୍ଣ୍ଣ ହୋଇଲାଣି ଆଜ ଉଜାଇ ॥
ବିଘ୍ନସେମ ପୂଜାର ବିସର୍ଜନ ବିଧି ।
ମନୋରଥ ଯେମନ୍ତେଣ ହୋଇବ ସିଦ୍ଧି ॥
ବଟୁ ବୋଇଲେ ଆମ୍ଭେ ଅଟୁ ଯଜୁର୍ବେଦୀ ।
ମୂଳ କର୍ମ ଯାଣନ୍ତି ଆମ୍ଭଙ୍କୁ ସମ୍ପାଦ ॥
ସାନ୍ଦୀପନଙ୍କର ଆମ୍ଭେ ଜ୍ୟେଷ୍ଠ ନନ୍ଦନ ।
ତିନିଭୁବନ ଲୋକେ କରନ୍ତି ବନ୍ଦନ ॥
ଆମ୍ଭେ ପୂଜିଲେ ତୋଷ ହୁଏ ମହାମାୟୀ ।
ମନୋରଥ ପୂର୍ଣ୍ଣକରି ପ୍ରସନ୍ନ ହୋଇ ॥
ଏତେ ବୋଲିଣ ପୂଜା ବିଧିକ ଆଚରି ।
ସ୍ନାନ ସୁବେଶ ହୋଇ ବସି ବ୍ରହ୍ମଋଷି ॥
ପୁଷ୍ପ ଗନ୍ଧ ଧୂପ ନୈବେଦ୍ୟ ଦେଇ ।
କୃଷ୍ଣଭଗିନୀକ ଶକ୍ତ ପୂଜାବଢ଼ାଇ ॥

ବଟୁ ପ୍ରସାଦ ଯେନ ସର୍ବ କରେ ଦେଲେ ।
ଚନ୍ଦ୍ରାବଳୀ କରାଞ୍ଜଳି କରି ଘେନିଲେ ॥
ରେଖା ନିରେଖି ବୁଢ଼ୀକି କହେ ଏକାନ୍ତେ ।
ତୋର ବୋହୂ କର-ପଦେ ଲକ୍ଷଣ ଯେତେ ॥
ଏହା ସହସ୍ର ମୁଖେ କହି ନ ପାରିବା ।
ଏହା ଆଶ୍ରେଣ ସବେ ବିପଦୁଁ ତରିବା ॥
ଏହା ପ୍ରସାଦେ ଧନ ସମ୍ପଦ ତୁମ୍ଭର ।
ହେତୁ କରି ଘେନିଥିବ କଥା ଆମ୍ଭର ॥
ପୂଜା ଘେନ ପ୍ରସନ୍ନା ଭବାନୀ ଯାହାରେ ।
କିବା ଅସାଧ ଅବା ହୋଇବ ତାହାରେ ॥
ଏହି ସକାଶୁଁ କଂସ କପଣୁ ନିସ୍ତାର ।
ଏତେ କହିଣ ବଟୁ ହୋଇଲେ ଅନ୍ତର ॥
ବିପ୍ର-ବଚନ ଶୁଣି ହରଷମନରେ ।
ବୁଢ଼ୀ ଘେନି ବାହୁଡ଼ି ମିଳି ସଦନରେ ॥
ଏଥୁ ଅନନ୍ତରେ ତହୁଁ କେତେ ଦିନ ଗଲା ।
ଚନ୍ଦ୍ରାବଳୀ ବନମାଳୀ ଭେଟ ନୋହିଲା ॥
ବେନିଜନ ଖେଦମନା ମଦନ ବଳେ ।
ଚନ୍ଦ୍ରାବଳୀ ପୁରେ କୃଷ୍ଣ ବିଜୟ କଲେ ॥
ଗତ ନିଶିରେ ଯାଇ ଭବନେ ପଶିଲେ ।
ଜଗି ବଦରି ତରୁ ତଳରେ ବସିଲେ ॥
ସ୍ଥିର କରିଣ କବାଟେ ମାଇଲେ କର ।
ଜାଣି ଚନ୍ଦ୍ରାବଳୀ ଆସି ମିଳିଲେ ଦ୍ୱାର ॥
ବୁଢ଼ୀ ସେହି ଦିନୁ ଅପ୍ରତେ ମନକୁ ।
ଦ୍ୱାରେ ପରତେ ନ କରେ ଆନ ଜନକୁ ॥
ଜଗି ଶୋଇ କବାଟରେ ଶୀଳ ମଡ଼ାଇ ।
ଦୁଆର ବନ୍ଧରେ ମୁଣ୍ଡ ଦେଇଣ ଶୁଅଇ ॥
ଧୀରେ କବାଟ ଫିଟାନ୍ତେ କଙ୍କଣ ବାଜି ।
ଶୁଣି ଚେତା ପାଇଣ ବୁଢ଼ୀ ନିଦ୍ରା ଭାଜି ॥
କିଏ ବୋଲନ୍ତେ ଲେଉଟି ପଲଙ୍କେ ଶୁତି
ଏହି ରୂପେ କେତେବେଳେ ହେଲା ପାହାନ୍ତି ॥
ବୁଢ଼ୀ ଜଗିବା ଜାଣି ମନେ କ୍ଷୋଭ ପାଇ ।
କଇଁ କମଳ ରଖିଣ ବାହୁଡ଼ି ଯାଇ ॥
ଶଶି ଶେଷେଣ ନିଦ୍ରା ତେଜି ଚନ୍ଦ୍ରାବଳୀ ।
ସଖୀ ମାନଙ୍କୁ କହିଣ ଅଗଣା ବୁଲି ॥

କୃଷ୍ଣପାଦଚିହ୍ନ ଧୂଳି ବୋଲି ଜରଜ ।
ଥିଆ ଅଛି ଦେଖିଲେ କୁମୁଦ ସରୋଜ ॥
ଏକ ଆରକେ କରନ୍ତି ଅନୁସନ୍ଧାନ ।
କୃଷ୍ଣ ରଖିଥିଲେ ଏହା କେଉଁ ବିଧାନ ॥
କେହି ବୋଲେ ମୋଦଗରେ କୁମୁଦ ପ୍ରାପ୍ୟେ ।
କାର୍ଯ୍ୟ ବଶରେ କମଳ ପ୍ରାପ୍ତ ବିସ୍ମୟେ ॥
କେହି ବୋଲଇ ଏମନ୍ତ ମନେ ଆଭାସେ ।
ମଦୁ ମୁଦ କଇଁ ଯେତେବେଳେ ବିକାଶେ ॥
ସେତେବେଳକୁ ଆସି ରହି ନ ପାରି ଗଲେ ।
ଆଗସରଣ ଆରକ ଏମନ୍ତ ବୋଲେ ॥
ଚନ୍ଦ୍ରାବଳୀ ପ୍ରେମଜଳ-ସେକ ବିହୁନେ ।
ହଂସ ଶଶାଙ୍କ ବଂଶ ବନ୍ଧୁ ବିଷ ମଣେ ॥
କେହୁ ବୋଲେ ଦୁଇଜଣ ମନେ ବିସ୍ମର ।
ଆମ୍ଭମାନଙ୍କୁ କାହିଁ ହୋଇବ ଗୋଚର ॥
ଦେଖି ବଦଗିରେ ପାଦଚିହ୍ନ ଯୋଡ଼ ।
ଅଶ୍ରୁଜଳେ ଅବନୀ ରେଣୁଅଛି ଜଡ଼ ।
ଯୁହିଁ ଚନ୍ଦ୍ରାବଳୀର ନ ସ୍ଫୁରଇ କିଛି ।
କୃଷ୍ଣବିଚ୍ଛେଦ ଚିନ୍ତା ବିଷାଦ ମୃଗାକ୍ଷୀ ॥
ନବଘନକୁ ଚାହିଁ ନୟନ ନିଶ୍ଚଳ ।
ଶିଖୀ ନୃତ୍ୟ ଦେଖି ମତି ଅତି ଚଞ୍ଚଳ ॥
କୃଷ୍ଣ ଆଗମ ମଣେ ମଳୟ ମରୁତ ।
ନିରେଖିଣ ଚାହିଁଥାଇ ତମାଳ ତରୁ ତ ॥
ଶୁକ ସାରୀ ପଢନ୍ତି କୃଷ୍ଣର ମହିମା ।
କର୍ଣ୍ଣ ଡେରିଣ ତାହା ଶୁଣେ ନୃପଜେମା ॥
ଗତ ସୁରତ ଚିନ୍ତା ମନ ଛନ୍ନ ଛନ୍ନ ।
ବେଳକୁ ବେଳ ଉଚ୍ଛନ୍ନ କରଇ ମଦନ ॥
ବେଶ ବସନ ଶୟନ ଭୋଜନ ନାହିଁ ।
ଶ୍ୟାମମୋହନ ଗୁଣ ପ୍ରଳାପରେ କହି ॥
ପିକଡାକ ଶୁଣିଲେ ପଡ଼ଇ ଚମକ ।
ଖରନିଃଶ୍ୱାସ ବହିଣ ଉଦର ଚମକ ॥
କେଶ ବାସ ଫିଟିଣ ଅବନୀ ଲୋଟଇ ।
ଫୁଲଶର ମରମରେ ଭେଦ କରଇ ॥
କିଛି ନ କହି ଶୁଣି ତନୁ ଫୁଟଇ ।
ନେତ୍ରଲୋତକେ ଅଧର ରଙ୍ଗ ତୁଟଇ ॥

ଦେଖି ସଖୀଗଣେ ମନେ ବଡ଼ ଖେଦ ।
ଶାଶୁ ନଣନ୍ଦ ପତି ମନରେ ବିଷାଦ ॥
ବ୍ୟାଧିମଗ୍ନ ହୋଇଲା ନୃପତିନନ୍ଦନା ।
କେଉଁ ବୈଦ୍ୟ ଭଲ କରିବ ଏ ବେଦନା ॥
ଘାତପାଞ୍ଚ ଜାଣିବା ଲୋକଙ୍କୁ ପୁଚ୍ଛଇ ।
ବ୍ୟାଧି ଗୋଚର ନ ପାଇ ମୁଖ ଶୁଖାଇ ॥
ତୁଳୀ ହଂସତୂଳୀ ତେଜି ଅବନୀ ଗଡ଼ଇ ।
ମହାତପତ ତନୁ ଶୀତଳ ଲୋଡ଼ଇ ॥
ମହାଦାବାନଳରେ ହୃଦୟ ପୋଡ଼ଇ ।
ଚଉସମ ଲେପ ଧୂଳି ହୋଇ ଉଡ଼ଇ ॥
ଶେଜ ଶେଜାଇ ସଜଳ କମଳଦଳେ ।
ଅଙ୍ଗ ଲାଗି ଶୁଖି ଚୂନା ତପତଜାଳେ ॥
ଦେଖି ଗୋବର୍ଦ୍ଧନମଲ୍ଲ ବଡ଼ ବିସ୍ମୟେ ।
ରୋଗ ଗୋଚର ନ ପାଇ ମନ ସଂଶୟେ ॥
ଅନ୍ତି ଆତଙ୍କେ ଏକ ଆରକେ ପୁଚ୍ଛଇ ।
ରାଜଉପଗ୍ରହ ସବ ସଙ୍ଗ ଲୋଛଇ ॥
ତାର ବିକଳ ଦେଖି ସାରୀ ଦେଖା କହେ ।
ବ୍ୟାଧି ଘୁଞ୍ଚିବାକୁ ଅଛି ଏକ ଉପାୟେ ॥
ନନ୍ଦନନ୍ଦନ ବହୁତ ଔଷଧ ଜାଣେ ।
ରୋଗୀ ଦେଖିଲା ମାତ୍ରେ ବ୍ୟାଧି ପରମାଣେ ॥
ତାକୁ ଜଣାଇ ମଣାଇଣ ଘେନ ଆସ ।
ମଲ୍ଲ ବୋଲଇ ତ ସେହୁ ମୋର ବିଶ୍ୱାସ ॥
ପ୍ରଭୁବେ ଆସିଥିଲା ଗୋଚାରଣ ପାଇଁ ।
ଯାତ ପାଞ୍ଚ ପଦାର୍ଥ ଦେଇଣ ଅଛଇଁ ।
ତାର ଅଇଲେ ଏ ଭଲ ହୋଇବ ଯେବେ ।
ଏହିକ୍ଷଣି ଯାଇ ଘେନ ଆସିବି ତେବେ ॥
ଏତେ କହିଣ ଗଉଡ଼ ବୁଝିନ ଗଲା ।
ନନ୍ଦ ମନ୍ଦିରେ ଯାଇ [illegible] ମିଳିଲା ॥
ଦେଖି ନନ୍ଦ ଯଶୋଦା ପାଦେ ଗଡ଼ିଗଲା ।
ଉଠି କୋଳ କରି ନନ୍ଦ ଧଇଲେ ତୋଳି ॥
ଆଶ୍ୱାସନା କରିଣ ପୁଚ୍ଛନ୍ତି ଯଶୋଦା ।
ଖରନିଶ୍ୱାସ ବାସ ଶ୍ରମଜଳେ ଓଦା ॥
ମନ ବିରସ ନୀରସ ଦିଶେ ବଦନ ।
କିସ କାରଣେ ଏକା ଅଇଲୁ ସଦନ ॥

ମଲ୍ଲ ବୋଲଇ ଶୁଣିବା ଗୋକୁଳେଶ୍ୱର ।
ଚନ୍ଦ୍ରାବଳୀ ବ୍ୟାଧି ଯୋଗୁଁ ଯାଉଛି ମରି ॥
କଂସରାଜାଙ୍କୁ ଜଣାଇ ଅଣାଇ ବୈଦ୍ୟ ।
ଚିହ୍ନି ନ ପାରିଲେ ବ୍ୟାଧି ଅତି ଅସାଧ ॥
ଭୂତ ପ୍ରେତ କି ମାରି ବେତାଳ ଡାକିନୀ ।
ପିତ୍ତ ବାତ କି ଚଣ୍ଡୀ ରୁମଣ୍ଡୀ ଶୋଷିଣୀ ॥
ବାଇ ବାତୁଳ ହୋଇ ପ୍ରଳାପ କରଇ ।
ଭୁଲି ହଂସୁଳି ଚେକ ଅବନୀ ଗଡ଼ଇ ॥
ବେଶ ବସନ ଭୋଜନ ନ କରେ କିଛି ।
କେଶ ବାସ ଫିଟିଣ ସୁଖ ଭୋଗ ଲେଚ୍ଛି ॥
ସେତ ଆଜନ୍ମ ସୁକୁମାରୀ ନୃପଜେମା ।
କ୍ଷୀଣ ହେଲା କୃଷ୍ଣପକ୍ଷେ ଯେହ୍ନେ ଚନ୍ଦ୍ରମା ॥
କେଉଁ ବିକାର ତାହାର ନ ଗଲା ଜଣା ।
ଭଲ ଜାଣିବାର ବୈଦ୍ୟ ହୋଇଲେ ବଣା ॥
କୃଷ୍ଣ ଜାଣଇ ଚିହ୍ନି ବ୍ୟାଧି ଔଷଧ ।
ଭୂତ ପ୍ରେତ ଡାକିନୀ ଗଣଙ୍କୁ ନିରୋଧ ॥
ଏହି ଦେଖିଲେ ଭଲ ହେବ ଚନ୍ଦ୍ରାବଳୀ ।
ଏହି ନିମିତ୍ତ ଆସି ତୁମ୍ଭ ପୁରେ ମିଳି ॥
ଶୁଣି ନନ୍ଦ ଯଶୋଦା କୃଷ୍ଣଙ୍କୁ ରାଇଲେ ।
କଥା ବୁଝାଇ ସେ ବୃତ୍ତାନ୍ତ କହିଲେ ॥
ମାଇ ସଙ୍ଗତେ ବାବୁ ବେଗ ହୋଇ ଯାଅ ।
ଚନ୍ଦ୍ରାବଳୀ ଭଲକରି ପ୍ରଶଂସା ପାଅ ॥
ମାତା ପିତା ଆଜ୍ଞା ପାଇ କୃଷ୍ଣ ବାହାର ।
ମଲ୍ଲ ସଙ୍ଗତେ ପୁରେ ମିଳିଲେ ତାହାର ॥
ଚନ୍ଦ୍ରାବଳୀକି ତୋଳି ବସାଇଲେ ସଖୀ ।
ଯେହ୍ନେ କୁମୁଦ ପ୍ରଫୁଲ୍ଲ ଚନ୍ଦ୍ରଙ୍କୁ ଦେଖି ॥
ତେହ୍ନେ ପ୍ରାଣେଶ କୃଷ୍ଣ ଦର୍ଶନେ ସୁନ୍ଦରୀ ।
ଧୀରେ ବସାଇ ହରି ବ୍ୟାଧି ଅନୁସରି ॥
ବାମକର ଧଇଲେ ଦକ୍ଷିଣ କରରେ ॥
ଆରକର ଦେଲେ ଅର୍ଦ୍ଧ ବାହୁ ମୂଳରେ ॥
ଧୀରେ ଧୀରେ ଅଙ୍ଗୁଳି ଚଳାଇ ନାଡ଼ିକା ।
ଗୁଡ଼ ଖର ନିଃଶ୍ୱାସ ହୋଇଲେ ତାଟକା ॥
ବୃଦ୍ଧ ବୁଢ଼ୀ ବୋଲଇ କି ଦେଖିଲୁ ବାବୁ ।
ଭଲ ହେବା ନୋହିବାର ସତ କହିବୁ ॥

ମନ ଜାତ ହୋଇ ବ୍ୟାଧି ବିଷମ ହେଲା ।
ପ୍ରେତ ବିଧାତରେ ଫୁଲବାଣ ମାଇଲା ॥
ଏତ ସତୀ ସାଧ୍ୱୀ ପତିବ୍ରତା ନାରୀ ।
ଗୁରୁଜନ ବଚନେ ମହାଦକା କରି ॥
ରାଜା ଉପଚାର କଲେ ବ୍ୟାଧି ଘୁଞ୍ଚିବ ।
ତୁମ୍ଭ କୁଳେ ଭାଗ୍ୟ ଥିଲେ ଏହି ବଞ୍ଚିବ ॥
ଗୋବର୍ଦ୍ଧନ ମଲ୍ଲ ବୋଲେ କି କରି କହ ।
ଭଲ ହେବ କେମନ୍ତେ ଚନ୍ଦ୍ରାବଳୀ ଦେହ ॥
ଯାହା କହିବ ତାହା ଲୋଡ଼ାଇ ଆଣିବ ।
ବର୍ତ୍ତମାନେ ଗଣି ଧନ ଦେଇ କିଣିବ ॥
କଂସ ପ୍ରସାଦେ କିଛି ଅପୂରୁବ ଅଛି ।
କହ ଉପାୟ ସଂଶୟ ନ କରି କିଛି ॥
କୃଷ୍ଣ ବୋଲେ ସୁକୁମାର ତନୁ ଏହାର ।
ବସନ୍ତରେ କରାଇବ ବନ ବିହାର ॥
ଗ୍ରୀଷ୍ମରେ କରାଇବ ଯମୁନା ଖେଳା ॥
ବରଷାରେ ବଞ୍ଚିବ ଉଚ୍ଚ ଚନ୍ଦ୍ରଶାଳା ।
ଶରତରେ ଦୁର୍ଗାପୂଜା କ୍ଷୀର ଭୋଜନ ।
ହେମନ୍ତକାଳେ ଦମ୍ପତି ନିବିଡ଼ ଶୟନ ॥
ଶିଶିରରେ ଦିବ୍ୟବାସ ଭାନୁ କୃଶାନୁ ।
ଯଥାଉଚିତ ଭୋଜନେ ପୁଷ୍ଟ ହୁଏ ତନୁ ॥
ଅଧି ଭୂତାଦି ତିନିତାପ ନ ବାଧଇ ।
ଦେହ କୁଶଳରେ ବ୍ରହ୍ମଯୋଗ ସାଧଇ ॥
ଏତ ଆଜନ୍ମ ସୁକୁମାରୀ ନୃପସୁତା ।
ରାଜ ଉପଚାରରେ ବଳିଲା ମମତା ॥
ନିକ ବିଧି ଅବିଧି ହେଲେ ବ୍ୟାଧି ଜାତ
ଯେହ୍ନେ କାଷ୍ଠରୁ ଅନଳ ହୁଏ ସମ୍ଭୂତ ॥
ଗୁରୁଜନ ବାଧାରେ ଶ୍ରଦ୍ଧାପୂର୍ଣ୍ଣ ନୁହେ ।
ମନ ମାରସରୁ ରୋଗ ପ୍ରବଳ ହୁଏ ॥
ଛିଦ୍ର ପାଇଣ ଭୂତ ପ୍ରେତ ଅନଙ୍ଗ ରହେ ।
ଏହି ସକାସରୁ କିଛି ଗୋଚର ନୁହେଁ ॥
ତୁମ୍ଭେ ଗୁଡ଼ ଆମ୍ଭେ ମନ୍ତ୍ର ପଢ଼ି ଝାଡ଼ିବା ।
ଖଡ଼ ବଡ ଧରାଇଣ ପୁଞ୍ଜି ବାଡ଼ିବା ॥
ଏତେ କହି କବେଶରେ ମୁଦ୍ରା ପାତିଲେ ।
ସ୍ଥାନମାନ ଧରି ହରି ମନ୍ତ୍ର ପଢ଼ିଲେ ॥

ନଖଷତ କରନ୍ତି ଶ୍ରୀମୁଖେ ଫୁଙ୍କିଲା ।
ଚନ୍ଦ୍ରାବଳୀ ଚନ୍ଦ୍ର ଥିବା ସ୍ଥାନ ଗୁଳିଲେ ॥
ନିଜ ସହଜ ସ୍ୱଭାବେ ଲଜ୍ଜା ବାଧିଲା ।
ଧଉତପତ୍ରରେ ଅଙ୍ଗ ବାସ ଆଚ୍ଛାଦିଲା ॥
ଉଭା ହୋଇ ଚନ୍ଦ୍ରାବଳୀ ପୋଛିଲେ ମଥା ।
ସର୍ବେ ଆଶ୍ଚର୍ଯ୍ୟ ବୁଝିଁ ନନ୍ଦସୁତ କଥା ॥
ମହା ମହା ବିଦ୍ୟାରେ ଯେ ନୋହିଲା ଭଲ ।
ଏତେ ଅଳପେ ଭଲ କଲା ନନ୍ଦବାଳ ॥
ଏକ ଆରେକ କୃଷ୍ଣଙ୍କୁ ପ୍ରଶଂସା କରି ।
ଗୁପ୍ତ କହନ୍ତି କେହି ହାତ ଓଷ୍ଠୁ ଧରି ॥
କେହି ବୋଲଇ ପାଦ ପରିମୂର୍ଚ୍ଛା ଯାଇ ।
କେଉଁ ଦିନ ଏମାନ ଶିଖିଲୁ କହ୍ନାଇ ॥
ଅତି ଆଦରେ ମୁଖରା ପୁରେ ବସାଇ ।
ନାନା ଭୋଜନ କରାଇ ମନ ତୋଷାଇ ॥
ଗୋବର୍ଦ୍ଧନମଲ୍ଲ ମନେ ଆନନ୍ଦ ହେଲା ।
ଦିବ୍ୟ ବସନ ରତ୍ନ ଆଭରଣ ଦେଲା ॥
କର ଧରି କୃଷ୍ଣଙ୍କୁ ବୁଝାଇ କହି ।
ତୋର ଘେନ ଏ ମୋର ଗୃହବାସ ରହି ॥
ଚନ୍ଦ୍ରାବଳୀର କଥା ଭୁମ୍ଭଙ୍କୁ ଲାଗଇ ।
ମଥୁରାକୁ ଯିବାକୁ ମେଲାଣି ମାଗଇ ॥
କୃଷ୍ଣ ଅଙ୍ଗ ପରଶେ ମୁଖ ବାସ ଗନ୍ଧେ ।
ଗଲୁଁ ଶତଗୁଣ ଚନ୍ଦ୍ରାବଳୀ ପ୍ରମୋଦେ ॥
କୃଷ୍ଣପ୍ରିୟା ପ୍ରେମ-ପ୍ରୀତି ଅନୁବନ୍ଧନେ ।
କେତେ ଦିନ ରହି ଚନ୍ଦ୍ରାବଳୀ ସଦନେ ॥
ଏହିରୂପେ ପରକୀୟା ଅନୁରାଗରେ ।
ସଙ୍ଗ ସଂଯୋଗ ଉପାୟ ନାନାରଙ୍ଗରେ ॥
ଶୁଣି ନଳକୁବର ଶିରେ କର ଯୋଡ଼ି ।
କହୁ ବିନୟେ ନାରଦ ଚରଣେ ପଡ଼ି ॥
ଚନ୍ଦ୍ରାବଳୀ ବନମାଳୀ କେଳିଚରିତ ।
ଶୁଣି ଶ୍ରବଣ ମୋର ହୋଇଲା ପବିତ ॥
ରାଧା ସଙ୍ଗେ ଗୋବିନ୍ଦ କେମନ୍ତେ ବିହାର ।
କାହା ଦୁହିଣୀ ସେହୁ ଘରଣୀ କାହାର ॥
କେଉଁ ଭାବେ କୃଷ୍ଣଙ୍କୁ ଏଡ଼େ ବଶ କଲେ ।
କେତେ ଭଳି ସୁନ୍ଦର ମୋହନ ମୋହିଲେ ॥

ଏହା ସମ୍ପ୍ରତି ମୋତେ କହିବା ବିସ୍ତାରି ।
ଭୃତ୍ୟ କରି ରଖ ଭବ-ଜନ୍ତୁଁ ଉଦ୍ଧରି ॥
ବୋଲନ୍ତି ନାରଦ ଶୁଣ ଗୋକୁଳବାସୀ ।
ତୋର ପ୍ରସାଦେ ହରି ମୋ ହୃଦେ ପ୍ରକାଶି ॥
ପୂର୍ବେ ଗୋପେଶ୍ୱର ମୋତେ କହିଲେ ଯାହା
ଏକମନେ ଶୁଣ ତୁମ୍ଭେ କହଇ ତାହା ॥
ବୃଷଭାନୁ ବୋଲି ନୃପତି ଧନେଶ୍ୱର ।
ବ୍ରଜମଣ୍ଡଳ ଦଧି ଗ୍ରାମରେ ନବର ॥
ପାଟମହିଷୀ ତାହାର କୀର୍ତ୍ତିଦା ନାମ ।
ଜ୍ୟେଷ୍ଠ ନନ୍ଦନ ନାମ ଅଟଇ ଶ୍ରୀଦାମ ॥
ସେହୁ ରାଣୀ ବହୁତ ବ୍ରତ ଆଚରିଲେ ।
ପୂର୍ବପୁଣ୍ୟେ ନନ୍ଦନୀ ଗର୍ଭେ ସଞ୍ଚରିଲେ ॥
ମାସ ଭାଦ୍ରବ ରବିବାର ସୀତାଷ୍ଟମୀ ।
ଅନୁରାଧା ନକ୍ଷତ୍ର ମଧ୍ୟାହ୍ନେ ଜନମି ॥
ନବକୁମାରୀ ଲାବଣ୍ୟ କେ କହି ପାରେ ।
ଜାତ ମାତ୍ରକେ ଅଇଶ୍ୱର୍ଯ୍ୟ ପୁରେ ପୁରେ ॥
ମହାଆନନ୍ଦେ ପ୍ରଫୁଲ୍ଲ ସକଳ ମନ ।
ନଗ୍ରେ ଉତ୍ସବ ବିଲୋହି ଧନ ବସନ ॥
ଦଧି ହଳଦି ଗୋଳି ହୋଇ ବୋଳାବୋଳି ।
ଚୂଆ ଚନ୍ଦନ ପିଚକା ପକର ଗୋଳି ॥
ବୃଷଭାନୁ ନୃପତି ଦେଖିଣ ହରଷେ ।
ତିଳ କାଞ୍ଚନ ଦାନ ସୁବର୍ଣ୍ଣ ବରଷେ ॥
ଲକ୍ଷଲକ୍ଷ ଗୋଧନ ବ୍ରାହ୍ମଣଙ୍କୁ ଦେଲା ।
ଯେ ସଞ୍ଚିତ ଭଣ୍ଡାର ଧନ ବିଲୋହିଲା ॥
ଗୀତ ଗାନ୍ଧାର ନୃତ୍ୟ ଗୁଣୀଜନ ବାରେ ।
ଧନେ ହରଷ ଭାଟ କଏବାର କରେ ॥
ଅତି ଯତନେ କରିଣ ପାଳନ୍ତି ଜେମା ।
ସର୍ବଗୁଣ ସର୍ବଶୋଭା ଆଶ୍ରୟ ସୀମା ॥
ଶୁକ୍ଳ ପକ୍ଷରେ ଯେସନେ ବଢ଼େ ଚନ୍ଦ୍ରମା ।
ତେସନ ଦିନକୁ ଦିନ ଜେମା ସୁଷମା ॥
ଧାଈ ପରିବାରୀ ଥାଇ ସେବନ୍ତି ପାଶେ ।
ବାଳକୁମାରୀ ପ୍ରତିପାଳନ୍ତି ହରଷେ ॥
ନବକୁମାରୀ ନବୀନ ଗଉରୀ ପ୍ରାନ୍ତେ ।
ହାସରସରେ ବିଳସେ ସଖୀ ସଙ୍ଗତେ ॥

ଏହି ଅଂଶରେ ସଖୀଗଣ ଜାତହୁଏ ।
ଅବଲମ୍ବି ଗମ୍ଭୀର ଜଳଚର ପ୍ରାଏ ॥
ଅନୁକ୍ରମରେ ଆସି ଆଶ୍ରିତ ହୋଇଲେ ।
ସେବା ଅନୁରୂପେ ସଖୀଭାବେ ରହିଲେ ॥
ପ୍ରେମ ପ୍ରେଷ୍ଠା ଲଳିତା ବିଶାଖା ଚିତ୍ରିକା ।
ଚମ୍ପକଲତା ରଙ୍ଗଦେବୀ ସୁଦେବୀକା ॥
ତୁଙ୍ଗବିଦ୍ୟା ଇନ୍ଦୁରେଖା ଏ ଅଷ୍ଟୋତ୍ତମା ।
ତିଳେ ଅନ୍ତର ଏଥିଁ ନୋହେ ନୃପକନ୍ୟା ॥
ପ୍ରିୟ କାଦମ୍ବରୀ ଶଶୀମୁଖୀ ପ୍ରମଦା ।
ଚନ୍ଦ୍ରରେଖା ପ୍ରିୟମ୍ବଦା ମଦନମଦା ॥
ମଧୁମତୀ ବାସନ୍ତୀ ସେ କଳଭାଷିଣୀ ।
ମଣିମତୀ କର୍ପୂରଲତା ରତ୍ନବେଣୀ ॥
ଜ୍ୟେଷ୍ଠା ଧନିଷ୍ଠା ବୃନ୍ଦା କୁନ୍ଦଲତା ଆଦି ।
କେଳି କନ୍ଦଳି ମେନକା ସେ ପ୍ରିୟବାଦୀ ॥
ମିତ୍ରା କସ୍ତୁରୀ ମନୋଜ୍ଞା ଚନ୍ଦନ ବତୀ ।
କଜମୁଖୀ ମଦିରା ମାଧବୀ ମାଳତୀ ॥
ମଣି ମଞ୍ଜୁଳା ମଣ୍ଡଳା ହୀରା କୁଣ୍ଡଳା ।
ମଞ୍ଜୁମେଧା ସୁମେଧା ଲକ୍ଷଣା ସୁଶୀଳ ॥
କୁରଙ୍ଗାକ୍ଷୀ ସୁମଧ୍ୟା ମଣ୍ଡଳୀ କମଳା ।
କାମ ଲତିକା ପ୍ରେମପଦ୍ମୀକା ବିମଳା ॥
ଗୁଣ ଚୂଡ଼ା ଚନ୍ଦ୍ରଲତା ମଦନାଳସୀ ।
ନାନ୍ଦୀମୁଖୀ ବିଧୁମତୀ ଆଦି ତୁଳସୀ ॥
ଏହିରୂପେଣ ପଞ୍ଚବିଧ ଗଣ ଲେଖି ।
ପ୍ରେମପ୍ରିୟା ପ୍ରାଣନିତ୍ୟା କେବଳା ସଖୀ ॥
ଗୁଣ ମଞ୍ଜରୀ ଆଦି ସଖୀଗଣ ଯେତେ ।
ଅନୁସରି ସେବନ୍ତି ରାଧାପଦାବ୍ଜତେ ॥
ସାନ ଭଗିନୀ ନାମ ଅନଙ୍ଗ ମଞ୍ଜରୀ ।
ନାନାରସେ ବିଳସେ ଚନ୍ଦ୍ରଶାଳାପୁରୀ ॥
ପଢ଼ଇ ସେ ତୁଙ୍ଗବିଦ୍ୟା ସଖୀ ସଙ୍ଗର ।
ନୃତ୍ୟ ସାହିତ୍ୟ ସଙ୍ଗୀତ ରସ ଗାନ୍ଧାର ॥
ରାଧା-ରୂପକୁ ଗୃହେଁ ନୃପତି ବିଚାରି ।
ଅନୁରୂପ ବର କେ ସଂସାରେ ପଚାରି ॥
ଜେମା ସମାନ ରୂପେ ବର ନ ମିଳଇ ।
ରାଣୀ ସଙ୍ଗତେ ବସି ନୃପତି ଭାଳଇ ॥

ରାଜ କୁମାର ବହୁତ ହୋଇଲେ ଉପଗତ ।
ଏଥି କାହାକୁ ବିଭା କରିବା ନୁହଇତ ॥
କର ଯୋଡ଼ିଣ କହଇ କୀର୍ତ୍ତିଦା ରାଣୀ ।
ସାବଧାନେ ଶୁଣିବା ନୃପଚୂଡ଼ାମଣି ॥
ମାର୍ଗଶିର ମାସେ ଯେ ବ୍ରତ ଦୀପାବଳୀ ।
ଗୋପେଶ୍ୱରରେ ଉଜାଗରେ ଜାଗର ଜାଳି ॥
ଭଦ୍ରସେନ ଘରଣୀ ମୋହର ପିରତି ।
ସେହୁ ମନାସେ ପୁତ୍ର ମୁଁ ଚିତ୍ତନ୍ତ ଦୁହିତି ॥
ଦୁହେଁ ମନୋରଥକୁ ହେଲୁଁ କୁହାକୁହି ।
ଯେବେ ଜାତ ହୋଇବେ ସୁତାସୁତ ଦୁଇ ॥
ବିଭା କରିବା ବୋଲି ହେନି ସତ୍ୟ କଲୁଁ ।
ଗୋପେଶ୍ୱର ଦେବଙ୍କୁ ସାକ୍ଷ କରାଇଲୁଁ ॥
ଆଗ ଭଦ୍ରସେନର ଯେ ହେଲା କୁମର ।
ଅଭିମନ୍ୟୁ ନାମ ତାର ରୂପେ ସୁନ୍ଦର ॥
ଆମ୍ଭ ରାଧାକୁ ବଡ଼ ବରଷ ସାତରେ ।
କନ୍ୟା ଜାତ ହୋଇଁ ଦେଇଅଛୁ ସତ୍ୟରେ ॥
ଶୁଣି ନୃପତି ମନେ ପାଇ ଗୁରୁ ବ୍ୟଥା ।
କଥା ନ କହିଣ ଝଟଣ ପୋତିଲା ମଥା ॥
ପ୍ରିୟ ବନ୍ଧୁ ସାମନ୍ତ ପାତ୍ର ପୁରୋହିତ ।
ସମସ୍ତଙ୍କୁ ବସାଇ କହେ ରାଣୀ ସତ୍ୟ ॥
ଶୁଣି ସବୁରି ମନେ ଲାଗିଲା ସଂଶୟ ।
ଏଣେ ସତ୍ୟ ତେଣେ ବନ୍ଧୁ ସମାନ ନୁହେ ॥
ପୁରୋହିତଗଣ ସେ ମୂଳ କଲେ ସତ୍ୟ ।
ବନ୍ଧୁଗଣମାନେ ହେଲେ ବିମର୍ଷ ଚିତ୍ତ ॥
ଭ୍ରାତା ଶ୍ରୀଦାମ ଉଷି ନନ୍ଦୀଶ୍ୱରେ ରହି ।
ଅଭିମନ୍ୟୁକୁ ରାଧିକା ବିଭା କରାଇ ॥
ହେବାହେଉଣ ଭଦ୍ରସେନଧନେ ଅଧିପ ।
ଦୁହେଁ ପାଇଲା ବନ୍ଧୁ ବୃଷଭାନୁ ନୃପ ॥
ଗଉରବ କରେ ଯାରେ କଂସ ନୃପତି ।
ଅତିବଡ଼ ବୋଲାଇ କୁବେର ସମ୍ପତ୍ତି ॥
ଧାଇ ପରିବାରୀ ସଖୀଗଣ ସହିତେ ।
ଅଙ୍ଗଭୋଗ-ନିଯୋଗ ଯଉତୁକ ଯେତେ ॥
ସବୁ ସମ୍ପଦେ ଦିଲେ ନୃପତି ଦୁହିତା ।
ଶଙ୍ଖନିଧି ପଦ୍ମନିଧି ଆଦି ଆଶ୍ରିତ ॥

ସୁଲକ୍ଷଣୀ ତରୁଣୀ ସୁରମଣୀ ରାଧା ।
ଦେଖନ୍ତେଣ ସବୁର ମନେ ବଡ ଶ୍ରଦ୍ଧା ॥
ଜଗନ୍ମୋହନୀ ରୂପକୁ ଦେଖି ତାହାର ।
ଅନ୍ତେଶ୍ୱର ପୁରରୁ ନ କଲେ ବାହାର ॥
ଶାଶୁ ଜଟିଳା ପାଳଇ ଅତି ହରଷେ ।
ନଣନ୍ଦଣୀ କୁଟିଳା ଥାଇ ପ୍ରୀତିବଶେ ॥
ସଖୀଗଣଙ୍କୁ ଅତି ଆଦରବ କର ।
ଯେବେତ ନଯୋଗ ଖଞ୍ଜେ ବନ୍ଧୁ ମନ ହର ॥
ଏହି ମତେଣ କେତେ ଦିନ ବହିଗଲା ।
ଚନ୍ଦ୍ରାବଳୀ କୃଷ୍ଣରେ ବିବାଦ ଶୁଭିଲା ॥
ଅଭିମନ୍ୟୁ ତା ଶୁଣି ମନେ ଭୟ କଲ ।
ରାଧା ରୂପ ନରୋପିଣ ନରତେ ଡର ॥
ଏତ ଅପୂର୍ବ ତିନ ଭୁବନେ ସୁନ୍ଦର ।
ଏଥି ନ ପୁଣ ଭେଦଇ ନନ୍ଦ କୁମର ॥
ରାଧା ଘେନିଣ ଯାବଟ ତେଜିଣ ଯିବ ।
ଦୂର ଦେଶରେ ଘର କରି ରହିବ ॥
ଯହୁଁ ଏମନ୍ତ ବିଚାର ଜାଣିଲେ ତାର ।
ପୌର୍ଣ୍ଣମାସୀ ଭଗବତୀ ଖେଦ ଅପାର ॥
ବିରା ବୃନ୍ଦା ନାନ୍ଦୀମୁଖୀ ଘେନି ବିଚାର ।
ଅଭିମନ୍ୟୁ ରାଧାଙ୍କୁ ନେବ ଆନ ପୁରୀ ॥
କୃଷ୍ଣ ଭୟରେ ଲୁଚାଇ ଦୂରେ ରଖିବ ।
ବୃନ୍ଦାବନେ ରାଧାକୃଷ୍ଣ ଲୀଳା ନୋହିବ ।
ଆମ୍ଭ ଥିବାର ଏଥି ପ୍ରୟୋଜନ କିସ ।
ଯେବେ ନୋହିବ ରାଧାକୃଷ୍ଣର ବିଳାସ ॥
ଏତେ ବିଚାରି ଚଳି ଅଭିମନ୍ୟୁ ପୁରେ ।
ଦେଖି ଅଭିମନ୍ୟୁ ମାନ୍ୟ କଲା ପୟରେ ॥
ତାଙ୍କୁ ବିଶ୍ରାମେ ବସାଇ ପୁଛନ୍ତି ପାଶେ ।
ଆମ୍ଭେ ଶୁଣିଲୁ ତୁମ୍ଭେ ଯିବୁ ଅନ୍ୟ ଦେଶେ ॥
କିସ କାରଣ ତାହା ମୋହ ଆଗେ କହ ।
ତୁମ୍ଭେ କାହାର ତ ବାଦ ଭଗାରି ନୁହ ॥
ରାଜଭୟ ତୁମ୍ଭଙ୍କୁ କେଉଁକାଳେ ନାହିଁ ।
ଗୋପ ଭୁବନେ ମୁଖ୍ୟ ପାଇ ଅଛ ତୁମ୍ଭି ॥
ଧନବନ୍ତ କୁବେର ନୋହିବ ସମାନ ।
ଯାର ଶ୍ୱଶୁର ଏ ବୃଷଭାନୁ ରାଜନ ॥

ତୁମ୍ଭ ସାତ ପୁରୁଷର ଜନମ ଭୂମି ।
ଏହା ଛାଡ଼ି ଝିଅରୁ ଆନଦେଶେ ଗମି ॥
ବାରସ୍ୱର୍ଗ ପରାପୂକ ଭୁବନ ତ୍ୟେଜ ।
କେଉଁ ଆଶାରପଲ୍ଲୀରେ ହୋଇବୁ ଗଞ୍ଜି ॥
ଏତେ ଗାଈ ମଇଁଷି ଚରାଇବୁ କାହିଁ ।
ସ୍ଥାନ ଛାଡ଼ିଲେ ଲୋଡ଼ିଲେ ଆଉ ନ ପାଇ ॥
ମଧୁପୁରେ କଂସକୁ ନ ମିଳଇ ଯାହା ।
ମୋର କୋଠାରୁ ମଗାଇ ନଅଇ ତାହା ॥
ପୁର ଦକ୍ଷିଣେ ମାନସ ଗଙ୍ଗା ପବନ ।
ଉପବନ କାନନ କୁସୁମ ବିଚିତ୍ର ॥
ନଗ୍ର ଉତ୍ତରେ ପୂର୍ବ ଅଟାଳ ଦୁଆର ।
ପଶ୍ଚିମରେ ନାନା ଚିତ୍ରବିଚିତ୍ର ପୁର ॥
ଆସୀମନ୍ତ ବେଢ଼ିଛି ମୁଗୁନି ପାଚେରି ।
ଏହା ଛାଡ଼ି ଆନ ଲୋଡ଼ କିସ ବିଚାରି ॥
ମୋହ ଆଗରେ କହ ସ୍ୱରୂପ ବଚନ ।
ସତ ପ୍ରକାଶ କର ନ କର ବଞ୍ଚନ ॥
ଶୁଣି କୁମର କହଇ ବିନୟ ମତେ ।
ଯାହା ପୁଚ୍ଛିଲ ମୋ ଦେବ ଶୁଣ ଏକାନ୍ତେ ॥
ସବୁ ଯାଉ କେବଳ ଏ ବେଭାର ରହୁ ।
ଜୀବ ତେଜ ମର୍ଯ୍ୟାଦା ରଖେ କେହୁ କେହୁ ॥
ଗୋବର୍ଦ୍ଧନଙ୍କ ପ୍ରିୟା ସେ ଚନ୍ଦ୍ରାବଳୀ ।
ନନ୍ଦସୁତ ନାମରେ ବିବାଦ ଉଚ୍ଛୁଳି ॥
ସେହି କନ୍ୟା ରାଜାର ନିୟୋଗ ସେବକ ।
ତହିଁ ଭୟ ନ କଲା ଏ ନନ୍ଦ ବାଳକ ॥
ଏମନ୍ତ ବିବାଦେ କେହୁ ତ ନ କଲା କହି ।
ଅତି ପ୍ରବଳ ଏଥି ହେଲା ନନ୍ଦବତ୍ସ ॥
ନଗ୍ର କଲ ଜଗିବ କୁଳବତୀ ହେତେ ।
ନିତି ବୁଲ ଡେଇଁ ପଶଇ ଘରେ ଘରେ ॥
ଏତ ଅପୂର୍ବ ସୁନ୍ଦରୀ ନବ ଅବଳା ।
ସେ ତ ନାଗର କୁଳବଧୂକୁଳକଳ ॥
ନବ ଲାବଣ୍ୟ ଛଇଳ ଶ୍ୟାମଳ କାୟେ ।
ଛଟକରେ ନଟବର ବେଶ ବନାଏ ॥
କେତେ ବାଳ ଜଗିଣ ପୁରେ ରହିଥିବା ।
ଏଥି କରି ବିଚାରେ ଦୂରଦେଶେ ଯିବା ॥

ପୌର୍ଣ୍ଣମାସୀ କହିଲେ ଏହି କଥାପାଇଁ ।
ଏତେକ ସୁଖ ସମ୍ପଦ ଗୁଡ଼ ଲୋଡ଼ୁ ବାଛି ॥
ଏକ ବନରେ ମୃଗ ଶାର୍ଦ୍ଦୂଳ ଚରନ୍ତି ।
କଣ୍ଠ କେଶରୀ ରହି ବିହାର କରନ୍ତି ॥
ଅହି ନକୁଳ ବସନ୍ତି ଏକ ସ୍ଥଳରେ ।
ସଙ୍ଗ ମେଳରେ ନ ଦେଖେ ସିହ୍ନ ବଳରେ ॥
ଯହିଁ ଯାହାକୁ ନିଷ୍ଠେୟ ଥାଇଛି ଯୋଗ ।
ତେବେ ଅସ୍ତାଚଳେ ଥିଲେ ହିଁ ସଂଯୋଗ ॥
ଏହି ଛାର କଥାକୁ ତୁ ବିଚାର କରୁ ।
ମୋର ଥାଉଁ କିପାଇଁ ଏଡ଼େ ହୋଇ ଡରୁ ॥
ନେତ୍ର କପାଳ ନ ଦେଖେ ନିକଟେ ଥାଇ ।
ଦୂର ଆକାଶେ ଥିଲେ ତାରା ଶଶୀ ଯାଇ ॥
ବ୍ୟାଘ୍ର ଛାଗଳ ରଖି ପାରେ ଏକ କରି ।
ମୋର ଉପାୟେ ରାଧା ନ ଦେଖିବ ହରି ॥
ଏଥି ଭଲମନ୍ଦ କଥା ଲାଗଇ ମୋତେ ।
ଗୋଚାରଣ କର ତୁହ୍ନ ଅଚିନ୍ତା ମତେ ॥
ମହାସତୀ ପତିବ୍ରତା ସାଧବୀ ରାଧା ।
କେମନ୍ତେ ଲାଗିବ ତା ଦେହେଁ ପୁରୁଷ ବାଧା ॥
ଅଭିମନ୍ୟୁ ବୋଲଇ ଶୁଣିମା ଈଶ୍ୱରୀ ।
ଲୋକବାଦକୁ ମନେ ବଡ଼ ଭୟ କରି ॥
କୁଳବଧୂ ଭ୍ରଷ୍ଟରେ ଧର୍ମ ନାଶ ଯାଇ ।
ବର୍ଣ୍ଣସଙ୍କରେ ପିତାଏ ପିଣ୍ଡ ନ ପାଇ ॥
ନାରୀ ଅଗ୍ନି ନୀରକୁ ବଳାଇଲେ ବଳେ ।
କୃଷ୍ଣ ରୂପ ଦେଖିଲେ ସତୀ ବ୍ରତ ଟଳେ ॥
ଏହି ସକାଶ ଏଥିଁ ଯାଇ ତ ଲୋଡ଼ଇ ।
ରାଧା ରୂପ ଲୋଭୀ ରହିଁ ତନୁ ଝୁରଇ ॥
ଯେବେ ରାଧାକୁ ରଖିବ ତୁମ୍ଭେ ବଞ୍ଚାଇ ।
ଯେମନ୍ତରେ କୃଷ୍ଣ ଏହା ରୂପ ନ ଚାହିଁ ॥
ତେବେ କିଂପାଇ ତେଜିବ ଆପଣା ଦେଶ ।
ତୁମ୍ଭ ବଚନ ପ୍ରମାଣେ ଗଲା ସମ୍ବାଧ ॥
ତାଙ୍କ ଥାଏ କରିଛ ଦେବୀ ପୌର୍ଣ୍ଣମାସୀ ।
ମନେ ସୁମରଣା କଲେ ଦୁର୍ବାସା ଋଷି ॥
ଯାଇ ତପୋଧନ ବେଗେ ଗୋପେ ମିଳିଲେ ।
ପୌର୍ଣ୍ଣମାସୀ ଦେଖି ଚରଣରେ ନମିଲେ ॥

କରଯୋଡ଼ି ଭଗବତୀ କହନ୍ତି ବଚନେ ।
ରାଧା କୃଷ୍ଣ ଯୁଗଳଙ୍କୁ କର ଉପାୟେ ॥
ବୃନ୍ଦାବନେ ଯେସନେ ବିହାର ହୋଇବ ।
ତୁମ୍ଭ ବଚନେ ଆମ୍ଭର ବିଶ୍ୱାସ ଯିବ ॥
ରାଧା ଶାଶୁ ଜଟିଳା ଆକଟ ଅପାର ।
ଛଳେ ବୋହୁକୁ ନେତ୍ରୁ ନ କରେ ଅନ୍ତର ॥
କ୍ଷଣେ ଦ୍ୱାର ବଳାଇ ନ ଛାଡ଼ଇ ଯାଇ ।
ବୃଦ୍ଧା ବରସ ଚରଣ ଶବ୍ଦ ନ ପାଇ ॥
ତୁମ୍ଭେ ଏଥକୁ ବୁଦ୍ଧି ଉପାୟ କହିବ ।
ଯେଉଁ ରୂପେ ରାଧା ବୃନ୍ଦାବନକୁ ଯିବ ॥
ନନ୍ଦଘରୁ ଯମୁନା କୁଣ୍ଡ ଗମନେ ।
ଶାଶୁ ଏଥି ବିରୋଧ ନ କରେ ଯେସନେ ॥
ଏହା ହେଲେ ରାଧା-କୃଷ୍ଣ-ଲୀଳା ହୋଇବ ।
ତୁମ୍ଭ ବିହନେ ଆନ ବଚନ ନୋହିବ ॥
ଗୋପେଶ୍ୱରଙ୍କ ଆଜ୍ଞା ହୋଇଛି ଯେମନ୍ତ ।
ତୁମ୍ଭ ବଚନେ ଲୀଳା ହୋଇବ ତେମନ୍ତ ॥
ମୁନି ବୋଇଲେ ସ୍ୱରୂପ ତୁମ୍ଭ ବଚନ ।
ମୋତେ ରାଇଣ ବୋଇଲେ କ୍ଷୟଲୋଚନ ॥
ଗାନ୍ଧର୍ବ୍ୟ ସ୍ତ୍ରୀଳ ମଜା କରେ ଯେମନ୍ତ ।
ତୁମ୍ଭେ ଯାଇ ଉପାୟ କରିବ ତେମନ୍ତ ॥
ଏହି ସମୟେ କଲ ତୁମ୍ଭେ ସ୍ମରଣ ।
ଦେହ ଏକ କଳାଚାକ ମନ ଦାବଣ ॥
ଚାନ୍ଦୀମୁଖୀ ଶବ୍ଦ ମନ୍ତ୍ର ମନ୍ତ୍ର ଧ୍ୟାନେନ ।
ଦୃଷ୍ଟା ବସୁସାଧକ ପିଳନ ପଶ୍ୟାନେ ॥
ବୃନ୍ଦାବଣ୍ଟୀ ନେମ ନାଦ ସକାଶ କରିବେ ।
ସେବା ସେଶ ଲଳନାଙ୍କ ମନ ହରିବେ ॥
କୁନ୍ଦଲତା ଲଳମୀ ମାଧବୀ ସମାନେ ।
ଦିବ୍ୟ ସ୍ତ୍ରୀ ଶ୍ରୀମାନେ ସର୍ବଂସହା ଚାରଣେ ॥
ଏହି ରାଧିରେ ମନସଙ୍କ ଶିକ୍ଷା ଦେବ ।
ଶୀ । ଶୁକ୍ଳିଁକି ଅନୁମତି କରିଥିବ ॥
ଅତି ଚପଳଲୀଳା ନୋହିବ ଗୋଚର ।
ଏହି ନିମିତ୍ତ ବ୍ରଜେ ହୋଇଛନ୍ତି ପ୍ରଚୁର ॥
ଏତେ କହିଣ ବଜେ ଅଭିମନ୍ୟୁ ପୁରେ ।
ଦେଖି ଜଟିଳା ପୂଜିଲା ମୁନି ପଦରେ ॥

ବ୍ରହ୍ମ ସମାନ ମୁନି ବଚନ ମୋ ଭୁବନେ ।
ପାଦେ ଓଲଟି କରଯୋଡ଼ି ଭକ୍ତି ମନେ ॥
ବହୁ ବିନୟ ବଚନେ କଲ ଭକତି ।
ଦେଖି ମୁନି ସନ୍ତୋଷେ କଲ୍ୟାଣ କରନ୍ତି ॥
ପୁତ୍ର ବଧୂକୁ ଆଣି ପାଦେ ଓଳଗାଇ ।
ଅଧୋବଦନେ ରାଧା ଆଡ଼େ ଉଭା ହୋଇ ॥
ମୁନି କଲ୍ୟାଣ କରି କରନ୍ତି ପ୍ରଶଂସା ।
ଏହା ହେବ ତୁମ୍ଭର ଏଡ଼େ ଶୁଭଦଶା ॥
ପୁଣି କୁମାର ଗୃହିଣୀ କପାଳ କଣ୍ଟଇ ।
ସୁଖ ଭୁଞ୍ଜି ପାରିଲେ ଅରିଷ୍ଟ ମେଣ୍ଟାଇ ॥
ଶୁଣି ଜଟିଳା ମୁନି ପାଦତଳେ ପଡ଼ି ।
ଏହା ଶୁଣି ହେ ମୁନି ମୋ ଜୀବନ ଛୁଡ଼ି ॥
କହ ଅରିଷ୍ଟ ଖଣ୍ଡନ କେବଣ ପ୍ରକାର ।
ମୁନି ବୋଇଲେ ବଧୂ ତୋର ପ୍ରତିକାର ॥
ଗ୍ରହରାଜ ସୂର୍ଯ୍ୟ ପୂଜି ଅର୍ଘ୍ୟ ଦେବ ।
ସର୍ବ ଗ୍ରହ ଅରିଷ୍ଟ ଶାନ୍ତି ତେବେ ହୋଇବ ॥
କାମ କୁସୁମ ବନବାଟି ସୂର୍ଯ୍ୟ ସ୍ଥଳେ ।
ଜାତି ପଦ୍ମାକର କମଳ କୋମଳେ ॥
ନିତି ମଧ୍ୟାହ୍ନେ ସୂର୍ଯ୍ୟ ପୂଜି ଅର୍ଘ୍ୟ ଦେବ ॥
ଅରିଷ୍ଟ ଖଣ୍ଡି ଚନ୍ଦ୍ର ସୋମ ନାମ ବହିବ ।
ପାଶେ ରାଇଣ କହନ୍ତି ଗୁପତ ବାଣୀ ॥
ତୋର ବଧୂ ସର୍ବ ଗୁଣେ ଯେ ସୁଲକ୍ଷଣୀ ॥
ରୂପେ ରତି ପାର୍ବତୀ ଲକ୍ଷ୍ମୀ ସମାନ ନୁହେ ।
ପତିବ୍ରତା ସାଧ୍ୱୀ ସର୍ବଗୁଣ ବହେ ॥
ଏଣୁ ସଦା ସମ୍ପଦ ଯେ ଥିବ ତୋହର ।
ଯଶଃ ଆୟୁଷ ବର୍ଦ୍ଧନ ଧନ ଭଣ୍ଡାର ॥
ଅରିଷ୍ଟ ଶଙ୍କଟମାନେ ନ ପାରିବେ ବାଧି ।
ଶତ୍ରୁମାନେ ଦେଖିଲେ ହେବେ ମିତ୍ର ବୁଦ୍ଧି ॥
ଏହାକରେ ସମ୍ପାଦିବ ଯେବଣ ପାକ ।
ଅତି ସ୍ୱାଦୁ ସୌରଭ ସୁଧାରୁ ଅଧିକ ॥
ଏହାକରେ ଜଳ ପୁଷ୍ପ ଦେବତା ଇଚ୍ଛେ ।
ପୂଜା ହେବାକୁ ରବି ନିତ୍ୟହେଁ ବାଞ୍ଛେ ॥
ଏହୁକଥା ବିଶେଷରେ କହୁଛି ତୋତେ ।
ନିତି ମଧ୍ୟାହ୍ନେ ସୂର୍ଯ୍ୟ ପୂଜିବ ଯେମନ୍ତେ ॥

ଶୁଣି ଜଟିଳା ପୂଜିଲା ମୁନି ଚରଣେ ।
ବଧୂ ପୂଜିବ ସୂର୍ଯ୍ୟ ଆଜ୍ଞା ପରମାଣେ ॥
ତୁଷ୍ଟ କରାଇ ମୁନି ଅନ୍ତର୍ଦ୍ଧାନେ ହେଲେ ।
ନନ୍ଦ-ମନ୍ଦିରେ ଯାଇ ପ୍ରବେଶ ହୋଇଲେ ॥
ଦେଖି ନନ୍ଦରାଣୀ କଲେ ଚରଣେ ପୂଜା ।
ଦଣ୍ଡ ପ୍ରଣାମ କରି ଉଭା ନନ୍ଦରାଜା ॥
ମୁନି ବିନୟ ଦେଖି କହେ ଦୟା କରି ।
ବୃଦ୍ଧକାଳେ ପୁତ୍ର ପାଇଲ ରାମହରି ॥
ଆୟୁବୃଦ୍ଧି ବଳବାନ ହେବ ଯେମନ୍ତେ ।
ଯାଗ ତ୍ୟାଗ ଗ୍ରହଶାନ୍ତି କରିବୁ ନିତ୍ୟେ ॥
ବୃଷଭାନୁ ନନ୍ଦିନୀ ଅଛି ମହାସତୀ ।
ତାଙ୍କ ପାକ ଭକ୍ଷଣେ ନ ପଡ଼େ ବିପତ୍ତି ॥
ଯଶ ଆୟୁଷ ବୃଦ୍ଧି ବଳବାନ ହୁଏ ।
ରଣେ ଅଜୟ ତ୍ରିପୁରେ ପୂଜା ପାଏ ॥
ତାଙ୍କୁ ଅଣାଇଣ ପୁରେ ପାକ ସମ୍ପାଦି ।
କୃଷ୍ଣ ଭୋଜନେ ନାଶ ଦୁଷ୍ଟ ଦାନବାଦି ॥
ତତ୍ତ୍ୱ ବଚନ ଆମ୍ଭ ଥିବ ହେତୁ କରି ।
ତୋର ପୁତ୍ରକୁ ଛନ୍ତି ଅନେକ ବଇରି ॥
ଶୁଣି ଯଶୋବନ୍ତୀ ଘେନି କୋଳେ ନନ୍ଦନ ।
ମୁନି ଚରଣ ତଳେ କଲେକ ବନ୍ଦନ ॥
ପାଦଧୂଳି ପୁତ୍ରଙ୍କର ମଉଳରେ ସିଞ୍ଚି ।
ତୁମ୍ଭ କଲ୍ୟାଣେ ଯହିଁ ତହିଁ ଥିବେ ବଞ୍ଚି ॥
ମୁନି ରାମ କୃଷ୍ଣ ତନୁ ସ୍ପରଶ କଲେ ।
ଆନନ୍ଦରେ ନୟନରୁ ଲୁହ ମୁଞ୍ଚିଲେ ॥
ଏମନ୍ତରେ ଦୁର୍ବାସା ମୁନି ଗଲେ ଚଳି ।
ଏଥି ଅନନ୍ତରେ ଶୁଣ କୃଷ୍ଣର କେଳି ॥
ବୃନ୍ଦା ଘେନିଣ ସଙ୍ଗେ କକ୍ଖଟୀ ବାନରୀ ।
କହେ ପୌର୍ଣ୍ଣମାସୀ ପାଦ ଦର୍ଶନ କରି ॥
ଷଡ଼ ଋତୁଙ୍କରେ ଅତି ଶୋଭା କାନନ ।
କାନ୍ତ ଆଗମନେ ଯେହ୍ନେ କାନ୍ତା ଲପନ ॥
ସେହ୍ନ ପ୍ରକାରେ ନାନା କୁସୁମ ବିକଶେ ।
ହାସ ମଧୁମାସ ଅଳି-ଧ୍ୱନି ପ୍ରକାଶେ ॥
ଦେବରଥ ଆଘ୍ରାଣେ ଲେଉଟି ଚଳଇ ।
ସାହାସଖା ଘେନିଣ ମଦନ ଗୋଡ଼ାଇ ॥

ସର୍ବ କୁଶଳ ନନ୍ଦନ ବନକୁ ଜିଣି ।
କେତେ ଦିନେ ବନେ କାଟିବେ ଠାକୁରାଣୀ ॥
ସର୍ବେ ଅନେକକାଳୁଁ ଲଗି ବାଟ ଚାହିଁ ।
ରାଧାକୃଷ୍ଣ ଯୁଗଳକୁ ଦେଖିବାପାଇଁ ॥
ଏବେ ନିଭୃତ କୁଞ୍ଜ ହୋଇଛି ପ୍ରକଟ ।
ବତ୍ସ ଚରାଇଗଲେ ଯାହା ନନ୍ଦଗୃଠ ॥
ଗୋପକୁମର ସଙ୍ଗେ କୁତୂହଳ ରସେ ।
ଦିନୁଦିନୁ ସେ ବନ ଭିତରକୁ ପଶେ ॥
ଦିନେ କଳ୍‌ଖଣ୍ଟୀ ପକ୍ଷୀ ନ ଦେଇ ଉଡ଼ାଇ ।
ଗୋପସୁତ ଆସେ ଏଣିକ ବଳଆଇ ॥
ପୁଣି କଂସ-ରାଜାର ମଲ୍ଲ ଅର୍ଘାସୁର ।
ଆଜ ବଣନ ଆସିଣ କ କରେ ବଗୁର ॥
ବୃନ୍ଦାଦେବୀଙ୍କର ତହିଁ ସେ ଏମନ୍ତ ଖୁଣି ।
ଦେବୀ ବୋଲେ ତାହା ସବୁ ଅଛଇ ଜାଣି ॥
ଯାହା ଲୋଡ଼ିଁକି ତାହା କରିବା ସନ୍ଧାନ ।
ରାଧାକୃଷ୍ଣ ଯୁଗଳ ଉପାୟ ବିଧାନ ॥
ଏବେ କ୍ରମେ ଯାଇଣ ଦ୍ରବ୍ୟ ନିର୍ମା କର ।
ବନବିହାର ମଧୁର ରସ ସମ୍ଭାର ॥
ସୂର୍ଯ୍ୟସ୍ଥଳେ ନିଭୃତ କୁଞ୍ଜ ପୁଷ୍ପଶେଯ ।
କୁଣ୍ଡ କୂଳଜଳ ଯନ୍ତ୍ର ମଣ୍ଡପଭଜ ॥
ପାକଶାଳା ଭୋଜନ ଲୀଳା ପାଶାଖେଳା ।
ଅଭିଷେକ ସ୍ଥାନେ ଖଞ୍ଜି ତୋରଣ ଦୋଳା ॥
ରାସରଙ୍ଗ ଭୂମିସ୍ଥଳ ବିଶ୍ରାମ ପୀଢ଼ ।
ଲତାତରୁତଳ ସଞ୍ଚଘଞ୍ଚ ନିବିଡ଼ ॥
କଳ୍ପପାଦପ ତଳେ ମାଧବୀ ମାଣ୍ଡୁଆ ।
କୁତୁହଳ ଗୁମର କେତକୀ ଗୃନ୍ଦୁଆ ॥
କୁନ୍ଦକଢ଼ି ମାଳାରେ ନାଗେଶ୍ୱର ଝୁମ୍ପା ।
ଶତଦଳ ସେବତୀ କର ଥୋପା ଥୋପା ॥
ଅଷ୍ଟସଖୀଙ୍କ କୁଞ୍ଜ ଏକୁଏକ ଜଣା ।
ସେବା ସଂଯୋଗରେ କିଛି ନୋହିବ ଊଣା ॥
ଭୂମି ସମତଳ କରି ବାଲୁକା ସଞ୍ଚି ।
ପୁଷ୍ପ ବନିକା ହେବ ଠାବେ ଠାବେ ଘଞ୍ଚି ॥
ମଧୁଫଳର. ଅଶନ ଯେ ଫଳଯୋଗ୍ୟ ।
ଆଟପ ଥାଇଣ ଦେଖି କରିବ ସଂଯୋଗ ॥

ଲକ୍ଷଲକ୍ଷ ବାଞ୍ଛାତରୁ ଯାହାର ମୂଳେ ।
ଇଚ୍ଛା କଲେ ହୋଇବ ଯାହା ଯେତେବେଳେ ॥
କୋଟି କୋଟି କାମଧେନୁ ଚାରେ ସହିଁରେ ।
କିସ ଅପୂର୍ବ ଅବା ହୋଇବ ତହିଁରେ ॥
କିସ ନ ଜାଣ ତୁମ୍ଭଙ୍କୁ କହିବା କିସ ।
ଯେଉଁଥି ଲାଗି ଦାମୋଦର ହୋଇବେ ତୋଷ ।
ଆଜ ଗୋପସୁତଙ୍କୁ ଏ ବନେ ଡରାଇ ।
କୃଷ୍ଣ ହସ୍ତରେ ଅଘାସୁରକୁ ମରାଇ ॥
ବ୍ରହ୍ମଗାୟତ୍ରୀ ଜପି କରିବ ଉପାୟେ ।
ବନେ ଯେହ୍ନେ ବରଷେ ନ ଆସିବେ ପୋଏ ॥
ତେବେ ପରମନିତ୍ୟ ଗୁପ୍ତଲୀଳା ହେବ ।
ମହାମଧୁର-ରସ ଉଜ୍ଜ୍ୱଳ ନୋହିବ ॥
ଏମନ୍ତ ବୋଲିଣ ଦେବୀ ବାଞ୍ଛାତରୁ ତଳେ ।
ଧ୍ୟାନେ ବସିଲେ ସମାଧିଯୋଗ ନିଷ୍ଠଳେ ॥
କାମଗାୟତ୍ରୀ ପ୍ରସାଦେ ସକଳ ସାଧି ।
ହେତୁ ଗୋଚରେ ତହିଁରେ ଲଗାଇ ବୁଦ୍ଧି ॥
ଏଥୁଅନନ୍ତରେ ରସ ଶୁଣ ସୁଜନ ।
ମଧୁକଟକରେ ଥାଇ କଂସରାଜନ ॥
କୃଷ୍ଣ ମହିମା ଶୁଣି ନିରନ୍ତରେ ଡରେ ।
ଯେଣୁ ମଲେ ପୁତନାଆଦି ମହାମଲ୍ଲେ ॥
ରାମକୃଷ୍ଣ ବିନାଶ ଅହର୍ନିଶି ଭାଳ ।
ଅର୍ଘାସୁର ନାମେଣ ମଲ୍ଲ ମହାବଳୀ ॥
ତାଙ୍କୁ ବିଶ୍ୱାସେ କହିଣ ଗୋକୁଳେ ପେଷି ।
ଭ୍ରାତବଇରୀ ରାମକୃଷ୍ଣ ଆସ ନାଶି ॥
ଆଜ୍ଞା ପାଇଣ ସର୍ପ ଅଜଗର ରୂପେ ।
ରହିଅଛି ଗୋବର୍ଦ୍ଧନ ଗିରି ସମୀପେ ॥
ଏକଦିନେ ମାତାଙ୍କୁ କହନ୍ତି ଶ୍ରୀହରି ।
ରହିଥାଉଁ ବନେ କାଲି ନେବୁଁ ବାଛୁରି ।
ଭୁଞ୍ଜିଗଲେ ଉଛୁର ଖରା କରେ ଟାଣ ।
ବେଗରେଣ ଏ ଖରାକାଳ ଅଗ୍ନିବାଣ ।
ଭାତପୁଡ଼ା ସଜାଡ଼ିଣ ଦିଅ ମା ବାନ୍ଧି ।
ସବୁପୋଏ କରିଣଅଛୁଁ ଏହିବୁଦ୍ଧି ॥
ରାମ ନିଦ୍ରା ନ ଭାଙ୍ଗୁ ଆଗହୋଇ ଯିବୁଁ ।
ଶୀତଳରେ ଯାଇଣ ତରୁତଳେ ଥିବୁଁ ॥

ବାଟବାଲ ଚାହିଁଣ ଚରଣ ଫୋଟକା ।
ବୁଲି ନ ପାରି ମହା ବିକଳେ ଚାଟକା ।।
ଶୋକେ ବୋଲନ୍ତି ମାଏ ନ ପାରିଲି ତୋତେ ।
ଏଡ଼େ ଦୁଃଖକୁ କୃଷ୍ଣମ୍ବ ଅପୋଷା କେତେ ।।
ରାମ ସାମନ୍ତ ତୁମ୍ଭରେ ସେବକ ଲୋକ ।
ବନଚର ହୋଇଣ ଭାତପୁଡ଼ା ରଙ୍କ ।।
ଯାନ ଚଢ଼ିବା ପଢ଼ିବା ଭୋଗ ଭୁଞ୍ଜିବା ।
ସୁଖ ତେଜିଣ ଦେହକୁ ଦୁଃଖେ ଗଞ୍ଜିବା ।।
ବଞ୍ଚା ରଖିବାରେ ତୋର' ବଳିଲା ମନ ।
ଷଠୀଦେଉଛି ଲେଖନ କେ କରୁ ଆନ ।।
କୃଷ୍ଣ ବୋଇଲେ ମାତା ଯା'କର ବାରଣ ।
ବୃତ୍ତେ ଯେମନ୍ତ ଦୁଃଖ ସେ ସୁଖ କାରଣ ।।
ଶୁଣି ମଉନେ ମାଏ ବାନ୍ଧ ପୁଡ଼ାଭାତ ।
ବେଲ ଅଁଳା ଦଧି ଲବଣ ସହିତ ।।
ଲଡ଼ୁ ସର ଶାକର ଯେ ଛେନାଖରଡ଼ା ।
ନାରିକେଳ ରସକୋରା ଅମୃତମଣ୍ଡା ।।
ରହ ନ ପାରୁ ବେଗ କଲେ ଗାଈଦୁହାଁ ।
ବଞ୍ଚା ଘେନ କୁମରେ ହୋଇଲେ ଏକମୁହାଁ ।।
ଅନ୍ନପୁଡ଼ା ଧରି ଅଛନ୍ତି ଯେଝା କରି ।
ଶିଙ୍ଗା ବେଣୁ ବଜାଇ ହୋଇଲେ ବାହାର ।।
ମାତା-ଯଶୋଦା ନୟନୁ ଲୋତକ ବହେ ।
ଶୋକେ ଗଦଗଦ ଚିତ୍ତ ନିଶ୍ଚଳ ନୁହେଁ ।।
ସଙ୍ଗକୁମରଙ୍କ କର ଓପ୍ପୁ ଧରଇ ।
ପଥ ଶବଦେ ନୟନ କର୍ଣ୍ଣ ଡେରଇ ।।
ବନେ ବିଳମ୍ବ ନ କରି ଆସିବ ବେଗ ।
ବଣା ହେବଟି କୃଷ୍ଣ ନ ଛାଡ଼ିବ ସଙ୍ଗ ।।
ମୁହିଁ ଅନ୍ଧୁଣୀ ହୋଇଣ ରହିଁଣ ଥିବି ।
ତୁମ୍ଭ ଆସିବା ଦେଖିଲେ ଚକ୍ଷୁ ପାଇବି ।।
କହି କହି ଲୋତକେ ବସନ ତିନ୍ତଇ ।
ପୁତ୍ର ଗମନେ ଇଷ୍ଟଦେବଙ୍କୁ ଶରଇ ।।
କେତେଦୂରେ ମିଶିଣ ନ ପାରେ ଗୋଡ଼ାଇ ।
ପୋଏ ବେଗେଣ ଛଡ଼ାଇ ବଞ୍ଚା ଅଡ଼ାଇ ।।
ବନେ ପ୍ରବେଶ ହୁଅନ୍ତେ ରବି ଉଇଁଲା ।
ବଚ୍ଛ ବାଳକଙ୍କରେ ବୃନ୍ଦାବନ ଶୋହିଲା ।।

ପୋଏ ଢମାଳି ଗୀତ ଗାଇଣ ନାଚନ୍ତି ।
ଏକ ଆରେକ ବାଡ଼ ମେଲଇ ପାଞ୍ଚନ୍ତି ।।
ରଙ୍ଗ ଜଙ୍ଘିରେ କାଛି କାଛଣୀ ଘଣ୍ଟିରେ ।
ପାଦେ ନୂପୁର ଘାଗୁଡ଼ି ଶବଦ କରେ ।।
ଝଲ ଝଲ ଝଲ ଚମ୍ପା ଲମ୍ବେ ପାର୍ଶ୍ୱେ ।
କେୟୁର କଙ୍କଣ ଫୁଲ କର୍ଣ୍ଣ ଅବତଂସେ ।।
ହାରପଦକ ବନମାଳ ଯେ ଗଳାରେ ।
ରଙ୍ଗଗୁଞ୍ଜ ଗୁଞ୍ଜାରପାଟି ମଉଳରେ ।।
ଶିଖୀପୁଚ୍ଛ ବାଙ୍କଚୂଳ ବେଗ ବନାଇ ।
ଦେଖାଦେଖି ହେବଣ ଏକ ଆରେ ଅନାଇ ।।
କେହୁ ରହିଇ ଆଗରେ ଓଗାଳ ବାଟ ।
ତାଳ ବାଇ ଉକୁଟାଇ କରନ୍ତି ନାଟ ।।
କେହୁ କାହା ଭାତପୁଡ଼ା ନେଇ ଲୁଚାଇ ।
ଏକ ଆରକକୁ କହି କଥା ବଞ୍ଚାଇ ।।
କୃଷ୍ଣ ଗ୍ରାମ୍ୟରେ ଗୁହାରି କରନ୍ତି ସୁଏ ।
କେହୁ ମେଳ ତେଜିଣ ଆଗଭଲ ଧାଏଁ ।।
ବନ୍ଧୁ ବୋଲଇ ରେ ଭାଇ ଧାଇଁଛ ଆଗେ ।
ଆଜ ବଜାଣି ସିନା ଯାଅ ବେଗେ ବେଗେ ।।
ଚନ୍ଦ୍ରାବଳୀ ନିମନ୍ତ୍ରଣ ଦେଇଛି ଆଜ ।
ଷଡ଼ରସ ଯୋଗାଡ଼େ ଦେବ ବନଭୋଜୀ ।।
ଆଗେ ଗଲାପୁଅଙ୍କୁ ଏଥେ ଭାଗ ନାହିଁ ।
ଏହା ଜାଣିଣି ହରି ପଛେ ଅଛି ରହି ।।
ପ୍ରିୟା ପ୍ରେମ ପ୍ରୀତିରେ ନ ପାରଇ ଭୁଲି ।
ତାକୁ ଛାଡ଼ି କେମନ୍ତେ ଯିବା ଆଗ ବଳି ।।
ପୋଏ ବୋଲନ୍ତି ଉପାୟ ଲୋଭ ଭଣ୍ଡାଇ ।
ହୀନବଳ ଷଣ୍ଢିଆ ନ ପାରେ ଗୋଡ଼ାଇ ।।
ଯାଇବେଗ ଆବୋରି ଘେର ସ୍ୱାଦୁଫଳ ।
ବନ୍ଧୁ ଯେମନ୍ତେ ପଛେ ନ ପାଇବ ଭଲ ।।
ଏତେ ବିଗୁରି ବର୍ଗ ଅଡ଼ାଇଲେ ବେଗେ ।
ମହା ଅଜଗର ରୂପ ଦେଖିଲେ ଆଗେ ।।
ପୂର୍ବ ମୁଖରେ ପୋଏ ଯାଉଥିଲେ ଚଳି ।
ରହିଅଛି ପଶ୍ଚିମ ମୁଖେ ମହାବଳୀ ।।
ମହାଭୟଙ୍କର ଘୋର ପାଟି ବିସ୍ତାରି ।
ବନ-ଭୂମି-ହରି-ପଥ-ନଭ ଆବୋରି ।।

ଦନ୍ତମାନେ ଦିଶନ୍ତି ଗିରିଶୃଙ୍ଗ ପ୍ରାଏ ।
ମେଘମାଳା ଯେସନେ ରସନା ଦିଶାଏ ॥
ଦେଖି କୁମାରେ ମନେ ବଡ଼ ଭୟ ପାଇ ।
କେହୁ ବୋଲନ୍ତି କସ ଅଦଭୂତ ଏହି ॥
କେହୁ ବୋଲଇ ମେଘ ଏହି କାମରୂପୀ ।
ଖର ନିଃଶ୍ୱାସ ବାତେ ଚହଲିଲା ଊର୍ମି ॥
କେହୁ ବୋଲଇ ଏହୁ ବନପୋଡ଼ ଧୂମ ।
ବେଶ୍ୱରେ ଏ ଅନ୍ଧକାର ଲତା ଦ୍ରୁମ ॥
କାଳଚକ୍ର ପ୍ରାୟ ଲୋଚନକୁ ବୁଲାଇ ।
ବିଷରସନା ବଡ଼ବାନଳ ଜ୍ୱଳଇ ॥
କେହୁ ବୋଲଇ ଧଁସାଇ ଆଗେ ନ ପଶ ।
କେହୁ ବୋଲେ ନିକଟେ ନାହାଁ ପୀତବାସ ॥
କୃଷ୍ଣ ଦେଖି ଡାକନ୍ତି ରହ ରହ ପୋଏ ।
ସର୍ପ ଉଦରେ ନ ପଶ ମୋ ଯିବା ଯାଏ ॥
ଅର୍ଘା ତୁଣ୍ଡ ହୋଇଛି ପିଚ୍ଛୁଳଲ ପଥ ।
ନିଶ୍ୱାସ ସଂହରନ୍ତେ ପଶେ ଯୂଥଯୂଥ ॥
ଯେହ୍ନେ ନଦୀସ୍ରୋତେ ଭସେ କୁଟୁ ଖସିଲେ ।
ସେହିରୂପେ ବତ୍ସ ବାଳ ଗର୍ଭେ ପଶିଲେ ॥
ସର୍ପ ଉଦରେ କୃଷ୍ଣଙ୍କୁ ଦିଶନ୍ତି ସବେ ।
ଅର୍ଘା ପାଟି ନ ପାଡ଼ଇ କୃଷ୍ଣ ଅଭାବେ ।
ବିଷଜ୍ୱାଳା ଭ୍ରମରେ ନ ପାରନ୍ତି ସହି ।
ହରି ପଶିଲେ ଗୋକୁଳ ଆକୁଳ ଚାହିଁ ॥
ଅର୍ଘା ପାଟି ପାଡ଼ଇ ବୋଲେ ହେଲା କାର୍ଯ୍ୟ ।
ନନ୍ଦଗ୍ରାମ ଗିଳିବି ରଜଣୀରେ ଆଜ ॥
କୃଷ୍ଣ ଅଭାବେ ଲତା ତରୁ ଝାଉଁଳିଲେ ।
ଝଡ଼ ଫୁଲଫଳପତ୍ର ମଉଳି ଗଲେ ॥
ଧାର ବହି ବରଷେ ଶରଧି କାତରେ ।
ଖଗ ମୃଗ କାତର ନେତ୍ର ଲୋତକରେ ॥
ଲୟେ ଲୋଚନ ବଚନ ମନ ବିସ୍ମରି ।
ଶ୍ୟାମ ଚିକ୍କଣ ଚିତ୍ର ରୂପ ଅନୁସରି ॥
ଛନ୍ନ ଛନ୍ନ ଗଗନ ଅବନୀ କମ୍ପଇ ।
ଭୟେ ବୃନ୍ଦା କାମଗାୟତ୍ରୀକି ଜପଇ ॥
ନଦୀ ପବନ ନ ବହେ ସ୍ତମ୍ଭିତ ରବି ।
ଅର୍ଘା ପ୍ରତାପ ଛଳରେ ଲୁଚିଲା ଛବି ॥

ଜଗତର ଆରତ ଜାଣିଲେ ଶ୍ରୀହରି ।
ଅର୍ଘା କଣ୍ଠମୂଳେ ଥାଇ କାୟା ବିସ୍ତାରି ॥
ମହାପ୍ରଚଣ୍ଡ ଅନଳ ପ୍ରଳୟ ଜଣି ।
ତାଳୁ ଚିରି ବାହାର ହେଲେ ବେଣୁପାଣି ॥
ବତ୍ସ ବାଳକ ଗର୍ଭୁ ନେଇଲେ ବାହାର ।
ଅର୍ଘା ଶିର ଉରେ କଲେ ନୃତ୍ୟ ବିହାର ॥
କୃଷ୍ଣ ନୃତ୍ୟ ଚାହିଁଣ ସକଳ ହରଷେ ।
ପୁଷ୍ପ ସଙ୍ଗେ ଅମୃତ ଗଗନୁ ବରଷେ ॥
ଶୁକ ଶାରୀ କୋକିଳ ମଙ୍ଗଳ ଭାଷନ୍ତି ।
ବନପରିମଳ ହରି ଶୋଭା ଦିଶନ୍ତି ॥
ଧୀରେ ବହେ ଶୀତଳ ମଳୟ-ମରୁତ ।
ଅଦଭୁତ କୃଷ୍ଣ-ବାଳଲୀଳା ଚରିତ ॥
ଅର୍ଘା ଅଘନାଶୀ ଅଙ୍ଗେଣ ସମ୍ଭାଳିଲେ ।
ପୁଚ୍ଛଦେଶରେ ଓହ୍ଲାଇ ତଳେ ମିଳିଲେ ॥
ଏତେ ଦୁର୍ଗମ ବୋଲି ତହୁଁ ଲେଉଟିଲେ ।
ଯମୁନାନୀରେ ଗାଧୋଇ ବତ୍ସା ପାଣି ଦେଲେ ॥
ସ୍ଥାନ ନିର୍ମଳ ଦେଖି ଭାତପୁଡ଼ା ଫେଇ !
ସବେ ଭୁଞ୍ଜି ବସିଲେ ଏକସ୍ଥାନ ହୋଇ ॥
ଶାଳ ପଳାଶ ସିଆଳି ପତରେ ଦନା ।
କେହୁ ଗୁଆଖୋଳପା କଲେ ଗୁର କନା ॥
କେହୁ କଦଳୀ ଚଷ କୁଣ୍ଡଳୀରେ ପାରି ।
କେହୁ ମୁଗୁନି ପଥର ଧୋଇ ସଜାଡ଼ି ॥
କେହୁ ବୋଲଇ ମୁହିଁ ନ ପାରଇ ଲେଡ଼ି ।
ଅନ୍ନ ଭୁଞ୍ଜିବି ମୋଢ ଏହୁ ଖୁଡ଼ା ଫେଡ଼ି ॥
ମଧ୍ୟେ ବସି କୃଷ୍ଣ କହେ ହସି ଭୂମିରେ ।
କେହୁ କି କି ଆଣିଛ ଦେଖାଅ ମୋହରେ ॥
କେହୁ ବୋଲଇ ମୋ ଅନ୍ନ ଦେଖ ଶ୍ରୀହରି ।
ଆଣିଅଛି ମୁହିଁ ଦଧିଶାକର ଭରି ॥
କେହୁ ବୋଲଇ କୃଷ୍ଣ ଦେଖ ମୋର ଭାତ ।
ସର ବ୍ୟଞ୍ଜନ ଲବଣୀ ଅଧାମର ଘୃତ ॥
କେହୁ ଦୁଗ୍ଧ ଗୋଳିଆଇ ଆଣିଛି ଅନ୍ନ ।
ସରୁ ନିର୍ମଳ କେହୁ ମଲ୍ଲିଫୁଲ ବର୍ଣ୍ଣ ॥
ନାନା ଅଡ଼ଙ୍ଗ ବ୍ୟଞ୍ଜନ କେହି ଆଣିଅଛି ।
ଭୁଞ୍ଜି ଭୁଞ୍ଜାଇ ମଧ୍ୟରେ ନନ୍ଦର ବତ୍ସ ॥

କେହୁ ସୁସ୍ୱାଦୁ ଚାଖି କୃଷ୍ଣଙ୍କୁ ଯାଚନ୍ତି ।
କେହୁ ଅଧରୁ ଛଡ଼ାଇ ନେଇ ଭୁଞ୍ଜନ୍ତି ॥
ଏକ ଆରେକ ନାହିଁ ଉଚ୍ଛିଷ୍ଟ ବିଚାର ।
ବିହି ଚାହିଁ ଆକାଶେ ବୋଲେ କି ପ୍ରକାର ॥
ଯଜ୍ଞଭୋକ୍ତା ଭୁଞ୍ଜୁଅଛି ଗୋପାଳ ମେଳେ ।
କେମନ୍ତେ ଧର୍ମସ୍ଥାପନା କରିବ ଶଯୁଲେ ॥
ଆଜ ଜାଣିବା ବୋଲି ମିଳି ବତ୍ସା ପାଶେ ।
କମଣ୍ଡଳେ ଭରିଣ ରହିଲେ ଆକାଶେ ।
ବତ୍ସା ପାଶେ ନ ଦେଖି କୁମରେ ଅନାଇ ।
ଲେଉଡ଼ାଣିବୁଁ ବୋଲି କୃଷ୍ଣରେ ଜଣାଇ ॥
ହରି ବୋଲନ୍ତି ସର୍ବେ କରହେ ଭୋଜନ ।
ଏକା ଯାଇଁ ଲେଉଡ଼ ମୁଁ ଆଣିବି ବତ୍ସନ ॥
ଏତେ ବୋଲି ଉଠିଲେ ଅନ୍ନ ବାମ କରେ ।
ବେଲକରଡ଼ ଅଏଁଲା ଆଙ୍ଗୁଳି ସନ୍ଧିରେ ।
ତୁଣ୍ଡେ କବଳ ଦକ୍ଷିଣ ହସ୍ତରେ ଗୁଣ୍ଡି ।
ବାମକାଖେ ସିଂହା ଯେ ଆବର ଲଉଡ଼ ॥
ବନେ ଲେଉଡ଼ିଣ ହରି ବାଛୁରି ନ ଦେଖେ ।
ମଧୁମଙ୍ଗଳ ସୁବଳ ମିଳିଲେ ପାଖେ ॥
ଯଶୋବନ୍ତୀ ବଚନ ମନେ ହେତୁ ପାଇ ।
କୃଷ୍ଣ ଏକା ଗଲେ ବୁଲି ମିଶିଲେ ଧାଇଁ ॥
ତିନିଜଣ ମେଳ ହୋଇ ଲେଉଡ଼ିଲେ ବନେ ।
ବତ୍ସ ନ ପାଇ ଲେଉଟି ଭୋଜନସ୍ଥାନେ ॥
କୃଷ୍ଣ ନ ଦେଖି ବାଳକ ବିଧାତା ହରି ।
ନିଜ ସ୍ଥାନେ ଚଳିଲେ କମଣ୍ଡଳେ ଭରି ॥
କୁମାରଙ୍କୁ ନ ଦେଖି କୃଷ୍ଣ ଖେଦମନ ।
ହରି ଜାଣିଲେ ବିଧାତା ମାୟାବିଧାନ ॥
ପୌର୍ଣ୍ଣମାସୀଙ୍କି କଲେ ମନେ ସୁମରଣା ।
କାମ ଗାୟତ୍ରୀ ମନ୍ତ୍ର ବୀଜୋପାସନା ॥
କଳ୍ପପାଦପମୂଳେ ଯୋଗମାୟା ଚଳେ ।
କାମଧେନୁ ପ୍ରସାଦେ ଜାତ ବତ୍ସାବାଳେ ॥
ରୂପ ଲକ୍ଷଣ ବେଶ ବୟସ ଯେମନ୍ତ ।
ହାସ ରସ ଗଣ୍ଡମର୍ଦ୍ଦ ବଳ ତେମନ୍ତ ॥
ଗତ ମତରେ ପ୍ରବେଶ ଗୋକୁଳେ ଆସି ।
ନେଜ ରଣ୍ଡପଥେ ମିଳେ କି ବ୍ରଜବାସୀ ॥

ଗତଦିନୁ ଜନମାଙ୍କ ସ୍ନେହ ବିଶେଷେ ।
ହରି ପ୍ରତି ଅଙ୍ଗ ଲଭି ବାତ୍ସଲ୍ୟରସେ ॥
ନିତ୍ୟମତେ ଗୋବର୍ଦ୍ଧନ ସ୍ନାନ ଭୋଜନ ।
ବତ୍ସ ଚରାଇ ବିହରନ୍ତି ବନେବନ ॥
ମଧୁମଙ୍ଗଳ ସୁବଳ ଏ ଦୁହେଁ ସଙ୍ଗେ ।
ଆଗେ ଆଗେଣ ବତ୍ସ ବାଳଖେଳ ରଙ୍ଗେ ॥
ସ୍ନେହ ବଚନେ ଜଟିଳା ଅବଧାନରେ ।
ଧନବୃଦ୍ଧି ଗୋବର୍ଦ୍ଧନ ଆରାଧନରେ ॥
ପୁତ୍ର ଆୟୁଷ ଯଶ ହେବ ଶତ୍ରୁ ନାଶ ।
ବଧୂ ହସ୍ତରେ ପୂଜା କରାଇ ଦିନେଶ ॥
ଧନିକାମିନୀ ନାନ୍ଦୀମୁଖୀ ଅଛି ସହି ।
ବଧୂ ସମର୍ପି ଜଟିଳା ଆକଟେ କହି ॥
ମୋର କୁଳମଣ୍ଡଣୀରୂପ ଜେମାଦେଇ ।
ନନ୍ଦକହ୍ନାଇ ଯେମନ୍ତେ ନ ଦେଖେ ଚାହିଁ ॥
କୁଳବଧୂ-ବଧୂକୁ ବିଧିନୁହଁ ସେହି ।
ତାହା ଉପରେ ବାହାର ନୁହନ୍ତି କେହି ॥
ଏହି କଥା ମୁଁ ତୁମ୍ଭ ସଭିଙ୍କୁ ମାଗଇ ।
ନାନ୍ଦୀମୁଖୀ ବୋଇଲେ ଏ ମୋତେ ଲାଗଇ ॥
ସେ ବନେ ପୁରୁଷ ନୁହନ୍ତି ଆତଯାତ ।
ଶ୍ରୀକୃଷ୍ଣ ବଳି ନ ଯାଏ ଯଶୋଦାସୁତ ॥
ଯିବା ଆସିବା କେବଳ ହେବ ଉତ୍ତର ।
ପୂଜା ବଢ଼ାଇ ବେଗେ ଆସିବୁଁ ମନ୍ଦିର ॥
ସେହୁ ଆମ୍ଭଙ୍କୁ ସ୍ୱପ୍ନେ ଦେଖିବ କେମନ୍ତେ ।
ଆମ୍ଭେମାନେ ବେଢ଼ିଥିବୁଁ ସଙ୍ଗତେ ॥
ବଇଶାଖ ଅର୍କବାର ମିତ୍ରଋକ୍ଷରେ ।
ସୂର୍ଯ୍ୟ ପୂଜାକୁ ଶୁଭଯୋଗ ପ୍ରତ୍ୟକ୍ଷରେ ॥
ପୂଜା ଯୋଗାଡ଼ ଘେନି ସମ୍ଭ୍ରମେ ବାହାର ।
ସଖୀଗଣ ନିଯୋଗ ସେବା ଯେ ଯାହାର ॥
ପୂର୍ଣ୍ଣକୁମ୍ଭ ଦଧିମୀନ ଆଗେ ଧରିଲେ ।
ହୁଳହୁଳି ଦେଇଣ ମଙ୍ଗଳ ଗାଇଲେ ॥
କେହୁ ବୀଣା ଅବା ତାଳ ମର୍ଦ୍ଦଳ ବାଏ ।
ଡମ୍ଫ ଅମୃତି ନାନାବିଧ ଯନ୍ତ୍ର ବଜାଏ ॥
ଛତ୍ର ଚାମର ଚୀରାଳ ଖଦି ବିଞ୍ଚଣୀ ।
ପଥରପରିମଳ ଛବିଚନ୍ଦନପାଣି ॥

ଅତି ଉତ୍ସୁକେ ବନେ ପ୍ରବେଶ ହୋଇଲେ ।
ବୃନ୍ଦା ସ୍ୱଗଣ ଯେନ ପାଚ୍ଛନ୍ତି ଅଇଲେ ।।
ସମ୍ମାନ ସକାଶେ ଆଗେ ପଥ କଢ଼ାଇ ।
ଧୀରେ ଧୀରେଣ ଦେଖା ଚରଣ ବଢ଼ାଇ ।।
ତରୁ ଲତା ମଧୁ ସ୍ରବ ପୁଷ୍ପ ବରଷେ ।
ଧୀର ପବନ କାନନ ଶୋଭ ହରଷେ ।।
ଶୁକ ପିକ ସାରୀ କରନ୍ତି ଶୁଭଧ୍ୱନ ।
ଦଶ ପରମଳ ସୌମ୍ୟ ଦଶେ ଅବନୀ ।।
କେତେଦୂର ଯାଇଣ କୁଣ୍ଡ ନିରେଖିଲେ ।
ନିଜ ଆତ୍ମା ପ୍ରାୟ ବୁଦ୍ଧି ତହିଁ ରଖିଲେ ।।
ପରିମଳ କୂଳ ବୃକ୍ଷ ଭୂନେ ଶକ୍କଣ ।
ସ୍ଫଟିକର ପାବଚ୍ଛେ ବେଢ଼ା ଚଉକୋଣ ।।
ସ୍ୱାଦୁ ସୁଗନ୍ଧ ଶୀତଳ ପାତଳ ଜଳ ।
ଅତି ନିର୍ମଳ ତଳ ବାଲି ଝଲଝଲ ।।
ଠାକୁରାଣୀ ଦର୍ଶନ ଗମନ ଲାଳସେ ।
ପଦ୍ମବଦନ ବିକାଶ କୁମୁଦ ହସେ ।।
ନେତ୍ର ମୀନ ଚଞ୍ଚଳ ତରଙ୍ଗ ଅପାଙ୍ଗ ।
କୋକନଦାଧର ଭ୍ରମନ୍ତି ଅଳକାଭୃଙ୍ଗ ।।
ଜଳନୀଳ ଶକୁଳ ସୁବାହୁ ମୃଣାଳ ।
କୁଚ ସୁଚକ୍ରବାକ ଗମନ ମରାଳ ।।
କଳରବ ନୂପୁର ଶବଦ ରୁଚିର ।
ପୁଷ୍ପ-ପରାଗ-ଭୂଷିତ ଦଳ ସୁଚିର ।।
ବକପନ୍ତି ହାର ମୋତି ଅତି ରୂପକ ।
ମଧ୍ୟେ ପାପଦର୍ଣ୍ଣି ହେମ ହୀରାଦେକ ।।
ଜଳଚର ନିକର ରବ ହୁଳହୁଳ ।
ଦେଖି ଅତି ମୋଦେ ରାଧା ଶରଧା ବଳ ।।
ମୋର ମିତ୍ର ଏ କୁଣ୍ଡ ବୋଲିଣ ପ୍ରଶଂସି ।
ମୁଖ ପଖାଳ ଶ୍ରମ ନାଶି ଜଳେ ପଶି ।।
ଶୁଣି ସଜନୀ ପାଣି ଆଣି ମୁଣ୍ଡେ ସିଞ୍ଚି ।
ପାନ କରଣ ମୁଖ ଶ୍ରମ ତୃଷା ବଞ୍ଚି ।।
ବନେ ବନେଣ ଚଣିଣ କୁସୁମ ତୋଳି ।
ଅତି ଚହଳ ଗହ ଗହ ହୁଳହୁଳି ।।
ଲତା ତରୁ ଘନ ପଲ୍ଲବ ଫଳ ଫୁଲେ ।
ମଣିବାଲୁକା ସଞ୍ଚଭୂମି ସମତୁଲେ ।।

କୃଷ୍ଣ ଚରଣ ଚିହ୍ନ ପଡ଼ିଅଛି କାହିଁ ।
ଦେଖି ନିରେଖି ସଖୀ ତୁଣ୍ଡ ହୋଇ ରହି ।।
କେହୁ ବୋଲେ ଅଛି ଅଷ୍ଟାଦଶ ଲକ୍ଷଣ ।
ମହାପୁରୁଷ ଚିହ୍ନ ଅତି ବିଚକ୍ଷଣ ।।
କେହୁ ବୋଲଇ ସକଳ ଲୋକ ସ୍ମରଣେ ।
ତେଣୁକରି ସର୍ବଦେବ ଚିହ୍ନ ଚରଣେ ।।
ବ୍ରହ୍ମାଙ୍କର ଦଣ୍ଡରେଖା ବିଷ୍ଣୁଙ୍କ ଚକ୍ର ।
ଶିବଙ୍କ ପିନାକ ଯେ ବଜ୍ର ଅସ୍ତ୍ର ଶକ୍ର ।।
ସୂର୍ଯ୍ୟରଥଧ୍ୱଜ ଦ୍ୱିଜରାଜ ବିରାଜେ ।
ଅଷ୍ଟବସୁଏ ଅଷ୍ଟକୋଣ ଅଇଶ୍ୱର୍ଯ୍ୟେ ।।
ଶତ ଶତ କୋଣ ତୀର୍ଥ ସିନ୍ଧୁ ମୂଳରେ ।
ବିନ୍ଦୁମତେଣ ରହିଅଛନ୍ତି ନଖତଳେ ।।
ଶଙ୍ଖନିଧି ପଦ୍ମନିଧି କୁବେରପଦେ ।
ଗଜାନନାଙ୍କୁଶ କାମଧେନୁ ଗୋଷ୍ପଦେ ।।
ପୂର୍ଣ୍ଣକୁମ୍ଭ ବରୁଣଯେବ ସରସ୍ୱତୀ ।
ମୁନିଗଣ ସ୍ଥାନ ସର୍ବମଙ୍ଗଳସ୍ୱସ୍ତି ।।
କାମକେତନ ମୀନ ତ୍ରିଗୁଣ ତ୍ରିକୋଣେ ।
ଆରାଧନ ଛନ୍ଦର ବାସ ଅମଳାଣେ ।।
କେହୁ ବୋଲଇ ଏମନ୍ତ ପୁରୁଷ ଯେହୁ ।
ଆମ୍ଭ ଠାକୁରାଣୀଙ୍କ ଅନୁଗତ ସେହୁ ।।
ବ୍ରଜେ ଜାଣିଣ ଶୁଭ ଅବନୀ ପ୍ରକାଶେ ।
ଶ୍ୱେତପତାକା ମୀନ ପୂର୍ଣ୍ଣକୁମ୍ଭ ବାସେ ।।
ପଦ୍ମ ଗୋଷ୍ପଦ ଆଦରେ ଚର୍ଚ୍ଚିତ ମହୀ ।
ଦ୍ରବି ପାଷାଣ ପଦଚିହ୍ନ ଅଛି ବହି ।।
ଚିତ୍ରପଟେ ଚିତ୍ରା କରି ପତ୍ର ଲିଖନ ।
ରାଧା ଛାମୁରେ ନେଇ କରାଏ ଦର୍ଶନ ।।
କୁଣ୍ଡ ସ୍ନାନ କରି କୂଳେ ସୁବେଶ ହୋଇ ।
ପାଦପଦ୍ମକୁ ଚାହିଁ ଅନୁରାଗ ବହି ।।
ପୌର୍ଣ୍ଣମାସୀ ପ୍ରବେଶ ଏମନ୍ତ ସମୟେ ।
ରାଧା ଓଲଗି ଅବଲୋକନ ଉଭୟେ ।।
ଦେଖା ମନକୁ ଜାଣି କହନ୍ତି ବଚନ ।
ତୋର ନିଜ ପତି ପାଦପଦ୍ମର ଚିହ୍ନ ।।
ପଦ୍ମରୂପୀ ତପନ ଏ ଅର୍ଚ୍ଚନା କର ।
ପ୍ରାଣବଲ୍ଲଭ ଲଭ ଅନୁରୂପ ବର ।।

କାମବୀଜମନ୍ତ୍ର କାମଗାୟତ୍ରୀ ଦେଲେ ।
ଜପ କଲେ ପ୍ରାଣନାଥ ମିଳିବ ଭଲେ ॥
ବନଗମନେ କହିଲେ ପାଦୁକା ମନ୍ତ୍ର ।
ବୃନ୍ଦା ଜାଣଇ ଏଥିର ସର୍ବ ବୃତ୍ତାନ୍ତ ॥
ଏତେ କହିଣ ଦେବୀ ଭଜନ କରି ଗଲେ ।
ତହୁଁ ସଖୀ ମୁଖ ଚାହିଁ ରାଧା ପୁଚ୍ଛିଲେ ॥
ଏହି ଚିହ୍ନ ଯାର ରୂପବର୍ଣ୍ଣ କି ତାର ।
ଲେଖି ଦେଖାଇଲେ ଧନ୍ୟ ବୋଲିଣା ଆର ॥
ଶୁଣି ରାଧା ସେ ବାଣୀ ଶିରେ କର ଦେଲେ ।
ପୁଣି ବୃନ୍ଦା ବଦନକୁ ଚାହିଁ ବୋଇଲେ ॥
ଏହି ପୁରୁଷ ଲକ୍ଷଣ ଗୁଣ କି ଜାଣ ।
ବୃନ୍ଦା ବୋଇଲେ ଏକାନ୍ତେ କହିବି ପୁଣ ॥
ଏମନ୍ତେଣ ପରବେଶ ମଧ୍ୟାହ୍ନ କାଳ ।
ପୂଜା ନିମନ୍ତେ ପ୍ରବେଶିଲେ ସୂର୍ଯ୍ୟ-ସ୍ଥଳ ॥
ଶୁଦ୍ଧସ୍ଫଟିକ ପଦ୍ମପୃଷ୍ଠ ମଣ୍ଡପରେ ।
ସୂର୍ଯ୍ୟମଣି ପ୍ରତିମା ବିଜୟ କେଶରେ ॥
ପାଦପଦ୍ମ **ପଠ** ଆବାହନ କରାଇ ।
ଖଦିରଦ୍ରୁମର ଚରାଳଛନ୍ଦ ଧରାଇ ॥
ମୁନିକନ୍ୟାଗଣ ଦ୍ରବ୍ୟ ସଂସ୍କାର କରି ।
ମଧୁ ଦୁଗ୍ଧ ଦଧି ଘୃତ ଖଣ୍ଡକୁ ଭରି ॥
ମହାସ୍ନାନ ପାଦ ଅର୍ଘ୍ୟ ଆସନେ ଦେଇ ।
ଧୂପଦୀପ ଗନ୍ଧପୁଷ୍ପ ନୈବେଦ୍ୟ ଦେଇ ॥
ହୁଳହୁଳି ନାମବାଦ୍ୟ ମଙ୍ଗଳଗୀତେ ।
ଉପଚାର ସେବା ସେବି ଖଟଣୀ ନୃତ୍ୟେ ॥
ରାଇପୁଷ୍ପ ଆଞ୍ଜୁଳି ଦେଇ ପାଦେ ପଡ଼ି ।
ମନେ ଚିନ୍ତି କହିଲେ ରହି କର ଯୋଡ଼ି ॥
ଦ୍ୱିଜତରୁଣୀ ଆଣି ପ୍ରସାଦକୁ ଦେଲେ ।
ଶିରେ ଘେନିଣ ରାଧା ମେଲାଣି ହୋଇଲେ ॥

ଦେବାର୍ଚ୍ଚନ ବଢ଼ାଇ ନବରେ ଆସଇ ।
ଗନ୍ତୁଁ ଶତଗୁଣରେ ଶୋଭା ପ୍ରକାଶଇ ॥
ରାଧା ଆଗେ ଚଳିଲେ ରାସପଥ ଦେଖାଇ ।
ମନବଚନ ଲୋଚନ ତହିଁ ରଖାଇ ॥
ପୁରେ ପ୍ରବେଶ ପାଦ ପଖାଳେ ଦୁର୍ଲ୍ଲଭା ।
ଶ୍ରମଶାନ୍ତେ ଭୋଜନେ ସେବି ଜେଷ୍ଠାସେବା ॥
ବ୍ରଜବିହାର ତୃତୀୟ ବୋଲ ସମ୍ପୂର୍ଣ୍ଣ ।
କୃଷ୍ଣପଦ ସହସ୍ରଦଳ ଏ ଦଳ ସୁବର୍ଣ୍ଣ ॥
ଦାସମାନସଭ୍ରସଲ ଷଲସେ ରସ ।
ଶୁଣି ସୁଜନଜନେ ନ ଘେନିବା ଦୋଷ ॥
ଜୀବକାରଣ ଶ୍ରୀକଣ୍ଠ ଦାସଗୋସାଇଁ ।
ମହାରସ ଦେଶଭୂଷା ପାଦେ ବସାଇ ॥
ଭାଗବତ ଦଶମ ମୂଳ ହେମସୂତ୍ର ।
ରତ୍ନ-ରୂପକୃତ-ଲୀଳାମୃତ ଚରିତ୍ର ॥
ମୋର ମନ ରୁଚିକର ଗୁନ୍ଥଇ ବାଛି ।
କଣ୍ଠେ ବହି ଭବବ୍ୟାଧି ନ ବାଧୁ କିଛି ॥
ଗୋପୀନାଥ ଦେବ ଅଙ୍କ ଶ୍ରୀମାର୍ଗଶିର ।
ପାସ ଭଗବାନ ପଦ ଭ୍ରମରବର ॥
ସଦା ବ୍ରହ୍ମ ସଦାମତି ହରିଭକତି ।
ଭୋଗ ପହଣ୍ଡ ଗୁଣ୍ଡିଚା ମୋହନ କାନ୍ତି ॥
ଏହି ସମୟେ ବୋଲ ହେଲା ସମ୍ପୂର୍ଣ୍ଣ ।
ଦାଶରଥି ଦାସ ସେବେ ପଦ୍ମଚରଣ ॥
ସାଧୁଜନେ ମୋହର ନ ଘେନିବା ଦୋଷ ।
ତୁମ୍ଭ ଚରଣକୁ ମୋର ସର୍ବଦା ଆଶ ॥
ମନ ବୁଦ୍ଧି ଆଦି କରିଥିବ ସେବାରେ ।
ଏହି ଅନୁଜ୍ଞା ମାଗଇ ଦାସୀ ଦବାରେ ॥

ତୃତୀୟ ବୋଲ ସମ୍ପୂର୍ଣ୍ଣ ।
ଶ୍ରୀ ରାଧାକୃଷ୍ଣାର୍ପଣମସ୍ତୁ ।



# ଚତୁର୍ଥ ବୋଲ

ଭକ୍ତକେଳି ବାଣୀରେ ଗାଇବ ।

ଜୟ ଜୟ ଗୋକୁଳ ଶ୍ରୀକୁଣ୍ଡ ବୃନ୍ଦାବନ ।
ଜୟ ଜୟ ଯମୁନା ଶ୍ରୀ ଜୟ ଗୋବର୍ଦ୍ଧନ ॥
ଜୟ ଜୟ ବ୍ରଜଭୂମି ଜୟ ରାସସ୍ଥଳ ।
ଜୟ ବଂଶୀବଟ ଜୟ କଳ୍ପତରୁତଳ ॥
ଜୟ ଶ୍ରୀ ମାନସଗଙ୍ଗା ବିଶ୍ରାମ ଶ୍ରୀଘାଟ ।
ଜୟ ଶ୍ରୀ ଗଉରାଙ୍ଗଙ୍କ ପୂର୍ଣ୍ଣ ପ୍ରକାଶିତ ॥
ଜୟ ଶ୍ରୀ ଭୋଜନଲୀଳା ଜୟ ଶ୍ରୀ ସଂକେତ ।
ନିଭୃତ ନିକୁଞ୍ଜ ରାଧା କୃଷ୍ଣର ଏକାନ୍ତ ॥
ଜୟ ଦୋଳାଲୀଳା ପଶାଖେଳା ବଂଶୀହରା ।
ଜୟ ଜୟ କେଳି ନୀପପାଦପ ଚଉରା ॥
ଜୟ ଜୟ ଜୟ ଭଦ୍ର ଶ୍ରୀ ଲୌହଭାଣ୍ଡିର ।
ଖଦିର ବହୁଳା ଯେ କୁମୁଦା ମନୋହର ॥
ମହା, ତାଳ, କାମ୍ୟ, ମଧୁ, ବୃନ୍ଦାବନ ଆଦି ।
ଜୟ ଜୟ ଦ୍ୱାଦଶ ବନ ଏ ପରସିଦ୍ଧି ॥
ଚଉବିଂଶ ଉପବନ ଛତିଶ ଏ ମିଶି ।
ଜୟ ଜୟ ବ୍ରଜଭୂମି କେଶ ଚଉରାଶି ॥
ପଦ୍ମାକାର ମଣ୍ଡଳ ବ୍ରହ୍ମାଣ୍ଡେ ଶୋଭାପାଏ ।
ଧରଣୀ ତରୁଣୀ ମୁଖକମଳ ପରାଏ ॥
ରାଧାକୁଣ୍ଡ ଶ୍ୟାମକୁଣ୍ଡ, ନୟନଯୁଗଳ ।
ଗୋବର୍ଦ୍ଧନ ଗିରି ଭାଳ ନାସାଗଣ୍ଡସ୍ଥଳ ॥
କାଳିନ୍ଦୀ ଅଳକା ବେଣୀ ତଟ ବେଣୀ ଦଣ୍ଡ ।
ଶ୍ରବଣଯୁଗଳ ଭଦ୍ରକୁଣ୍ଡ ଶିବକୁଣ୍ଡ ॥
ତୁଣ୍ଡ ସେ ମାନସଗଙ୍ଗା ଓଷ୍ଠ କୋକନଦ ।
କଞ୍ଜଦଳ କେଶର ରସନାଧର ରଦ ॥
କୋକିଳ ବଚନ ଶ୍ୱାସ ମଳୟ ପବନେ ।
କୃଷ୍ଣମଧୁକର ମଧୁରସ ଆସ୍ୱାଦନେ ॥
ସର୍ବଦା ନିବାସ କୃଷ୍ଣ ମୁଖ୍ୟବାସ ବଟ ।
ଧରଣୀ ସୁରଭି ସ୍ଥାନ କ୍ଷୀର ଯେ ସ୍ରବତ ॥

ଏମନ୍ତ ଯେ ବ୍ରଜଭୂମି ସଦା ଯେ ଆଶ୍ରୟ ।
ଯମଦଣ୍ଡ ନ ଲାଗଇ ସର୍ବଜନାଶ୍ରୟ ॥
ଜୟ ଜୟ ଧରଣୀ ଏ ପରମଶୋଭିତ ।
ଯମୁନା ସାଗର ମାଳ କଣ୍ଠରେ ଶୋଭିତ ॥
ପେଖ ଏ ବ୍ରଜଭୂମି ହାର ବୃନ୍ଦାବନ ।
ରାଧାକାନ୍ତି କନକରେ ଅତି ଶୋଭାବନ ॥
ମଣିସଖୀ ନାନା ରତ୍ନ ବେଷ୍ଟିଣ ବିରାଜେ ।
କୃଷ୍ଣଚନ୍ଦ୍ର ମର୍କତନାୟକ ତଥି ମଧ୍ୟେ ॥
ଏହି ଆଭରଣେ ମହୀ ଯେ ଯାର ମୋହଇ ।
ମହା ଆନନ୍ଦରେ ଭରି କମ୍ପିତ ବହଇ ॥
ଏମନ୍ତ ଯେ ବୃନ୍ଦାବନ ମୂର୍ତ୍ତିମନ୍ତ ହୋଇ ।
ବୃନ୍ଦା ନାମ ଧରି ରାଧାକୁଣ୍ଡ ସେବା ପାଇଁ ॥
ନିଜଗଣ ଧରି ବୃନ୍ଦାବନରେ ନିବାସ ।
ପୌର୍ଣ୍ଣମାସୀ ଭଗବତୀ ଚରଣେ ବିଶ୍ୱାସ ॥
ସେହି ଦେବୀ ମହିମା ଯେ ନ ଜାଣଇ ଶ୍ରୁତି ।
ଜୟ ଜୟ ପୌର୍ଣ୍ଣମାସୀ ଯୋଗମାୟା ମୂର୍ତ୍ତି ॥
କାମ ଯେ ଗାୟତ୍ରୀ କାମବୀଜେ ଉପାସନା ।
ରାଧା-ମାଧବର ଲୀଳା କରେ ଉଦ୍ଦୀପନା ॥
ମନ୍ତ୍ରମୟୀ ମନ୍ତ୍ରଦାୟୀ କୁଶଳ କୁଶଳା କାମଦା ।
ବ୍ରଜପୂଜା ଶିରୋଧାର୍ଯ୍ୟା ସୁଶୀଳା ବରଦା ॥
ତପସ୍ୱିନୀବ୍ରତଗୁପ୍ତ ଧର୍ମ ପ୍ରବର୍ତ୍ତାଇ ।
ଅବଲୋକନରେ ଦୁଃଖ ଖଣ୍ଡି ସୁଖ ପାଇ ॥
ଜଗତ-ତାରିଣୀ ଜନ-ଧାରିଣୀ କାରିଣୀ ।
ବ୍ରହ୍ମା-ବିଷ୍ଣୁ-ଶିବ ଯାର ଗୋଚର ନ ଜାଣି ॥
ରାଧାକୃଷ୍ଣ ଚରିତରେ ସଦା ବିନୋଦିନୀ ।
ଗୁଣାଶ୍ରୟୀ ଗୁଣମୟୀ ଗୋକୁଳପାଳିନୀ ।
ନମାମି ପରମେଶ୍ୱରୀ ଜଗତର ମାତା ।
ସଂସାରଆଦି ପ୍ରକୃତି ଚଉବର୍ଗ ଦାତା ॥

ଅପାର ମହିମା କିପ କହିବ ତାହାର ।
ରାଧାକୃଷ୍ଣ ବାଞ୍ଛା ସିଦ୍ଧି ବିଧାନ ଯାହାର ।।
ସେ ଦେବୀ ଚରଣେ ମୋର ସର୍ବଦା ମାନସ ।
ରାଧାକୃଷ୍ଣ-ଚରିତ ଚତୁର୍ଥ ବୋଲି ରସ ।।
ନବଅନୁରାଗ ବେନି ଉତ୍ପାଦ ମାନସ ।
ଚିତ୍ରପଟ ଦରଶନ ବୃନ୍ଦା ଉପଦେଶ ।
ସ୍ୱପନରେ ସମାଗମ କୃଷ୍ଣବିରହିଣୀ ।
ସହଚରୀ ସୁବଚନ ଭଗବତୀ ବାଣୀ ।।
ପ୍ରୀତି ମଣି ରୂପ ଶୁଣି ଗୋବିନ୍ଦ ଆତୁର ।
ଭ୍ରୂଭଙ୍ଗୀମଲ୍ଲିକା ଦେଖି ମଦନେ କାତର ।।
ଗୋବର୍ଦ୍ଧନ ଆରୋହଣ କୁଞ୍ଜବନ ରହିଁ ।
ପ୍ରଥମରେ ବୃନ୍ଦାଦେବୀ ଭେଟି ସୁଖ ପାଇ ।।
ରାଧା ମୁଖ ଦରଶନେ ମହାଭାବ ଜାତ ।
ସେହି ମୁହିଁ, ମୁହିଁ ସେହି ଜାଣିଲ ଜଳବତ ।।
ବୃନ୍ଦାବନଲୀଳା ଏହା ସୁମଧୁର ରସ ।
ଅତ୍ୟନ୍ତ ଏ ଗୂଢ଼ତର ନୁହଇ ପ୍ରକାଶ ।।
ବଚ୍ଛାବାଲ ଲବ୍ଧବଧି ଅପ୍ରାଧ ମୋଚନ ।
ସଂକ୍ଷେପ ଚତୁର୍ଥ ବୋଲି ସୂଚି ଏ ରଚନ ।
ବିସ୍ତାର କହିବ କେତେ କେତେ ମୋର ବୁଦ୍ଧି ।
ଏ ବ୍ରଜବିହାର ଅକଳିତ ବାରାନିଧି ।।
ଶ୍ରୀଗୁରୁ କୃପାରୁ କିଛି କରଇ ଲେଖନ ।
ଏକମନ ହୋଇଣ ଶୁଣିବା ସାଧୁଜନ ।।
ନମେ ନଳକୁବେର ନାରଦ ଚରଣରେ ।
କହ କହ ହେ ମୁନି ଚରିତ ଏ ଉତ୍ତରେ ।।
କହନ୍ତି ନାରଦ ଶୁଣ କୁବେର ନନ୍ଦନ ।
ତୋର ଭାବେ ହେଲ ମୋର ହୃଦୟେ ପ୍ରସନ୍ନ ।।
ପରମଗୁପତ କଥା ଶୁଣ ସ୍ଥିରମନେ ।
ରାଧା ଉତ୍କଣ୍ଠା ପାଦପଦ୍ମ ଦରଶନେ ।।
ଦେଖିବ କିରୂପେ ରୂପ ମନେ ବିଚାରଇ ।
ଗୁଣକର୍ମ ଶୁଣିବାକୁ ଶରଧା ବଳଇ ।।
କୁଳବତୀ ମହାସତୀ ବେଭାରେଣ ଭରି ।
କି ପୁଣି ବୋଲନ୍ତି ସଖୀ ବୋଲି ଲାଜ କରି ।।
ସଖୀଙ୍କ ସଙ୍ଗରେ ନାନାପ୍ରସଙ୍ଗ ବାରତା ।
ହୃଦ ମଧ୍ୟେ ଥାଇ ଏକା ପାଦପଦ୍ମ ଚିନ୍ତା ।।

ଏମନ୍ତେଣ ଚିତ୍ରା ଚିତ୍ରପଟ ଘେନି ଆସେ ।
ସମ୍ମୁଖରେ ପ୍ରକାଶ କରି ଦେଖାଇ ବିଶ୍ୱାସେ ।।
ରାମକୃଷ୍ଣ ସଖା ସଙ୍ଗେ ବଚ୍ଛା ରଖି ରଙ୍ଗେ ।
ବୃନ୍ଦାବନେ ପୁଲିନ ଯମୁନା ନିକଟ ଲଗେ ।।
ଯାର ବଳ ଲକ୍ଷଣ ସ୍ୱଭାବ ଶୋଭା ବେଶ ।
ଛଇଳ ଚାତୁରୀ ଛବି ରହିଁ ମନ୍ଦହାସ ।।
ସ୍ୱରୂପ ସ୍ୱଭାବ ଲେଖିଅଛି ସେ ତରୁଣୀ ।
ନ ଛାଡ଼ିଲେ ପଲକ ରହିଲେ ନୃପତି ଦୁଲ୍ଲଣୀ ।।
ବୃନ୍ଦା ଜାଣି ଜଣାଇ ଚିହ୍ନାଇ ସ୍ଥାନେ ସ୍ଥାନେ ।
ଅନୁରାଗେ ନୟନରେ ନ ଦେଖଇ ଆନେ ।।
ଦେଖ ସଖୀ ଯମୁନା ଏ ପରିମଳ କୂଳ ।
ଦେଖ ଦେଖ ଗୋବଚ୍ଛା ଚରାନ୍ତି ଗୋପବାଳ ।।
ଧବଳମୂରତି ଏ ସୁନ୍ଦର କଳେବର ।
ଭ୍ରମିତଲୋଚନ ଏହୁ ରୋହିଣୀକୁମର ।।
ଶ୍ରୀଦାମ କନ୍ଧରେ ବାହୁଭର ଦେଇ ଉଭା ।
ନୀଳବାସ ପରିଧାନ ସିଂହା ବାମେ ଶୋଭା ।।
ଦେଖିଣ ରାଧିକା ଅଙ୍ଗେ ବାସ ଘୋଡ଼ାଇଲେ ।
ସଙ୍କୁଚିତେ ରହିଣ ବଦନ ଆଡ଼େ କଲେ ।।
ତହିଁ ଅନ୍ତେ ଦେଖି ସୁବଳାଦି ସଖାଗଣ ।
ନଟବର ବେଶ ଛବି ଅତି ବିଚକ୍ଷଣ ।।
ବେଣୁ ବେତ ଲଉଡ଼ କେ ଅନ୍ନପୂଡ଼ା କରେ ।
ବଚ୍ଛାକୁ ଅଡ଼ାଇ କେହୁ ନାଚେ ଧୀରେ ଧୀରେ ।
ଦେଖ ସଖୀ କଦମ୍ବ ମୂଳରେ ନବଘନ ।
ନନ୍ଦରନନ୍ଦନ ରୂପ ନବୀନ ମଦନ ।।
ପୀତାମ୍ବର ବେଣୁ ବନମାଳା ଶିଖୀଚୂଳ ।
ତ୍ରିଭଙ୍ଗୀ ଭଙ୍ଗୀରେ ଉଭା ଶୋଭା ସର୍ବମୂଳ ।।
ସାତ୍ତ୍ୱିକ୍ୟ ବାଧାରେ ରାଧା ରହିଁଣ କାତର ।
ପାଷାଣ ତରଳେ ଯହିଁ ଯୁବତୀ ମାତର ।।
ପୁଷ୍ପବାଣ ମରମେ ବିନ୍ଧଇ ଘନ ଘନ ।
ସହିଣ ଲୋଡ଼ନ୍ତେ ମହା ଉଦ୍ଧତ ଯେ ମନ ।।
ନରୋପି ନିଶ୍ଚଳେ ସେହି ଭାବ ହୋଇ ରହି ।
ସ୍ୱେଦ ସ୍ରବନ୍ତେଣ ଦମ୍ଭେ ପବନ ଲୋଡ଼ଇ ।।
ପ୍ରଫୁଲ୍ଲିତ ରୋମାବଳୀ ନୀପ ପୁଷ୍ପପ୍ରାପ୍ୟ ।
ତୁଣ୍ଡ ଜାଡ଼ ଦେହ କମ୍ପେ ରମ୍ଭାତରୁ ପ୍ରାପ୍ୟ ।।

ଶୀତଳସମୀରେ ସଖୀ ଶୀତ କଲ ମତେ ।
ସମ୍ଭାଳନ୍ତେ ବିକାର ପ୍ରକାଶ ହୁଏ ଗାତ୍ରେ ॥
ସଜଳଲୋଚନ ନିଜ ଅଞ୍ଚଳେ ପୋଛଇ ।
ପରାଗ ପଡ଼ିଲା ବୋଲି ମିଛେହିଁ ବଞ୍ଚାଇ ॥
ଦମଦମ ଉର ଓଷ୍ଠ ସୁରଙ୍ଗ ତୁଟଇ ।
ପ୍ରଖର ନିଶ୍ୱାସ କେଶ ବସନ ଫିଟଇ ॥
ମନ ମତ୍ତ ନୟନ ଯେ ଏକଲୟେ ମିଶି ।
ଲଜ୍ଜାଭୟ ମଦନ ବିବେକ-ଜଳେ ଭାସି ॥
ଗୃହୁଁ ଗୃହୁଁ ଧଇର୍ଯ୍ୟକୁ ନ ପାରେ ସମ୍ଭାଳି ।
କୋଳ କରୁଁ ଲଳିତା ଉପରେ ମୋହ ଢଳି ॥
ଦେଖି ବେଗେ ଧରି ଅଙ୍ଗେ ଆଉଞ୍ଛି ବସାଇ ।
ସଖୀ-ଦୁଃଖେ ମତ୍ତ ଖେଦ ସମୁଦ୍ରେ ଭସାଇ ॥
କେହୁ ନାସେ ହସ୍ତ ଦେଇ ଶ୍ରବଣ ଫୁଙ୍କଇ
ପାଦପାଣି ମଞ୍ଚାଳ କେ ନାଟିକା ଦେଖଇ ॥
ଶୀତଳ ଜଳକୁ ସିଞ୍ଚି ଧୀରେ ଧୀରେ ବିଞ୍ଚି ।
ପଟ ମୁଦାଇଣି କଞ୍ଜଦଳ ଶଯ୍ୟା ରଞ୍ଚି ॥
ଏକ ଆରେ ଗତାଗତ ନନେ ଇଙ୍ଗିତେ ।
ଶବରେ ଏ ଅନୁରାଗ କି ହେବ ସାକ୍ଷାତେ ॥
ଲଳିତା ବୋଇଲେ ଯେହ୍ନୁ ଯାହା ସଙ୍ଗ ଯୋଗ ।
ଅନୁରାଗ ବଢ଼ନ୍ତେ ବେଗରେ ହୁଏ ବେଗ ॥
ଅନ୍ତଃପୁରେ ରଖି ଅତି ଯତ୍ନ କରିଥିଲେ ।
ମନ ନିଷ୍ଠ ବଳିଲେ କେ ରଖିପାରେ ଭଲେ ॥
କର୍ଣ୍ଣଯାନ କଟିଲା ସେ ନ ଜାଣି ଯେମନ୍ତ ।
ପଲଙ୍କେ ପହୁଡ଼ାଇ କରାଇ ସଚେତ ॥
ସେଥୁ ସେବା ଆବୋରଣ ସଖୀ ଚଉପାଶେ ।
ନୃପସୁତା ହୃଦୟରେ ମଦନ-ହୁତାଶ ॥
ତନୁତପତ କି ଅଙ୍ଗେ ଲେପି ତନୁଃସମ ।
ସଜଳକମଳ ଦଳ ଶଯ୍ୟା ଅନୁପମ ॥
ଜେମାଦେଙ୍କ ଯେତେଭୋଗ ସକଳତା ଲୋଡ଼ି ।
ଏକମାତ୍ର ଶବରୂପ ନେତ୍ରେ ଲାଗିଅଛି ॥
ହୃଦୟୁ ସରିଁ ପୁଡ଼ି ମରମେ ରହିଲା ।
ଆନ ପ୍ରସଙ୍ଗରେ ତାର ସରାଗ ନୋହିଲା ॥
ନୟନ ବୁଜିଲେ ରୂପ ହୃଦୟୁ ଦିଶଇ ।
ଶାସ୍ତ୍ରରୂପେ ନାନାରଙ୍ଗେ ମନେ ବିଳସଇ ॥

ଏମନ୍ତେ ନିଶି ଆସି ତିନିଭାଗ ଗଲା ।
ଛନଛନ ହୋଇ ନେତ୍ରେ ନିଦ୍ରା ନ ମାଡ଼ିଲା ॥
କେତେବେଳେ ନିଦ୍ରାଗତେ ଦେଖନ୍ତି ସ୍ୱପନ ।
ଅଭିନବ ଘନଶ୍ୟାମ ମଦନମୋହନ ॥
ଚରଣ ସୁରଙ୍ଗ ପଦ୍ମ କେଶର ଅଙ୍ଗୁଳି ।
ସରାଗେ ଭୂଷିତ ଅଗ୍ର ନଖଚନ୍ଦ୍ର ଝଳି ॥
ନୂପୁର ମର୍କତରେ ମଧୁକର ଧ୍ୱନି ।
ଶବ୍ଦରେ ଚଳ ଅବନୀ ସୁଗନ୍ଧକୁ ଘେନି ॥
ଓଲଟ କଦଳୀକାଣ୍ଡ ବଳନ ଧୂଜାନୁ ।
ବିପୁଳନିତମ୍ବଯୁଗ ନ ଯାଇ ନିଘୁନୁ ॥
ସିଂହକଟିତଟେ ପୀତପଟ୍ଟନ ଶୋଭିତ ।
କୁଞ୍ଚିତ ସୁରଙ୍ଗ ଧଡ଼ି ଆଗରେ ଲମ୍ବିତ ॥
ଝୁମ୍ପାଗ୍ରେଳ ମୋତିସାଜ ମେଖଳା ଜଡ଼ାଉ ।
ନାନା ରତ୍ନ ଖଞ୍ଜାଣିରେ ଦିଶେ ଦାଉଦାଉ ॥
ଶୁକଳସୁରଙ୍ଗପଟ୍ଟ ଦୋଡ଼ଡ଼ା ବେଢ଼ାଇ ।
ଦେଖି କୁଳବତୀ-ମତି କୁଳକୁ ଛଡ଼ାଇ ॥
ମଣିହାର ପଦକ ବିସ୍ତାର ହୃଦୟରେ ।
ସର୍ବାଙ୍ଗରେ ଚନ୍ଦନ ଲେପନ ଘନସାରେ ॥
ନବନୀରଦରେ ଚନ୍ଦ୍ର ଉଦେ ଶୋଭା ଦିଶେ ।
କମ୍ବୁକଣ୍ଠେ ବନମାଳା ଉଡୁଗଣ କି ସେ ॥
ଆଜାନୁଲମ୍ବିତ ବାହୁ ମରକତ ସ୍ତମ୍ଭ ।
ହେମରତ୍ନେ ବଳୟ ମୁଦ୍ରିକା ହରେ ଦମ୍ଭ ॥
ମଦନ-ମୁକୁର ମୁଖ-ଚିବୁକ ଚହଲ ।
ବିମ୍ବାଧରେ ମୃଦୁହାସ ଭୁବନମଣ୍ଡଳ ॥
ସୁଘ୍ରାଣନାମରେ ଗଜମୋତିବର ଶୋହେ ।
ତିଳପୁଷ୍ପେ ଅନଙ୍ଗ କି ଅମୃତ ବିନ୍ଦୁ ରହେ ॥
ନୀଳୋତ୍ପଳ ଲୋଚନ ଯୁଗଳ କାମବାଣ ।
ଆକର୍ଣ୍ଣ ଅପାଙ୍ଗ ଭୁରୁ ଭ୍ରୁଲତା କମାଣ ॥
କାମିନୀ ହୃଦୟ ଭେଦି କରେ ଖଣ୍ଡ ଖଣ୍ଡ ।
ନାଚେ ବେନି ମକରକୁଣ୍ଡଳ ଗୁରୁଗଣ୍ଡ ॥
ଘେନ କପୋଳେ ଅଛି ଚନ୍ଦନର ଫାଟି ।
ପତିବ୍ରତା ଦେଖିଲେ ଧଇର୍ଯ୍ୟ ଯାଏ ଫାଟି ॥
ଅକଳଙ୍କ ଖଣ୍ଡ-ସୁଧାକର ଉଦେ କି ସେ ।
ମିଶି ସମାଦରେ ଚିତ୍ତଫାଟ ହୋଇ ହାସେ ॥

ମଦନ ଅମୋଘପାଶ କଣଳପ୍ର କର୍ଣ୍ଣି ।
ଅଳକାସୁକଳ ବେଢ଼ି ମୋହେ ତ୍ରିଭୁବନ ॥
ସମ୍ପଦ ରକ୍ଷଣେ ନାଲ ପାଚେଶ ବେଢ଼ାଇ ।
ବଦନ ଲାବଣ୍ୟ ଯେଡ଼େ ମଦନ ବଢ଼ାଇ ॥
କସ୍ତୁରୀ ମୁକୁଟେ ସ୍ମରନାୟକ ବିରାଜେ ।
ଯୁବତୀଙ୍କ କୁଳଲଜ୍ଜା ଅନ୍ଧକାର ଗଞ୍ଜେ ॥
କୁଞ୍ଚିତଚିକୁର ସ୍ନିଗ୍ଧ ଚୂଡ଼ା ପୁଷ୍ପଗଭ ।
କେତକୀପାଖୁଡ଼ା ବେଢ଼ା କେକୀପୁଚ୍ଛ ଶୋଭ ॥
ଶରଣ ପଶିଣ କାମ-ଶରଧିକୁଳ ଜିଣି ।
ତରାସ ଟେକାଇ କି ଦେଖାଇ ବଢ଼ିଯାଣି ॥
ଏମନ୍ତ ସ୍ୱରୂପେ କୃଷ୍ଣ ପଲଙ୍କେ ବସିଲେ ।
ପ୍ରାଣପ୍ରିୟେ ପ୍ରୀତିବଶେ ବଚନ ଭାଷିଲେ ॥
କରପଦ ଶ୍ରୀଅଙ୍ଗରେ ଦେଇଣ ଆଶ୍ୱାସି ।
ଚନ୍ଦନ ଶୀତଳ ତନୁ ତପତିକ ନାଶି ॥
ଅଗ୍ରସର ବିମ୍ବାଧର ଚୁମ୍ବନଲାଳସେ ।
ସଲଜ୍ଜେ ବଦନ ଆଡ଼େ ଉଦାଡ଼ଣ ବାସେ ॥
ଏମନ୍ତ ସମୟେ ନିଦ୍ରା ଚେଳ ଜେମାଦେଇ ।
ନ ଦେଖିଣ ଆହା ନାଥ ବୋଲି ବିଳପଇ ॥
ଶୁଣି ଆଳୀ ପାଶେ ମିଳି ପୁଚ୍ଛନ୍ତି ବିଶ୍ୱାସେ ।
ଅକାରଣେ କାରୁଣ୍ୟ ଯେ କରୁ ନିଶିଶେଷେ ॥
ଶାଶୁ ଯେ ନଣନ୍ଦ ଶୁଣି କି ବୋଲି ବୋଲିବେ ।
ଚନ୍ଦ୍ରାବଳୀ ସଖୀଗଣ ଶୁଣି ଯେ କଳିବେ ॥
ଶୁଣି ବାମା ସଙ୍କୋଚରେ ମଉନ ହୋଇଲେ ।
ବିଶାଖା ବଦନ ଚୁମ୍ବି ଲଳିତା ବୋଇଲେ ॥
ସ୍ୱପନ ବିକାରଭାବେ କରେ ଏ ବେଦନ ।
ସର୍ବଦା ତ ବାଧା ହୋଇ ଲାଗିଛୁ ମଦନ ॥
ସୁଚକ୍ଷା ଚମ୍ପକଲତା ହୋଇ କୁହାକୁହି ।
ନନ୍ଦପୁତ୍ରମାର ରୂପ ହୃଦୟ ଚରଇ ॥
ନିଦ୍ରାଗତେ ସ୍ୱପନରେ ଦେଖିଲା ସ୍ୱରୂପେ ।
ବିଚ୍ଛେଦେ ବେଦଇ ଅତି ବିରହ ସନ୍ତାପେ ॥
ରଙ୍ଗଦେବୀ ସୁଦେବୀ ଏ ବେନି ଜନ କଥା ।
ଜେମାଦେଇ ମରମରେ ଫୁଲଶର ବ୍ୟଥା ॥
ନନ୍ଦପୁତ୍ର କୁମରରେ ଅନୁରାଗ ବଢ଼େ ।
ସେହିରୂପ ଭାବେ ବାଳୀ ପଲଙ୍କେ ପଡ଼ୁଛି ॥

ତୁଙ୍ଗବିଦ୍ୟା ଶଶିରେଖା କରନ୍ତି କୁହାକୁହି ।
ନ ଦେଖି ନ ଶୁଣି ଜେମା ଏଡ଼େ ତ ବିରହୀ ॥
ସାକ୍ଷାତେ ଦେଖିଲେ ଅନଙ୍ଗ ଅଙ୍ଗ ମିବ ମିଶି ।
ଧଇର୍ଯ୍ୟକୁ ଧରି ନ ପାରିବ ଏ ମୃଗକେଶୀ ॥
ପ୍ରକାଶ ନ କର ଯେଝାମତେ ଅନୁସର ।
ପ୍ରାତଃକାଳେ ଯେଝାମତେ ନିତ୍ୟକର୍ମ ସାର ॥
ବୃନ୍ଦା ଦରଶନେ କଲେ ଫଳପୁଷ୍ପ ଘେନ ।
ଦେଖିଣ ସମ୍ଭ୍ରାନ୍ତଚିତ୍ତ ନୃପତିନନ୍ଦନୀ ॥
ଏକାନ୍ତେ ପୁଚ୍ଛଇ ଜେମା ଶୁଣ ବନେଶ୍ୱରୀ ।
କହ ମୋତେ ନନ୍ଦସୁତ ଚରିତ ବିସ୍ତାରି ॥
କିସ କିସ ମହିମା କେବଣ ଗୁଣ କର୍ମ ।
ଚିତ୍ରପଟେ ଦେଖି ସଖୀ ମନ ହେଲା ଭ୍ରମ ॥
ଆଜ ରଜନୀରେ ତାଙ୍କୁ ଦେଖିଲି ସ୍ୱପନେ ।
କୋଟିଗୁଣେ ଶୋଭ କିସ କହିବି ବଚନେ ॥
ମନ୍ଦହାସେ ମନକୁ ରଖିଲେ କରି ବନ୍ଧ ।
ନୟନକଟାକ୍ଷ-ଶରେ ମରମକୁ ଭେଦ ॥
ଶରଦପୂର୍ଣ୍ଣଚନ୍ଦ୍ରମା ମୁଖ ଆହ୍ଲାଦେ ।
ଲୋଚନ ଚକୋରହୃଦ କୁମୁଦ ପ୍ରମୋଦେ ॥
ବଚନ ଅମୃତେ ଅନ୍ତଃ ପ୍ରେମଲତା ବଢ଼ି ।
ଶ୍ୟାମଳ ତମାଳତରୁ ଅବଲମ୍ବ ଲୋଡ଼ି ॥
ଯେହିରୂପ ଦେଖିବି ଶୁଣିବି ସେହି କଥା ।
ଏହା ବିନା ଯେତେ ମୋତେ ଲାଗେ ଗରୁବ୍ୟଥା ॥
ହରଷେ ବୋଲନ୍ତି ବୃନ୍ଦା ଶୁଣିବା ଗୋ ସଖି ।
ନନ୍ଦସୁତ ମହିମା ଯା ଶୁଣିଅଛୁ ଦେଖି ॥
ଶିଶୁବେନ ହୋଇଣ ପୂତନା ହତ କଲା ।
ଉଠିଆରି ବନ ପାଦେ ଶକଟ ଭାଙ୍ଗିଲା ॥
ତୃଣାବର୍ତ୍ତ ଉଡ଼ାଇଣ ଗଗନେ ନାଶିଲା ।
ଅମରକାମିନୀ ନେତ୍ରକମଳ ତୋଷିଲା ॥
ବନ୍ଧନରେ ଯାମଳା ଅର୍ଜୁନ ମୋକ୍ଷ କଲେ ।
ବଚ୍ଛା ରଖି ବନେ ବଚ୍ଛାସୁରକୁ ମାଇଲେ ॥
ଭ୍ରୂଭଙ୍ଗି ମଳୀକା ମାତା କୋଳନେଇ ବକେ ।
କୋଳେକୋଳ ଡାକିଲେ କୁମାରେ ଏକେ ଏକେ ॥
ନନ୍ଦର କନ୍ଦରେ ଥାଇ ଶୁଣିଲେ ମୋହିନୀ ।
ବାହାର ହୋଇଲେ ଧରୁ ଅଞ୍ଜଳୀଏ ଘେନି ॥

ଘୁଲନ୍ତେ ଚରଣତଳ ଅବନୀ ବିରାଜେ ।
ମହାମରକତ ହେମ ଗୋପପୁର ମାଝେ ॥
ଦେଖିଣ ଶବରୀ ବେଗେ ପାଞ୍ଚିଲାକ ମାଗି ।
ଧାନ ଘେନ ହାଏ କୋଳ କରି ପୂରିଇଣ ॥
ଗୃହ ବରଷୀର ଯେ ଖଜୁରି ଜାମ୍ବୁକୋଳି ।
ଯେତେ ଦେଲେ ନ ପୂରଇ କୃଷ୍ଣର ଆଞ୍ଜୋଳ ॥
ଯେତେ ନେଇଥିଲା ସେ ସକଳ ଆଣି ଦେଲା ।
ତଥାପି ଦେଖିଲେ ବାଳ କର ନ ପୂରିଲା ॥
ଝୋକାଇ ସେ ଶୂନ୍ୟ ଦେଖି ବିଷାଦ ଶବରୀ ।
ସୁବର୍ଣ୍ଣପୂରିତ ହେଲା ଗୃହାଙ୍ଗଣ ହରି ॥
ସେହିଦିନୁ ଦାରିଦ୍ର୍ୟ ହୋଇଲା ତାର ନାଶ ।
ଅତି ବିଚକ୍ଷଣ ସେହୁ ନନ୍ଦରାଜାଶିଷ୍ୟ ॥
ଆଶ୍ରିତ ଶ୍ରୀନେତ୍ର କୋଣେ ହୋଇଅଛୁ ବନ୍ଦୀ ।
ଗୋପବଧୂ-ହୃଦପଦ୍ମ ସଦ୍ମ ହୃତେ ଛନ୍ଦ ॥
ବିକାମର ଶରି ବନେ ବନେ ବିହରିଲେ ।
ଗୋବର୍ଦ୍ଧନ ତଳେ ଅର୍ଦ୍ଧାସୁର ସଂହାରିଲେ ॥
ଗୋକୁଳ ରଖିଣ ମହୀଭର ଉଶ୍ୱାସିଲେ ।
ସ୍ନେହେ ବନଜୀବମାନେ ସଙ୍ଗେ ବିଶ୍ୱାସିଲେ ॥
ଯାହାର ଚନ୍ଦ୍ରାବଳୀ ଶିରକାର ପୂଜାରମ୍ଭ ।
ସ୍ତୁବିତ କାଳିନ୍ଦୀ କୂଳ ଲଙ୍ଘି ପାଦ ଲଭେ ॥
ରୂପଗୁଣ ଲକ୍ଷଣ କି କହିବି ତାହାର ।
କୋଟି କାମ ସମ ନୁହନ୍ତି ପାଦକୁ ଯାହାର ॥
ଅଷ୍ଟାଦଶ ଚିହ୍ନାଙ୍କିତ ମରଙ୍ଗ ନୂପୁର ।
ଗୋପୀ କୁଚକୁଙ୍କୁମରେ ଦିଶଇ ନାଗର ॥
ମୃଗମଦ ପତ୍ରାବଳୀ ଲାଗିଛି ସୁହାଗ ।
ରଙ୍ଗଅରବିନ୍ଦ ମକରନ୍ଦ ଗନ୍ଧ ଭୃଙ୍ଗ ॥
ରୁଣୁଝୁଣୁ ନୂପୁର ସ୍ୱରରେ କୋଳାହଳ ।
କଳହଂସ ଗମନରେ ଲାବଣ୍ୟ ଶଇଳ ॥
ନଖପନ୍ତି ଜାତି ପୁଷ୍ପମାଳ ବିକାଶଇ ।
କୁଚ ପୂର୍ଣ୍ଣକଳସେ ମଙ୍ଗଳ ପ୍ରକାଶଇ ॥
ଅନଙ୍ଗ ଅନଳ ତାପ କରଇ ଶୀତଳ ।
ତେଣୁ ଗୋପରମଣୀ ତା ଇଚ୍ଛନ୍ତି କୁଶଳ ॥
ଡମ୍ବରୁ କଟିରେ ପୀତପଟ ପହରଣ ।
ଘଣ୍ଟିସାର ରସନା କିଙ୍କିଣୀ କ୍ୱଣକ୍ୱଣ ॥

ଶପ୍ତ କିଶି ଡିଣ୍ଡିମ କି ବଜାଇ ମଦନ ।
ରତି କେଳି କଳାରେ କରଇ ପ୍ରମୋଦନ ॥
କୁଳବତୀକୁଳ କରେ କୁଳଟା ଦୂଷଣ ।
ସତୀବ୍ରତ ବିଚଳିତ ବଜାଇ ଘୋଷଣ ॥
ଶ୍ରୀହରି ଚନ୍ଦନେ ସୁବଳିତ କଳେବର ।
ବେଣୁ କରେ କଙ୍କଣ ଭୁବନ ମନୋହର ॥
କମ୍ବୁକଣ୍ଠେ ବେଢ଼ିଣ ମୁକୁତାବଳୀ ମୋହେ ।
ମନ୍ଦହାସେ ଚନ୍ଦ୍ରମା ବଦନ ମନ ଶୋହେ ॥
ଶତପତ୍ର ନେତ୍ର ଅନ୍ତେ ମଦନବର୍ଦ୍ଧନ ।
କାମିନୀହୃଦୟ-ଦ୍ରୁମ-ଧୈର୍ଯ୍ୟ ଛେଦନ ॥
ନାନେ ଗଜମୋତି କର୍ଣ୍ଣେ ମକରକୁଣ୍ଡଳ ।
ଗ୍ରହଗଣ ଉଦୟେ କି ଚନ୍ଦ୍ରମାମଣ୍ଡଳ ॥
କସ୍ତୁରୀ ତିଳକ ଯେ ଘଟନ ଭାଳପଟ ।
ବେଢ଼ିଣ ଅଳକାବଳୀ କିରୀଟ ମୁକୁଟ ॥
ଗୁଚ୍ଚର ଶିକୁରଚୂଡ଼ା ସେବତୀର ଗଭା ।
ଶିରେ ଶ୍ରୀଖଣ୍ଡ ଶଙ୍ଖ କୋଦଣ୍ଡର ପ୍ରଭା ॥
କିଶୋର ବୟସ ଶ୍ୟାମ ଛଇଳ ଛଟକେ ।
ଦେଖିଲେ ନ ପଡ଼େ ଆଖି ପଲକ ଅଟକେ ॥
ଅନେକ ଜନ୍ମରେ ତପ କରିଥିବ ଯେହୁ ।
ବହୁ ପୁଣ୍ୟେ ରମଣୀ ହୋଇବ ତାର ସେହୁ ॥
ଏବେ ଦେଶ ଆନେ ପୁଣ ନୁହନ୍ତି ପ୍ରାପତ ।
ଶୁଣି ରାଧାର ଶରଧା ବଳିଲା ଅତ୍ୟନ୍ତ ॥
ସେହୁ କୁମରକୁ ସଖି ଭେଟାଇବୁ ମୋତେ ।
ହସ୍ତ ଧରି ବିନୟରେ କହୁଅଛୁ ତୋତେ ॥
ଦେଖିବି ବନରେ ଗୋଚାରଣ ଲୀଳାରଙ୍ଗେ ।
ମନୋରଥ ପୂର୍ଣ୍ଣ କର ତୁମ୍ଭ ଉଦଯୋଗେ ॥
ବୃନ୍ଦାଦେବୀ ବୋଲେ ଶୁଣ ନଳିନନୟନା ।
ନାନ୍ଦୀମୁଖୀ ଚନ୍ଦ୍ରମଣି ସନ୍ଧିବିଧାୟିନୀ ॥
ତୁଳସୀଙ୍କୁ ଘେନି ଏ ମିଳନ କରାଇବେ ।
ମୋହର କଳରୁ ଜନ ଭୟରୁ ତରିବେ ॥
ସୂର୍ଯ୍ୟପୂଜା ଅଗମେ ହୋଇବ ଦରଶନ ।
କାନ୍ତ ମୁଖ ଅବଲୋକେ ବିପଦ ମୋଚନ ॥
ବୃନ୍ଦା ତହିଁ ପୁଣ କହି ଶୁଣ ନୃପସୁତା ।
ବିରହବିହ୍ୱଳ ବଢ଼େ ଉଧାହ ମମତା ॥

ଜେମାଦେଈ ବରଷ ଦେଖିଣ ସଖୀଗଣ ।
ବରଷରେ ବସିଣ କରନ୍ତି ବିଚାରଣ ॥
ଦିନୁ ଦିନୁ କ୍ଷୀଣ ଯେ ହୋଇଲା ପ୍ରାଣସଖୀ ।
ଏହାର ଅବସ୍ଥା ଆମ୍ଭେ ନ ପାରୁ ଦେଖି ॥
ତେଜିଲା ବିବିଧ ଭୋଗ ଭୋଜନ ସୁବେଶ ।
ପଦ୍ମନେତ୍ର ବିମ୍ବାଧରେ ନାହିଁ ନିଦ୍ରା ହାସ ॥
କୋକିଳ ବଚନ ଶୁଣି ଚମକି ପଡ଼ଇ ।
ହଂସତୂଳି ପଲ୍ୟଙ୍କ ତ୍ୟଜି ଅବନୀ ଗଡ଼ଇ ॥
ଚନ୍ଦ୍ରକୁ ତପନ ମଣି ପଶଇ ସଦନ ।
ଦର୍ପଣେ ନ ଚାହେଁ ଏବେ ଆପଣା ବଦନ ॥
ଧୈର୍ଯ୍ୟବନ୍ତୀ ଅତି ମତି ଧୃତି ଅସମ୍ଭାଳେ ।
କହୁଁ କହୁଁ ବଚନରେ ପ୍ରଳାପ ବୋଲେ ॥
ଅଙ୍ଗଭୋଗେ ଅନୁରାଗ ନ କରଇ ଭଲେ ।
ଅନୁକ୍ଷଣେ ଲୋତକ ଯେ ପୂରୁଥାଇ ଡୋଳେ ॥
ପଚାରିଲେ ନ କହଇ କହିଲେ ନ ଆସେ ।
ଦୁଃଖେ ରହେ ଚକୋର ସେ ଯେସନ ଉଁଆସେ ॥
ଲଳିତା ବୋଇଲେ ଅନ୍ତେ ଚିନ୍ତା ତାର ରହି ।
ଧୈର୍ଯ୍ୟବନ୍ତୀ ଯେଣୁ ତେଣୁ ଫେଡ଼ିଣ ନ କହି ॥
ପୌର୍ଣ୍ଣମାସୀ ଭଗବତୀ ବନେ ଯା କହିଲେ ।
ନିଜ କାନ୍ତ ପାଦ ପଦ୍ମ ଆରାଧି ବୋଇଲେ ॥
ସେହିଦିନୁ ସଖୀ ଅନ୍ତେ ଚିନ୍ତା ଯେ ଶିହିଲା ।
ଆମ୍ଭମାନଙ୍କର ମନେ ସଂଶୟ ହୋଇଲା ॥
ସେହି ରୂପ ଚିତ୍ତପଟେ ଚାହିଁଣ ବିରହ ।
ମହାସତୀ ପତିବ୍ରତା ହୋଇଲା ସନ୍ଦେହ ॥
ପୌର୍ଣ୍ଣମାସୀ ବଚନ ନୁହଇ କେଭେ ମିଛ ।
ଯାହା କହିଲେ ସେ କଥା ଅଟଇ ପ୍ରତ୍ୟକ୍ଷ ॥
ତୁମ୍ଭମାନଙ୍କ ମନକୁ କେମନ୍ତେ ଆସଇ ।
ଶୁଣି ତା ବିଶାଖା ସଖୀ ବଚନ ଭାଷଇ ॥
ପୌର୍ଣ୍ଣମାସୀ ଭଗବତୀ ବଚନ ଯେ ସତ୍ୟ ।
ପୂର୍ବେ ଯାହା ଶୁଣିଅଛୁ ବଚନ ସିଦ୍ଧାନ୍ତ ॥
କାର୍ତ୍ତିକ ମାସରେ ଏହି ଗୋପେଶ୍ଵର ସ୍ଥାନେ ।
ପୁରାଣ କହନ୍ତି ତହିଁ ମିଳି ମୁନିମାନେ ॥
ରାଈ ଦାମୋଦର ବ୍ରତ ପୂଜାଫଳ ଯେତେ ।
କହନ୍ତି ବାହୁତ ସେ ଅନେକ ବିଧିମତେ ॥

ରାଧା ଅଭିମନ୍ୟୁ ବୋଲି କାହିଁ ତ ନ ଶୁଣି ।
ରାଧାକୃଷ୍ଣ ରାଧାକୃଷ୍ଣ ଜଗତେ ବଖାଣି ॥
କେବଣ ଶାପରେ ପତି ପାଇଲା ମୃଗାକ୍ଷୀ ।
ଭୋଗ ନୁହେ ମଧୁ ଯେହ୍ନେ ସଞ୍ଚେ ମଧୁମାଛି ॥
ମୁଖରେ ଅନଳ ଦେଇ ଆନେ କରେ ଭୋଗ ।
ନ ଧରେ ଉଚ୍ଛିଷ୍ଟ ଦୋଷ ଦେବତାଙ୍କୁ ଯୋଗ ॥
ସେହିମତି ଅଭିମନ୍ୟୁ ହୋଇଛି ଜଗିଆ ।
ନିଶ୍ଚେ ଭୋଗ କରିବ ଗୋ ସେ ନବରଙ୍ଗିଆ ॥
ବୋଲଇ ବିଶାଖା ସଖୀ ଶୁଣ ଏକଚିତ୍ତେ ।
ଅବିବାହି କାଳରେ ଚରିତ ଯେତେ ଯେତେ ॥
ଜେମାଦେଈ ରୂପ ଗୁଣ ଶୋଭା ଶୁଣି କର୍ଣ୍ଣେ ।
ହୋଇଲେ ଅନେକ ବର ନୃପତିନନ୍ଦନେ ॥
ମହା ମହା ରାଜାମାନେ ରଣେ ଅପରାଜିତା ।
ବରଣ ନ କଲେ ଦେଖି କାହାକୁହିଁ ପିତା ॥
ରୂପଗୁଣେ ସୁନ୍ଦର ଯେ କନ୍ଦର୍ପ ସଦୃଶ ।
ରୋଷଭରେ ବାହୁଡ଼ି ନ ଯାନ୍ତି ନିଜ ଦେଶ ॥
ଅନେକ ଯେ ଦିନ ରହି ହୋଇ ଏକମନ ।
ଗୋପେଶ୍ଵରଦେବଙ୍କୁ ସେ କଲେ ଦରଶନ ॥
ସତ୍ୟ ଉଚ୍ଚାରିଲେ ତହିଁ ନରେଶକୁମରେ ।
ନୃପତି ଦୁହିତା ଏଥି ପ୍ରାପତ କାହାରେ ॥
ବିଶ୍ଵନାଥ ଦେବଙ୍କୁ ଯେ କରାଇ ପ୍ରସନ୍ନ ।
ପ୍ରମାଣ ଜାଣିଲେ କେହି ନୋହିବା ବିମନ ॥
ବରଜାତି ହୋଇ ତାକୁ ବିଭା ଯେ କରାଇ ।
ନିଜ ରାଜ୍ୟରେ ଛାଡ଼ିବା ଛଳକୁ ଧରାଇ ॥
ଉଚ୍ଚାରି ଏମନ୍ତ ସତ୍ୟ ସକଳ ଯେ ବୀରେ ।
ନାନା ପୁଷ୍ପ ଚଢ଼ାଇଲେ ଗୋପେଶ୍ଵର ଶିରେ ॥
ଜାତି ଯୂଥି ସେବତୀ ମାଳତୀ ରଙ୍ଗବାଣ ।
କନିଅର ମଲ୍ଲି କୁନ୍ଦ କୁମୁଦ କଞ୍ଚନ ॥
ତରାଟ ତଗର କୁରୁଣ୍ଟକ ନାଗେଶ୍ଵର ।
ଚମ୍ପକ ବକୁଳ କୁଆଁଅନା ଇନ୍ଦୀବର ॥
ନିଆଳୀ ମାଳତୀ ଗଙ୍ଗଶିଉଳୀ କମଳ ।
ଗଇସ ଦୁଦୁରା କ ପାଟଳୀ ନୀଳୋତ୍ପଳ ॥
ପୁନ୍ନାଗ ରଙ୍ଗଣୀ କେହୁ ତୋଷେ ଚଢାଇଣ ।
ଏକେକ ଏକେକ ଫୁଲ ଦେଲେ ମନେ ମନାସିଣ ॥

ଯାହା ପୁଷ୍ପ ବୃଷଭ ଶିରେ ହେବ ଆସି ।
ତାହାର ରମଣୀ ଏ ହୋଇବ ନୃପଶିଷୀ ॥
ଏମନ୍ତ ଭାବରେ ନାନା କୁସୁମ ଚଢ଼ାଇ ।
ଗ୍ରୁମୁରେଷ ଉଭା ହୋଇ ମାନସ ବଢ଼ାଇ ॥
ଏମନ୍ତେ ସ ପୂଜାବିଧି ଉତ୍ସବ ସମ୍ଭାରେ ।
ରାଜାଗଣ ଚତୁରଙ୍ଗବଳ ଆରମ୍ଭରେ ॥
ଏକ ଲକ୍ଷ କରି ସର୍ବେ ନୟନ ନିବେଶି ।
ପୂଜା ଅନ୍ତେ ଶିରରୁ ରଜତଚନ୍ଦ୍ର ଖସି ॥
ବୃଷଭ ଶିରରେ ଜ୍ୟୋତିର୍ମୟ ବିକାଶଇ ।
ଆହ୍ଲାଦେ ସର୍ବଙ୍କର ନେତ୍ରଙ୍କୁ ନାଶଇ ॥
ବାହୁହୁନ୍ଧେ ଛନ୍ଦ ଶୀତେ ଦନ୍ତୁରି କମ୍ପଇ ।
ଗୋପେଶ୍ୱର ଗୋପେଶ୍ୱର ଭୟେ ନେକ ଜପଇ ॥
ମୃଗମଦେ ବିଚିତ୍ର ଚନ୍ଦ୍ରେ ବର୍ଣ୍ଣାବଳୀ ।
ପଢ଼ନ୍ତି ଉତ୍ତମଶ୍ଳୋକ ସର୍ବଜନ ମିଳି ॥

(ଶ୍ଳୋକ)

ଶ୍ରୀକୃଷ୍ଣୋ ମଧୁରୋ ମୂର୍ତ୍ତି
ଗୋକୁଳେ ନନ୍ଦନନ୍ଦନଃ ।
ପୀତାମ୍ବର ଷ୍ଟଭୁବଗଃ
ସ ରାଧା ପ୍ରାଣ-ବଲ୍ଲଭଃ ।

ଶ୍ରୀକୃଷ୍ଣ ମଧୁର ମୂର୍ତ୍ତି ଗୋକୁଳ ନଗରେ ।
ନବଘନ ମୋହନ ସୁନ୍ଦର ମୂର୍ତ୍ତିରେ ॥
ନନ୍ଦରନନ୍ଦନ ପୀତାମ୍ବର ବନମାଳ ।
ବେଣୁ ଶିଖି ପୁଚ୍ଛ ରାଧା-ବଲ୍ଲଭ ଯେ ମୂଳ ॥
ବେଉଆ ସେବକ ଗ୍ରୁମୁ ଗହଳ ଛଡ଼ାଇ ।
ଏକ ଆରକରେ ସେହି ଶ୍ଳୋକକୁ ପଢ଼ାଇ ॥
ପଢ଼ିଣ ଆଶ୍ଚର୍ଯ୍ୟ ମନ ପାଇ ରାଜାଗଣ ।
ଯାର ନାମ ନିହ୍ନ ଶିବ ଶିରରେ ଭୂଷଣ ॥
ତାର କଥା କେବାକୁ କେ ହେବ ସମରଥ ।
ଏତେ ବୋଲି ଯେ ଯାହାର ଗଲେ ନରନାଥ ॥
ସେହିକାଳେ ଏମନ୍ତ ଅଛଇ ମୁହିଁ ଜାଣି ।
ଶୁଣି ତହିଁ ଏମନ୍ତ ଚମ୍ପକଲତା ଭଣି ॥
ବିଚିତ୍ରା କହିଲେ ଯାହା ସତ୍ୟ ସେ ବଚନ ।
ଅଭିମନ୍ୟୁ କନ୍ୟା ଯେବେ କଲେ ଚରଦାନ ॥

ଦୁଷ୍ଟ ରାଜାଗଣ ଶୁଣି ହେଲେ ବେଗ ମେଳ ।
ବଲେ ଘେନିଯିବା ଏ ସୁବର୍ଣ୍ଣରତ୍ନମାଳୀ ॥
ଶୂନ୍ୟରୁ ଶବଦ ଯେ ଶୁଭିଲା ଅଦଭୁତ ।
ଗୋପେଶ୍ୱର କୋପାନଳେ ହେବ ଭସ୍ମୀଭୂତ ॥
ମହାମତ୍ତ ମନ୍ଦଚିନ୍ତ ସର୍ବେ ଯିବ ନାଶ ।
ଶୁଣି ସର୍ବ ଦୁଷ୍ଟ ରାଜା ବାହୁଡ଼ ନିରାଶ ॥
ରଙ୍ଗଦେବୀ ବୋଇଲେ ସେକାଳ କଥା ପଛ ।
ପୌର୍ଣ୍ଣମାସୀ ଦେବୀ ଯାହା କହିଲେ ପ୍ରତ୍ୟକ୍ଷ ॥
ଭୂତ ଯେ ଭବିଷ୍ୟ ବର୍ତ୍ତମାନ ଏହୁ ଜାଣେ ।
ତହିଁକ ସଂଶୟ ଯେ କରିବା ଅକାରଣେ ॥
ସୁଦେବୀ ବୋଲନ୍ତି ନିଷ୍ଟେ ଯେହୁ ଗୋ ଯାହାର ।
ବେଳକାଳେ ବିହି କରେ ମିଳନ ତାହାର ॥
ଉତ୍ତମ ଯେ ଦ୍ରବ୍ୟ ସେ ଉତ୍ତମଜନେ ଭୋଗ ।
ଶବରେ ମାଣିକ୍ୟ ଥିଲେ ଦେବତାଙ୍କୁ ଯୋଗ୍ୟ ॥
ସିନ୍ଧୁ ମନ୍ଥନରୁ ଯେ ସୁଧା ଅସୁରେ ପାଇଲେ ।
ଶ୍ରମ ତାହାଙ୍କର ଏହା ଦେବତା ଖାଇଲେ ॥
କୃପଣ ଯେ ଧନ ପାଇ ଯେସନେ ରଖିଥାଇ ।
ଯାହାର ଯେ ଧନ ତାକୁ ବିହି ବଳେ ଦେଇ ॥
ନିଶ୍ଚୟ କୃଷ୍ଣର ରାଧା ଭେଦ ଏଥି ନାହିଁ ।
ନୋହିଲେ ଏହାର ମନ ଏଡ଼େ ଉଚ୍ଛା କାହିଁ ॥
ତୁଙ୍ଗବିଦ୍ୟା ବୋଇଲେ ଏ ଚନ୍ଦ୍ରମଣି ବତ ।
କେବଳ ଚନ୍ଦ୍ରକୁ ଦେଖି ହୁଏ ଦ୍ରବୀଭୂତ ॥
ମୂର୍ତ୍ତିମନ୍ତ କନ୍ଦର୍ପ ସାକ୍ଷାତେ ବିଜେ କଲେ ।
ତେବେହେଁ ଯେ ଶତ୍ରୁ ତାର ନ ବଳିବ ଭଲେ ॥
ଆମ୍ଭେମାନେ ପ୍ରସଙ୍ଗେ କହିଲେ କାନ୍ତ ରସେ ।
କାମକଳା ସଙ୍ଗୀତରେ ମନ ତା ନ ରସେ ॥
ଏବେ ନିଜ କାନ୍ତ ପାଦ ସଙ୍କେତ ଚିହ୍ନରେ ।
କାହାକୁ ନ କହି ସେହୁ ଭାବନା ଅନ୍ତରେ ॥
ଦରିଦ୍ର ପାଇଲେ ଧନ ଯେସନେ ତା ଲୁଚାଇ ।
ନୟ ବିନୟ କରାଇ ଲୋକଙ୍କୁ ବଞ୍ଚାଇ ॥
ନ ପୁଣି ଜାଣିଲେ ଧନୀ ପଡ଼ଇ ପ୍ରମାଦ ।
ସେହିରୂପେ ରାଧିକା ଆମ୍ଭରେ କଲା ଭେଦ ॥
ଶୁଣି ଚନ୍ଦ୍ରରେଖା ଯେ ବୋଲଇ ଆଗୋ ସଖି ।
ତାର ମନୋରଥକୁ ଉପାୟ କର ଦେଖି ॥

ଆମ୍ଭେ ଥାଉଁ ଥାଉଁ ଏତେ ଅବସ୍ଥା ହେଉଛି ।
ବିଷମ ମଦନ-ବାଣ ହୃଦୟ ଦହୁଛି ॥
ଆମ୍ଭ ଜୀଇଥିବା ଆଉ କେବଣ କାରଣ ।
ଜେମା ଦୁଃଖେ ଦୁଃଖୀ ଯେ ସକଳ ସଖୀଗଣ ॥
ଏମନ୍ତେ ସାନ୍ନିଧ୍ୟେ ବସି ପୃଚ୍ଛନ୍ତି ବିଶ୍ୱାସେ ।
କେବଣ କାରଣେ ଚିନ୍ତା କରୁ ତୁ ମାନସେ ॥
କିସ ମନୋରଥ ତୋର ଆମ୍ଭ ଆଗେ କହ ।
ତୋର ଦୁଃଖ ଦେଖି ନ ରହଇ ଆମ୍ଭ ଦେହ ॥
ଅନ୍ତର ନ ରଖି ଚିତ୍ତେ ଲଜ୍ଜାକୁ ନ ରଖି ।
କିପାଁ ଏତେସର ସ୍ୱରୂପ ଯେ କହ ସଖି ॥
ତନୁ ଖିନ୍ନ ଚିନ୍ତାଭରେ ଲୋତକ ପକାଉ ।
ଅକଳଙ୍କ ପୂର୍ଣ୍ଣଚନ୍ଦ୍ର ବଦନ ସୁଖାଉ ॥
କିସ ଅପୂର୍ବ ତୋତେ ନ କହୁ ତ ଫେଡ଼ି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଥିଲେ ଦେବୁଁ ଲୋଡ଼ି ॥
ଶୁଣି ରାଧା ବୋଲନ୍ତି ଗୋ ଶୁଣ ପ୍ରାଣସଖି ।
କୁଳାଙ୍କୁର ହୋଇ ବ୍ରତ ନ ପାରିଲି ରଖି ॥
ଯେବଣ ପୁରୁଷ ପାଦଚିହ୍ନକୁ ଦେଖିଲି ।
ଆପଣା ଇଚ୍ଛାରେ ଚିତ୍ତ ତହିଁରେ ରଖିଲି ॥
ଚିତ୍ରପଟେ ଚିତ୍ରା ଲିହିଥିଲେ ଯେଉଁ ରୂପ ।
ଦେଖିଲା ମାତ୍ରକେ ବାଧା ହୋଇଲି କନ୍ଦର୍ପ ॥
ଆଜ ରଜନୀରେ ସ୍ୱପନରେ ସେ ପୁରୁଷ ।
ପାଶେ ବସି ଉରେ କର ଦେଲେ ମୃଦୁହାସେ ॥
ଉଠିଣ ଚାହିଁଲି ଚଉଦିଗେ କେହି ନାହିଁ ।
ଚେତକ ଧଇର୍ଯ୍ୟ ବୁଦ୍ଧି ହୋଇଗଲେ ସେହି ॥
ବୃନ୍ଦା ତହୁଁ ଶୁଣିଲି କୁମର ଗୁଣକର୍ମ ।
ତେତେବେଳୁଁ ଚିତ୍ତରେ ହୋଇଲା ସଖୀ ଭ୍ରମ ॥
ପଞ୍ଚସ୍ୱରେ ମଧୁର ମୁରଲୀ ବାଏ ଯେହୁ ।
ସର୍ବଦା ମୋ ହୃଦୟ ତରଳ କରେ ସେହୁ ॥
ଏତେ କଥାରେ ଯାହାର ଅନୁରାଗ ବଢ଼େ ।
ରହେ କି ସେ ବିରହିଣୀ ଲୋହାର ଉହାଡ଼େ ॥
ଏ ପାଞ୍ଚ କଥାରେ ସଖି ବିକଳ ମୋ ଚିତ୍ତ ।
ଧରି ନ ପାରଇ ଦେହ କହୁଅଛି ସତ୍ୟ ॥
ବିଷ ସୁଧା ଦୁଇରୁ କଥାଏ ମୋତେ ଦିଅ ।
ଏତେ କହି ମଉନ ସେ ବୃଷଭାନୁ ଝିଅ ॥

ବୋଲନ୍ତି ସଜନୀ ଶୁଣି ନୃପତିଦୁହିତ ।
ଏ ପାଞ୍ଚ ଲକ୍ଷଣ ଯେ ଟି ନନ୍ଦରାଜାସୁତ ॥
ସେ ତୋହର ପ୍ରାଣନାଥ ପୌର୍ଣ୍ଣମାସୀ ଆଜ୍ଞା ।
କାହାର ବା ବଳ ତାହା କରିବ ଅବଜ୍ଞା ॥
କରିବା ବିଧାନ ସଖି ଥୟ କର ଦେହ ।
ନିଶ୍ଚୟ ଲଭିବୁ କାନ୍ତ ଆତୁର ଯେ ନୁହ ॥
ମନକୁ ସମ୍ଭାଳ ସଖି ଧଇର୍ଯ୍ୟରେ ଥିଲୋ ।
ପ୍ରାଣନାଥ ସଙ୍ଗରେ ମିଳାଇବୁଁ ଭଲେ ॥
ଅବୋଧ ନାୟିକା ଅଙ୍ଗେ ବୋଧ ନ ଭେଦଇ ।
ନନ୍ଦସୁତ ଗୁଣ କର୍ମେ ମନ ତା ଖେଦଇ ॥
ଜେମା-ଦେଈଙ୍କ ଦୁଃଖ ଦେଖି ସକଳ ଯେ ଆଳୀ ।
ବୟସେ ଅଧିକା ଯେ ଦୂତିକା ନାମେ ବାଳୀ ॥
ତାହାକୁ ସାନନ୍ଦେ ରାଇ ଗଉରବ କରି ।
ଧନ ବସ୍ତ୍ର ଅଳଙ୍କାର ଶରୀରରେ ଭରି ॥
ବିଶ୍ୱାସ କହିଣ ତାଙ୍କୁ ପେଷି କୃଷ୍ଣ ପାଶେ ।
କେମନ୍ତ ଚରିତ ତାଙ୍କ ଚିତ୍ତ କାହିଁ ରସେ ॥
ଜେମାଦେଈଙ୍କ ରୂପ କାନ୍ତି ଶୁଣି କି ନାହାନ୍ତି ।
ଗୋବତ୍ସା ଚରାଇ କେଉଁ ସ୍ଥାନରେ ଥାଆନ୍ତି ॥
କେତେ ବଡ଼ ସାହସ ପାରିବଟିକି ଭେଦି ।
ଦଣ୍ଡ ଭେଦ ଶାମ ଆଦି ଜାଣିବ ସମ୍ବାଦି ॥
ଶୁଣି ଦୂତୀ କହଇ ଯେ ମଧୁର ଉତ୍ତର ।
ରସିକ ନାଗରବର ସେ ନନ୍ଦକୁମର ॥
ପୂର୍ବ ପୁଣ୍ୟ ପ୍ରକାଶ ହୋଇଲା ଏତେ ଦିନେ ।
କର୍ଣ୍ଣେ କଥା ଶୁଣି ରୂପ ଦେଖିବ ନୟନେ ॥
ଏତେ କହି ହରଷରେ ଚଳିଲେକ ଦୂତୀ ।
ସୂର୍ଯ୍ୟପୂଜା ଛଳେ ବନେ ନୃପତି ଦୁହିତୀ ॥
ବନେ ପୁଷ୍ପ ତୋଳି କୃଷ୍ଣରୂପ ଅନୁସରେ ।
ତମାଳ ତରୁକୁ ଦେଖି ଚାହିଁଇ ସଧୀରେ ॥
ମୟୂର ମଣ୍ଡଳେ ଶିଖୀ ନୃତ୍ୟକୁ ଦେଖଇ ।
ହରିଣୀ ପଲରେ କୃଷ୍ଣସାର ନିରେଖଇ ॥
ନବଘନ କୋଳେ ଦେଖି ବିଜୁଳିର ଲତା ।
ପୁଲକ ହୁଅଇ ଭାବେ ବୃଷଭାନୁସୁତା ॥
କାଳନ୍ଦୀ ଜଳରେ ପଶି କରଇ ବିହାର ।
କୃଷ୍ଣର ସ୍ୱରୂପ ଭାବ ନୁହଇ ବାହାର ॥

ଯେତେ ଆଚରଣ ତାର କୃଷ୍ଣରସେ ମତ୍ତେ ।
ଲୌକିକ ଭାବରେ ସଖୀସଙ୍ଗେ ସୂର୍ଯ୍ୟ ପୂଜେ ॥
ପାଦପଦ୍ମ ଆରାଧି ବଦନେ ଅର୍ଘ୍ୟ ଦେଇ ।
ନନ୍ଦନନ୍ଦନଙ୍କୁ ପତି ପାଇବ ମାଗଇ ॥
ଜଣାଇ ବିନୟ ଭାବେ କରାଞ୍ଜଳି ହୋଇ ।
ଅମୂଲ୍ୟ ସେ ଚିନ୍ତାମଣି କରେ ପ୍ରବେଶଇ ॥
ଦେଖିଣ ହରଷ ରାଧା ବିସ୍ମିତ ଚିତ୍ତରେ ।
ଯେବେ ମଣି ପ୍ରବେଶ ତୁ ମୋହର ହସ୍ତରେ ॥
ମୋର ନିଜ ପ୍ରାଣନାଥ ହୃଦୟରେ ଲମ୍ବି ।
ଯେମନ୍ତ ସେ ପାଦପଦ୍ମ ହେବ ଅବଲମ୍ବି ॥
ସତ୍ୟ ଯେବେ ଚିନ୍ତାମଣି ମୋହରେ ପ୍ରସନ୍ନ ।
କୃଷ୍ଣଙ୍କୁ ଘେନିଣ ମୋତେ ଦିଅ ଦରଶନ ॥
ଅନ୍ତର୍ଦ୍ଧାନେ ଗଲା ମଣି ରାଧା ଆଜ୍ଞା ମାନି ।
ଶ୍ୟାମକୁଣ୍ଡ କୂଳେ ମିଳେ ଫୁଲଧନ୍ୱା ଘେନି ॥
ପୂର୍ବେ ବିଜେ ବାହୁଡ଼ି ଚତୁରୀ ଶିରୋମଣି ।
ଏଥୁ ଅନନ୍ତରେ ଶୁଣ କୃଷ୍ଣର କାହାଣୀ ॥
ଏକଦିନେ ସଖା ଘେନି ଗୋକୁଳ ସୁନ୍ଦର ।
ଗୋବତ୍ସା ଚରାଇ ପଶେ ଗହନକନ୍ଦର ॥
ମନ୍ଦଗନ୍ଧ ଶୀତେ ବହେ ମଳୟମରୁତ ।
ବିକାଶ ପୁଷ୍ପ ଚନ୍ଦନ ସକଳ ତରୁ ତ ॥
ବୋଲନ୍ତି ଶ୍ରୀହରି ମିତ ହୋଇଲଇଁ ବଣା ।
ଏଣ୍ଡି ଦିଗ ଗହନ ତ ନ ଯାଇ କଳନା ॥
ଏକମନେ ତିନିଜଣେ ତହୁଁ ଚଳିଗଲେ ।
ନିବିଡ଼ ଲତିକା ବାଡ଼ ପାଶେ ଦେଖିଲେ ॥
ସଞ୍ଚଞ୍ଚ ଉଚ ତରୁ ଲଗି ଦେହେ ଦେହେ ।
ନିସନ୍ଧିରେ ଲତାଛନ୍ଦା ଜୀବେ ଭେଦ ନୁହେ ॥
ଘୋର ଘନ ନିବିଡ଼ ବିସ୍ତାର ମହାଗୁଡ଼ ।
ପଶି ନ ପାରିଣ ମନ ଅତି ଖେଦ ବଡ଼ ॥
ବାଟ ଖୋଜି ୨ ଲମ୍ବେ କେତେଦୂର ଗଲେ ।
ଗିରିବର ଗୋବର୍ଦ୍ଧନ ତଳରେ ମିଳିଲେ ॥
ହରିବାରି ଅନୁସରି ଗିରି ପରେ ଉଠି ।
ସ୍ୱର୍ଗସୁଖ ତୁଚ୍ଛ ସେ ଅମୃତମୟ ସୃଷ୍ଟି ॥
ବିବିଧ ଯେ ଲତା ତରୁ ଫଳଭରେ ଭରି ।
ବିହରନ୍ତି ନାନାପକ୍ଷୀ କୋଳାହଳ କରି ॥
ଚଉସମ ଚିକ୍କଣ ପାଷାଣ ଚନ୍ତ୍ର ପନ୍ତି ।
ସ୍ଫଟିକ ପ୍ରବାଳ ହେମ ମରକତ ଭ୍ରାନ୍ତି ॥
ମନୋରମ କମନୀୟ ସୁଷମ ସୁଶୀଳା ।
ପୀଡ଼ ବାଡ଼ ଅପସର ପଲଙ୍କ ମୁଚ୍ଳା ॥
ମେଢ଼ ଯେ ମଣ୍ଡପ ସିଂହାସନ ଛ ପ୍ରକାର ।
ବିଶ୍ୱକର୍ମା ନିର୍ମାଣରୁ ଅତ୍ୟନ୍ତ ସୁନ୍ଦର ॥
ନିବିଡ଼ ବିଟପୀ ଜାତି ରହିଛି ସୁସଞ୍ଚେ ।
କେହୁ ତଳ କେହୁ ମଧ କେହୁ ଅଛି ଉଚେ ॥
ଗବାକ୍ଷ ପଲ୍ଲବ ସନ୍ଧି ପବନ ଭେଦଇ ।
ସେହି ମାର୍ଗେ ମନସିଜ ନାରାଜ ସନ୍ଧଇ ॥
କୁସୁମ ବିଶିଖ ମଧୁକର ଧ୍ୱନି ଯନ୍ତ୍ରେ ।
ପିକ ଡାକ ଶବଦରେ ରତିରାଜ ମନ୍ତ୍ରେ ॥
ଲତା ତରୁ ଅଚ୍ଛାଦନେ ମନ୍ଦିର ଆକାର ।
ଦେଖିବା ମାତ୍ରକେ ଅଙ୍ଗେ ମଦନ ବିକାର ॥
ଦେଖି ବନ୍ଧୁ ପ୍ରଶଂସା କରନ୍ତି ବେଣୁଧର ।
ଦେଖ ଦେଖ ଧନ୍ୟ ଧନ୍ୟ ଶୋଭା ଗିରିବର ॥
ଏତେଡ଼ ସୁଖ ସ୍ଥାନେ ମିତ ଦିନେ ହେଁ ନ ଆସି ।
ବତ୍ସା ଚରାଇଣ ଏ ପାଷାଣେ ଥିବା ବସି ॥
ତୁମ୍ଭେ ଜାଣି କପାଇଁ ଏ ସ୍ଥାନ ନ ଦେଖାଅ ।
ନିତ୍ୟହିଁ ଯମୁନା କୂଳେ ଗୋବତ୍ସା ରଖାଅ ॥
ଶ୍ରୀକୃଷ୍ଣ ବଚନେ ମଧୁମଙ୍ଗଳ ଭାଷଇ ।
କନ୍ଦର୍ପ ଯେ ଦର୍ପ ଧ୍ୱଂସେ ଯେ ଏଥେ ଆସଇ ॥
ତୁଚ୍ଛାକୁ ଆଭୀରନାରୀ ସଙ୍ଗେରେ ଗୋଡ଼ାଉ ।
ମନମଥ-ନାବ କାମସାଗରେ ବୁଡ଼ାଉ ॥
ଏଥିରେ ତ ଦିବ୍ୟ ନାରୀମାନଙ୍କ ବିହାର ।
ଭେଟ ପଡ଼ିଲେ କେ ତୋତେ କରିବ ବାହାର ॥
ପିତାର ଆଦେଶ ନାହିଁ ଅଇଲ ଏ ଗିରି ।
ଶୁଣି କୃଷ୍ଣ ମନ୍ଦେ ହସି କରେ କର ମାରି ॥
ହେ ମିତ ଏ ବନେଶ୍ୱରୀ କଲା ଦରଶନ ।
ଏହୁ ଗିରିବରକୁ କରିବା ଆରାଧନ ॥
ଠାବେ ଠାବେ ବୁଲିଣ ଦେଖନ୍ତି ତିନିଜଣ ।
କାହିଁ ରହି କାହିଁ ଶୋଇ କାହିଁ ବିହରଣ ॥
ଫୁଲ ତୋଳି ମାଳା ଗୁନ୍ଥି ହୃଦରେ ଲମ୍ବାଇ ।
ସ୍ୱାଦୁଫଳମାନ ତୋଳି ଭୁଞ୍ଜି ସୁଖ ପାଇ ॥

ଅମୃତ ସମାନ ଫଳ ସ୍ଫଟିକ ଚଉକା ।
ସ୍ନାନ ପାନ କରି ସୁଖ ବଢ଼ଇ ଅଧିକା ॥
ସୁବାସିତ କୁସୁମ ଯେ ପଡ଼ଣେ ଭାସନ୍ତ ।
ନିଜ ଅଙ୍ଗ ଢ଼ଳ ଢ଼ଳ ଜଳରେ ଦିଶନ୍ତ ॥
କେତେବେଳେ ଉଡ଼ିପୀଡ଼ ଚଉସମ ଉଠି ।
ଦିଗ ବାରି ସ୍ଥାନେ ସ୍ଥାନେ ଦେଖାଇ ଅଙ୍ଗୁଷ୍ଠି ॥
ତହିଁ ମଧ୍ୟେ ରାଧାକୁଣ୍ଡ ବନ ଶୋଭା ଦେଖି ।
ମନ ଯେହ୍ନେ ନିଶ୍ଚଳ ହୋଇଲା ତହିଁ ଆଖି ॥
ପାରେଇକ ଦେଖି ଯେସନ୍ତେ ପାରାବତ ଖସି ।
ସେହିରୂପେ କୂଳରେ ମିଳଲେ ହରି ଆସି ॥
ତରୁଲତା ଉହାଡ଼ରେ ନ ପାରଲେ କଳି ।
କେତେଦୂରେ ବନରେ ଶୁଭଇ ହୁଳହୁଳି ॥
ଶ୍ରବଣ ଡେରିଣ ଶୁଣି ଅନୁସରି ଚଳେ ।
ପଥ ପାଇ ପୁଳିନ୍ଦ ପଲ୍ଲୀରେ ଯାଇ ମିଳେ ॥
ଭ୍ରୂଭଙ୍ଗି ମଲ୍ଲିକା ଦୁଇ ପୁଳିନ୍ଦ କୁମାରୀ ।
ମୋହନ ମୂରତି ଚାହିଁ ମଦନରେ ଘାରି ॥
ଅଳସୀ ହୋଇଣ ତରୁ ଅବଲମ୍ବି ରହେ ।
ମନ ମତ୍ତ ନୟନ ସଙ୍କେତେ କୃଷ୍ଣ ଦେହେ ॥
ଅମୃତ ଆପ୍ୟାନ କରି ଦେବଦୃଷ୍ଟି ହୁଏ ।
ହୃଦପଦ୍ମେ ଭାବଣି ବିଳାସେ ସୁଖ ପାଏ ॥
ଦେଖିଣ ସୁବଳ ମଧୁମୃଦୁବାଣୀ ଭାଷି ।
ରୂପ ଗୁଣେ ସୁନ୍ଦର ଯେ ବେନି ଶୁଭ୍ରକେଶୀ ॥
କି ଅବା ସ୍ୱର୍ଗର ତୁମ୍ଭେ ବିଦ୍ୟାଧରୀ ଅଛ ।
କେଉଣ ଦେଶରେ ଘର କାହା ପାଦେ ଖଛ ॥
ବୋଲନ୍ତି ଶବରସୁତା ଶୁଣ ହେ ସୁନ୍ଦର ।
କେଉଣ କାରଣେ ବୁଲ ଏ ବନକନ୍ଦର ॥
ଅପୂର୍ବ ମୋହନରୂପ ଦେଖି ନାହୁଁ ଏଥେ ।
କୋମଳ ଚରଣ ବ୍ୟଥା କରିବ ଏ ପଥେ ॥
ପୁଳିନ୍ଦନନ୍ଦିନୀ ବେନି ଭଗିନୀ ଯେ ଅଟୁଁ ।
ଇନ୍ଧନ ପଲ୍ଲବ କୋଳ ମଧୁ ନେଉ ଖଟୁଁ ॥
କାହାରିହିଁ ନୋହୁଁ ଆମ୍ଭେ ବୃନ୍ଦାଦେବୀ ଦାସୀ ।
ତାହାଙ୍କ ଚରଣେ ସେବି ଏ ବନେ ନିବସି ॥
କାହାର କୁମର ଏଥିଁ କମାଇ ଅଇଲ ।
କୋମଳ ଲଳିତ ତନୁ ଦୁଃଖ ଯେ ପାଇଲ ॥

ଶୁଣି ମଧୁମଙ୍ଗଳ ବୋଲନ୍ତି ଆରେ ବାଳୀ ।
ଏ ନନ୍ଦନନ୍ଦନ ଯୁବା-ଯୁବତୀ-ସଙ୍ଗାଳି ॥
ରସିକ ନାଗରବର ରସେ ପରିପୂର୍ଣ୍ଣ ।
ମଦନବର୍ଦ୍ଧନ ପୁଷ୍ପବାଣ କରେ ଚୂର୍ଣ୍ଣ ॥
ବନ ଶୋଭା ଦେଖିଣ ଯେ ଏଥକୁ ଅଇଲୁ ।
ବନ୍ଧା ହୋଇ ଯୋଗେ ତୁମ୍ଭ ଭେଟକୁ ପାଇଲୁ ॥
ଗିରି ଦରେ ଉଠି ଯେ ଅଇଲୁ ତିନିଜଣେ ।
ହୁଳହୁଳି ଯନ୍ତ୍ରବାଦ୍ୟ ଶୁଭୁଅଛି ଏଣେ ॥
ବୋଲଇ ଭ୍ରୂଭଙ୍ଗୀ ଏହୁ ବୃନ୍ଦାଦେବୀ ସ୍ଥଳ ।
ଦେବଗଣେ ଦୁର୍ଲ୍ଲଭ ମନୁଷ୍ୟେ କାହିଁ ମେଳ ॥
ତାଙ୍କ କୃପା ନ ଥିଲେ କେ ଏଥିଁପଶି ପାରେ ।
ଜାଣିଲି ସୁଦୟା ଦେବୀ କରନ୍ତି ତୁମ୍ଭରେ ॥
ଉତ୍ସବ ଆନନ୍ଦନାଦ ଅନେକ ଶୁଭଇ ।
ଏତେ ବୋଲି ସୁନ୍ଦରୀ ଯେ ଚରଣେ ନମଇ ॥
ଗୋପୀ-କୁଚକୁଙ୍କୁମଚନ୍ଦନ ପଙ୍କ ପାଦ ।
ତୃଣେ ଲାଗି କୁଚସଙ୍ଗୀ ଛେଦେ କାମଖେଦ ॥
ନାନା ସ୍ୱାଦୁଫଳ ଆଣି ଭାବେ ସମର୍ପିଲେ ।
ସୁବାସିତ ପୁଷ୍ପମଧୁ କନ୍ଦମୂଳ ଦେଲେ ॥
ଭ୍ରୂଭଙ୍ଗୀମଲ୍ଲିକା ଭାବେ ଅଙ୍ଗୀକାର କଲେ ।
ପ୍ରୀତିବଶେ ତରୁତଳେ କ୍ଷଣେ ବିଶ୍ରାମିଲେ ॥
କୁମାରୀମାନଙ୍କୁ ଯେନି ତହୁଁ ଗଲେ ଚଳି ।
କେତେବେଳେ କଖଟୀ ବାନରୀ ଆସି ମିଳି ॥
ପୂର୍ବ ଅବଲୋକ ଲୋକେ ଚାହିଁଇ ନିରେଖି ।
ଡାକଲେ ଡାକଲେ ଡେଇଁଣ ହୁଅଇ ଖି, ଖି, ଖି ଖି ।
ସୁବଳ କହଇ କୃଷ୍ଣ କର ନିଉଗ୍ରାଇ ।
ପୂର୍ବେ ଏହିଠାରୁ ଆମ୍ଭେ ବାହୁଡ଼ି ଅଛଇଁ ॥
ତେବେ ଏହି ମର୍କଟୀ ଉଗ୍ରଭ ଯେ ଥିଲା ।
ଏବେ ପୁଣ ସ୍ୱାଭାବିକ ବିକାର ବହିଲା ॥
ଦେଖି ମଧୁମଙ୍ଗଳ ଯେ ମଧୁ ଫଳ ଥୋଇ ।
ଭ୍ରୂଭଙ୍ଗୀ ମଲ୍ଲିକା ମଲ୍ଲୀମାଳକୁ ଲମ୍ବାଇ ॥
ପାଇଣ ସନ୍ଦେଶ ମନେ ବାନରୀ ଉଲ୍ଲାସ ।
ଆଗେ ବାଟ କଢ଼ାଇଣ ମନରେ ହରଷ ॥
ବୋଲନ୍ତି ମୋହନ ତୁମ୍ଭେ ଶୁଣ ପ୍ରାଣସଖା ।
ଏହୁ ବନନାୟିକା କରାଅ ମୋତେ ଦେଖା ॥

ଶୁଣୁଥାଇ ଏଥୁ ବନ ନ ପାରନ୍ତି ଶୋଧି ।
ଏତେକାଳେ ସମ୍ମୁଖ ହୋଇଲା ଅଛୁ ବୁଧି ॥
ପୂର୍ବେ ତୁମ୍ଭ ତହିଁ ଶୁଣି ଉତ୍ସାହ ବଳାଇ ।
ଏହିଯାଏ ଆସିଣ ସେ ଗଲକ ଲୋକ ॥
ଯେତୁ ଭଙ୍ଗାଇଲ ସେତୁ ଏବେ ଦରସନ୍ତ ।
ଯାହା କହୁଥିଲ ତାହା ହେବ ଦରଶନ ॥
ବୋଲେ ବଟ ହର ଅଟ୍ କାମିନୀ ଲମ୍ପଟୀ ।
ତୋହ ସଙ୍ଗେ ଥିଲେ ଥାଇ ସକଳ ଅରିଷ୍ଟି ॥
କାର୍ଯ୍ୟ ଲଭ ଉପକାର କହୁହିଁ ନ ମାନୁ ।
ଯୋଗେଣ ଭଳାଲେ କଥା ମିଛବୋଲ ଭେନୁ ॥
ପୁଅଙ୍କୁ ଚିହ୍ନାଇ ମେଳ ଲଗାଇ ସଙ୍ଗେରେ ।
ଏବେ କପାଁ ବୋଲୁ ପଥ କଢ଼ାଅ ଆଗେରେ ॥
ଶୁଣି କୃଷ୍ଣ ଇଷିତେ ଚରଣେ କର ଦେଇ ।
ଗୁପତ ମରମ ସେ ପ୍ରକାଶ ତୁମ୍ଭେ ଦୁଇ ॥
ଭୁଜେ ଭୁଜ ଭେଡ଼ି ବଟ ବୋଲେ ମଲି ମଲି ।
କଖ୍ଖଟୀ ବାନରୀ ଗତ ପଥେ ଆଗେ ଚଳି ॥
ଗହନ ସେ ଲତା ତରୁ ଗମେ ବାଙ୍କେ ବାଙ୍କେ ।
ସେଠାରୁ ଲେଉଟି ଚଳେ ଗତପଥେ ଥୋକେ ॥
ଢଙ୍କଟୀକ ନୁପର ଭିତରେ ପଶିଲେ ।
ବନ ଶୋଭା ଦେଖିଣ ବହୁତ ପ୍ରଶଂଶିଲେ ॥
ବୃନ୍ଦାବନ ଗୁରସୁଣ ଧାର ଗୁହକୋଶ ।
ଅପୂର୍ବ ମୋହନ ବନ ବୃନ୍ଦାଦେବୀ ବାସ ॥
ପଟାନ୍ତର ଦେବା କ ନନ୍ଦନ-ବନ ଜିଣି ।
ପୁଷ୍ପ ଗନ୍ଧ ଆମୋଦରେ କୃଷ୍ଣ ମନ କିଣି ॥
ଠାକୁରାଣୀ ଶ୍ରୀଅଙ୍ଗ ପରଶେ ଲତା ତରୁ ।
ସ୍ୱରଣୁ ଉତ୍ସାହ ହେନ୍ତୁ ତାହା କହିପାରୁ ॥
ନବାଙ୍ଗନା ଆଗମନେ ନାୟକ ଯେସନ ।
ମଦନମୋହନ ମନ ଉଦ୍ଧତ ତେସନ ॥
ସମତୁଲ ଅବନୀ କର୍ପୂର ଧୂଳିରଜ ।
ବିଶାଳ ବିସ୍ତାର ନବଦଳ ଅବନୀଜ ॥
ତମାଳ ରସାଳ ଶାଳ ଅଶନ ଅଇଁଳା ।
କୁମ୍ଭୀ କେନ୍ଦୁ କଦମ୍ବ ଯେ କନ୍ଦ କଇଲା ॥
ପୁନ୍ନାଗ ନାରଙ୍ଗ ନାଗେଶ୍ୱର ନାଗବାଙ୍କା ।
କରମଙ୍ଗା କଞ୍ଚନ କନକ କୁରୁନ୍ଦବାଳା ॥

ବକୁଳ କପିତ୍ଥ କୋବିଦାର କଳ୍ପତରୁ ।
ପାରିଜାତ ଅଗୁରୁ ଚନ୍ଦନ ଦେବଦାରୁ ॥
ପାଳଧୂଆ ବେଲ ସେ ମହୁଲ ଚନ୍ଦ୍ର ଚନ୍ଦ୍ର ।
କରଞ୍ଜ ହିଞ୍ଜଳ କଥା ଜଳ କଣ୍ଟ କଣ୍ଟ ॥
ନେମ୍ବୁ ନିମ୍ବ ମାଟଙ୍ଗ ପୁନ୍ନାଗ ଧାଡ଼ି ଧାଡ଼ି ।
ତାଳ ଗୁର ଖଜୁରୀ ନଡ଼ିଆ ବାଡ଼ି ବାଡ଼ି ॥
ବାସଙ୍ଗ ଲବଙ୍ଗ ଗଙ୍ଗଶିଉଳୀ ଶିମିଳି ।
ଜମ୍ବିଲ ଜମ୍ବୁ ସେଉଠ ବଟ ସେ ପାଟଳୀ ॥
ପିଆଶାଳ ବେତ ସେ ପନସ ମାଳ ମାଳ ।
କାନ୍ଧ କାନ୍ଧ ଉଆଉ ନେମ୍ବୁ ସେ ମହାକାଳ ॥
କୁସୁଅନା ଚଣ୍ଡିଅନା ସଜନା ସୁନାରି ।
ଜାଇଫଳ ଅଳାଇଚ ମରିଚ ଗମ୍ଭାରି ॥
ରୁଦ୍ରାକ୍ଷ ଦାଲକ୍ଷ ପୁଣି ଗୁହୀଆ ଦୁର୍ଲ୍ଲଭ ।
ଅଶୋକ ବିଶୋକ ଚମ୍ପା ରମ୍ଭା ଗଭଗଭ ॥
ହରଡ଼ା ବାହାଡ଼ା ସେ ଆମ୍ବଡ଼ା ନରକୋଳି ।
ଚନକ୍ଷୀର ଭଇଁଷ ସେ ସଡ଼ପ ପିପ୍ପଳ ॥
ଧଣିଆ ଜୁଆଣି ଜିରା ମେଥି କୋଠି କୋଠି ।
ଫୁଲବନେ ମରୁଆ ଦଅଣା ପଟିପଟି ॥
ଜାଇଯୂଥି ସେବତୀ ମାଳତୀ ଛନ୍ଦାଛନ୍ଦ ।
ଜାନ୍ଦୁଲୀ କୁମୁଦକୁନ୍ଦ ମଲି ମନ୍ଦାମନ୍ଦ ॥
ତଗର ତରାଟ ନବମାଳିକା ରଙ୍ଗଣୀ ।
ବାଧୁଲି ମନ୍ଦାର କେତକ କେ କହୁ ଅଗଣି ॥
ମାଧବୀ ଅଳିକରେ ସ୍ତବକ କେଣ୍ଡି କେଣ୍ଡି ।
ଥୋପି ଥୋପି କୁରୁଣ୍ଟକ ହୋଇଅଛି ମଣ୍ଡି ॥
ଦାଡ଼ିମ୍ବ ପାଚିଲା ଫାଟିଅଛି ଶୁକ ଖାଉଁ ।
ନାନା କଳ୍ପବୃକ୍ଷ ସେ ଦେଖନ୍ତି ଯାଉଁ ଯାଉଁ ॥
ବିଶ୍ୱନାଥା କୁଞ୍ଜେ ବସି ଗୁହାଇ କାଂଶଙ୍କେ ।
ଚନ୍ଦ୍ର ଧଉଳଶୀ ଚଳାଇ ବାଙ୍କେ ବାଙ୍କେ ॥
ତରୁଡାଳେ ନେପାଳୀ ସେ ମୁଧା ଥିଲା ବସି ।
ଦେଖିବା ଲୁବ୍ଧାରେ ସେ ନିକଟ ତଳ ଖସି ॥
ନୀଳକଣ୍ଠ ଦେଖି ବେଗେ ନାଟ ଆରମ୍ଭିଲେ ।
ନାନା ପକ୍ଷୀ କୋଳାହଳ ମଙ୍ଗଳ ସୁଚିଲେ ॥
ଦାଲକ୍ଷ ଉପରେ ବସି ଘୋଷଇ ସାରିକା ।
ଜୟ ଜୟ ଗାନ୍ଧର୍ବିକା ଜୟ ଶ୍ରୀ ରାଧିକା ॥

ଶୁଣି କୃଷ୍ଣ ମଧୁମଙ୍ଗଳରେ ପ୍ରଶଂସଇ ।
ପୂର୍ବେ ଯାହା କହିଥିଲ ସାରିକା ଭାଷଇ ॥
ଏହି ବନେ କଥାଏ କଥାଏ ଭେଟି ଅଛୁ ।
ଭାଗ୍ୟବଳେ ଯୋଗବଳେ ଭେଟିବ ମୃଗାକ୍ଷୀ ॥
ଯେବଣ ଯେ ଚରୁଲତା ତଳେ ଯାଇଁ ମିଳି ।
ପ୍ରଣତ ଚରଣେ ପୁଷ୍ପ ବରଷି ମଉଳି ॥
କୃଷ୍ଣଙ୍କୁ ଦେଖାଇ ମଧୁମଙ୍ଗଳ କହଇ ।
ଦେଖ ଚରୁଲତା ଅନୁରାଗ ବରଷଇ ॥
ଝଙ୍କାର କରଇ ଅଳୀ ମଲ୍ଲିକ କଢ଼ ପରେ ।
ଜାଣି କୃଷ୍ଣ ବିଜୟ ଯେ ଜୟଶଙ୍ଖ ପୂରେ ॥
ଏହି ବନେ ଦ୍ୱିଜଗଣ ମଙ୍ଗଳ ଭାଷନ୍ତି ।
ମଧୁଧାରା ତ୍ୟଜି ତରୁ ଆନନ୍ଦ ପାବନ୍ତି ॥
ରସାଳ ବଉଳ ଦେଖ ଭ୍ରମର ଡାକଇ ।
ଆଲଟ ବିଞ୍ଚଣୀ ଖଟି ପଲ୍ଲବ ଗ୍ରହଇ ॥
ଦେଖ ନୀଳକଣ୍ଠ ନାଚ କରେ ତୋଷରଙ୍ଗେ ।
ପୁଚ୍ଛଛତ୍ର ତୋଳି ରହେ ରମଣୀ ସଙ୍ଗତେ ॥
ଦେଖ ଏହୁ ମୃଗଗଣ ନିଶ୍ଚଳେ ରହନ୍ତି ।
ତୋ ମୁଖ ଅମୃତ ସୁଖ ସୁଧାକୁ ପିବନ୍ତି ॥
ଅନୁକୂଳ ପବନ ବହଇ ଶୀତଗନ୍ଧେ ।
ତୋର ଆଗମନ ଦେଖି ସକଳ ଆନନ୍ଦେ ॥
ଦେଖ ମହୀରୁହ ତୃଣ ପୁଲକ ଯେ ହୁଏ ।
ଦେଖ ରମ୍ଭା କମ୍ପମାନ ଜରଜର କାୟେ ॥
ପଦ୍ମପେଟୀ ପୂର୍ଣ୍ଣକୁମ୍ଭ ପୁଷ୍ପ ମାଳ ମାଳ ।
ହୁଳହୁଳି ଦିଅନ୍ତି ସକଳ ପକ୍ଷୀକୁଳ ॥
ଉଦାଳିଆ ଗଛେ ଅଛି ଉଦାଳିଆ ପକ୍ଷୀ ।
ସଘନ ଉଦ୍ଧ୍ୱରେ ଶଙ୍ଖଚିଲ ବସିଅଛି ॥
ଶ୍ୱେତପାରାବତଗଣ ଉଡ଼ନ୍ତି ଆକାଶେ ।
ରାଜହଂସ ପଲ ପଲ ଚଲନ୍ତି ଚୌପାଶେ ॥
ବେଙ୍ଗ ପଦେ ଉଚ୍ଚ ହୋଇ ଗୃହନ୍ତି ନକୁଳେ ।
କୁହୁକୁହୁ ଡାକଇ ଯେ କୋକିଳ ବକୁଳେ ॥
ଚନ୍ଦ୍ରାବଳୀ ନିଷ୍ଠୁର ହେଲା କହୁଅଛି ଏହି ।
ସାରିକା ବଚନ ହରି ଶ୍ରଦ୍ଧା ଏବେ ଯହୁଁ ॥
ନଉଛୁଳ ପକାଉ ଅଛନ୍ତି ଗୃହୀଁ ଗୃହୀଁ ।
ଅରଖ ଶିମୁଳ ଫଳ ଫାଟି ଉଡ଼େ ଯାହା ॥

ବଟୁ ବଚନରେ ହରି ପୁଲକିତ ହୁଏ ।
ମଳୟଅନିଳ ଶୀତ ମନ୍ଦଗନ୍ଧେ ବହେ ॥
ସୁବଳ ବୋଲନ୍ତି ସବୁ ଚରୁଲତା ଗୃହିଁ ।
ନ ଫଳିବା ହୋଇ ଏଥି କହ ଅଛୁ କେହି ॥
ଶ୍ରୀକୃଷ୍ଣ ବୋଲନ୍ତି ଏଥି ସବେ ଛନ୍ତି ଫଳି ।
ଏକା ମୋର କରମ ଯେ ଏଥିରେ ନ ଫଳି ॥
ବୋଇଲେ ବଟୁ ଯେବେ ତୁହି ବାଞ୍ଛାବଟ ଅଟୁ ।
ଆମ୍ଭ ହରି ବାଞ୍ଛାଫଳ ତତକାଳେ ଭେଟୁ ॥
ଏତେ କହି ସିଦ୍ଧ ଚରୁ କଲେ ଆରାଧନ ।
କେତେଦୂରେ ଦିଶିଲେ ଅପୂର୍ବ କନ୍ୟାଗଣ ॥
ଫଳପୁଷ୍ପ ପଲ୍ଲବ ଯେ ମଧୁ ସଞ୍ଚୟନେ ।
ବିହରନ୍ତି ବୃନ୍ଦା ଆଦି ବନଦେବୀମାନେ ॥
ଭଦ୍ରାଶ୍ରିୟା ଲୋହିତା ଉଣ୍ଡିରା ମହାତଳ ।
ଖଦିରା ବହୁଳା ଯେ କୁମୁଦା କାମ୍ୟବାଳୀ ॥
ମଧୁମଣ୍ଡି ବୃନ୍ଦା ଆଦି ଦ୍ୱାଦଶ ଏ ସଖୀ ।
ଉପବନବଣ୍ଡି ଏ ଛତିଶ କନ୍ୟା ଲେଖି ॥
ସକଳ ମଧରେ ବୃନ୍ଦାଦେବୀ ଯୂଥେଶ୍ୱରୀ ।
ସିଦ୍ଧ ଦେହ ବହି ରାଧା ସେବା ଅନୁସରି ॥
ଠାକୁରାଣୀ ବିରହରେ ହୋଇଣ କାତର ।
କୃଷ୍ଣ ଆଗମନକୁ ହୋଇଣ ତତ୍ପର ॥
ବସନ୍ତ ପବନ ଅନୁକୂଳ ଯେ ହୋଇବ ।
ହୁଳହୁଳି ଗୀତବାଦ୍ୟ କର୍ଣ୍ଣେ ଶୁଣାଇବ ॥
ଭୃଭଙ୍ଗ ମଲ୍ଲିକା କହି ଉତ୍ସାହ ବଢ଼ାଇ ।
କକ୍ଖଟୀ ବାନରୀ ବାଟ ଆଣିବ କଢ଼ାଇ ॥
ଚରୁଲତା ଫଳପୁଷ୍ପ ଶୁଭ ବିକାଶିବେ ।
ବନଜୀବ ସୁସ୍ୱରେଣ ମଙ୍ଗଳ ଭଣିବେ ॥
ଏମନ୍ତେଣ ଯନ୍ତ୍ର ଗୃହି ସଖୀଗଣ ସଙ୍ଗେ ।
ବିହରନ୍ତି ବନେ ରାଧା କୃଷ୍ଣ ଅନୁରାଗେ ॥
ନବଦଳ ଫଳପୁଷ୍ପ ମଧୁ ସମ୍ପାଦନେ ।
ନାନାଫୁଲ ତୋଳି ମାଳ ଗୁନ୍ଥନ୍ତି ଯତନେ ॥
ଚରୁଲତା ନଉଛନ୍ତି ହୁଳହୁଳି ଦେଇ ।
ଏକ ଯେଣେ ଯାଇ ତେଣେ ଆରକ ଗୋଡ଼ାଇ ॥
କେହୁ ଡାଳ ଲୁଆଇଣ କୁସୁମ ତୋଳଇ ।
କେହୁ ପକ୍ୱଫଳ ତୋଳି ଠୁଳ ଯେ କରଇ ॥

କେହୁ ହେମ ମାଟେ କରେ ମଧୁ ପରିପୂନ ।
କେହୁ ବସି ପୁଷ୍ପ କମ କରଇ ରଚନ ॥
ଆଲଟ ଚାମର ଛତ୍ର ପଲଙ୍କ ପହୁଡ଼ି ।
ଠାକୁରାଣୀ ଲାଗି ମାଳ କେ କରେ ନିବାଡ଼ି ॥
ଗଭାବେଢ଼ା ଅଳକା ଯେ ଝୁଣ୍ଡା ଥୋପା ମଣ୍ଡା ।
ଅବତଂସ ହାରମାନ କରଡ଼ିଆ ଧଣ୍ଡା ॥
ବୃନ୍ଦାର ଆଦେଶେ ପକ୍ଷୀ ପଥେ ସ୍ଥିରେ ଜଗି ।
ଶ୍ରୀକୃଷ୍ଣ ବଦନ ଚାହିଁ ହେଲେ ଅନୁରାଗୀ ॥
ଅଜ୍ଞାତେ ସନ୍ନିଧେ ଯାଇ ହେଲେ ବେଣୁପାଶ ।
ଦେଖିଲେ ସୁନ୍ଦରୀଗଣେ ବୃନ୍ଦା ବନୋଲ୍ଲାସ ॥
ନ ଚଳି ସ୍ତମ୍ଭିତେ ରହେ କମ୍ପମାନ କାୟେ ।
ବେନିପାଶେ ବେନିସଖୀ ଅବଲମ୍ବ ରହେ ॥
ବୃନ୍ଦା ଆଦି କନ୍ୟା ଚାହିଁ ଚମକି ପଡ଼ିଲେ ।
କେଶ ବାସ ଅସମ୍ଭାଳେ ଲତା ଉହାଡ଼ିଲେ ॥
ଅନ୍ତର ହୁଅନ୍ତେ କୃଷ୍ଣ ବିଚ୍ଛେଦେ ବିହ୍ୱଳ ।
କନ୍ୟାଭାବ ଯେନ ତନୁଲତା କଲେ କୋଳ ॥
ହାହା ପ୍ରାଣସଖୀଗଣ ଏତେଠାରେ ଥିଲ ।
ମୋତେ ଦେଖି କାହିଁ ତୁମ୍ଭ କ୍ରୀଡ଼ା ଭଗ୍ନ କଲ ॥
ଆମ୍ଭ ଆଶୀର୍ବାଦ ତୁମ୍ଭ ସୁଖପ୍ରଦ ନୋହି ।
ହାହା ପ୍ରାଣପ୍ରିୟେ ମୁଖ ଲୁଚାଇଲ କାହିଁ ॥
ଯେତେ ପୁଣ୍ୟଫଳ ନେତ୍ରେ ଦର୍ଶନ ହୋଇଲା ।
ଛଟକ ମାତ୍ରକେ ଚିତ୍ତ ଅଟକି ରହିଲା ॥
ତୁମ୍ଭ ସାଦୃଶ୍ୟରେ ଗୋପ ନଗରେ ନ ଦେଖି ।
କି ଅବା ଅମରାବତୀ ଅଇଲ ଉପେକ୍ଷି ॥
କାମଛଳେ ଅବୋଧ ନାୟିକା ଗୁଣ ବହ ।
ଆହେ ମିତ କେମନ୍ତ ଦେଖିଲ ତୁମ୍ଭେ କହ ॥
ଛଟକ ଭଙ୍ଗିମା ଠାଣି ପୁଲକଇ ଦେହ ।
କଣ୍ଟକ ମାତ୍ରକେ ଏତେ ଲଗାଇଲ ମୋହ ॥
ଯେବଣ ବିମ୍ବୋଷ୍ଠି ମିତ ଥିଲା ଏହିଠାଇଁ ।
ଆଗୋ ସଖୀ ଚାହାନ୍ତେ ବଦନ ନେଉଟାଇ ॥
ଚରମ ଦେଶରେ ଚନ୍ଦ୍ର ଉଦେ ଶୋଭା ଦିଶି ।
ଦେଖୁଁ ଦେଖୁଁ ଲତା ଭିତରେକ ଗଲା ପଶି ॥
ଲତାଜାଳ ନୁଆଁଇଣି ଫୁଲ ତୋଳୁଥିଲା ।
ଆମ୍ଭଙ୍କୁ ଦେଖିଣ ବାଳୀ ଛାଡ଼ି ପଳାଇଲା ॥

ଦେଖ ଲତା ଉପରକୁ ଯାଉଅଛି ଟେକି ।
ମୋର ଜୀବ ଘେନି ଏହି ଗଗନେ ଯିବ କି ॥
ଉଚ୍ଚଶିଖେ କର ଯେ ବଢ଼ାଉ ଶୁଭ୍ରକେଶୀ ।
ଦେଖ ଅବନୀରେ ପାଦ ଅଗ୍ର ଅଛି ବସି ॥
ତୋଳନ୍ତେ କୁସୁମ କରୁଁ ଉଛୁଳି ଛୁଡ଼ୁଛି ।
ଊର୍ଣ୍ଣନାଭ ଜାଲ ଯିବା ଛଟକେ ପଡ଼ୁଛି ॥
ଚନ୍ଦନ କୁଙ୍କୁମ ମୃଗମଦ କୁଚ ସଙ୍ଗେ ।
ଲତା ପଲ୍ଲବରେ ଲାଗି ଅଛଇ ସଂଯୋଗେ ॥
ଏ ମୋର ହୃଦୟେ ଆଣି ଲଦସି ହେ ମିତ ।
ଅନଙ୍ଗଅନଳ ଲିଭୁ ସ୍ଥିର ହେଉ ଚିତ୍ତ ॥
କଣ୍ଟକ ଯା ପଟେ ଲାଗି ପାଲଟି ରହିଲା ।
ତରତରେ ଛଡ଼ାଇଣ ଅଳପେ ଚାହିଁଲା ॥
ନୟନ ବିଷମ ବାଣ ମରମେ ବାଜିଲା ।
ନୋହିଲେ ଧରନ୍ତି ଯାଇଁ ଚେତନା ହଜିଲା ॥
ଫଳଫୁଲ ତୋଳିବାରେ ଭୁଜ ତୋଳି ବାମା ।
ଦିଶୁଥିଲା ବନ୍ଧତରେ କୁଚଶମ୍ଭୁସୀମା ॥
କି କହିବ ବଚନରେ ବର୍ଣ୍ଣିବ କେତେ ।
ଦର୍ଶନେ ନିଲପେ ସିନା ରହିଲି ସ୍ତକତେ ॥
ବଟୁ ବୋଲେ ଅଟୁ ଯେଣୁ ନବୀନ ମଦନ ।
ଦେଖି କୁଚଶମ୍ଭୁ ଉପୁ ବାସ ଆଚ୍ଛାଦନ ॥
ଗଉଣୀ ସହିତେ ବନେ ଭିତରେଣ ପଶିଲେ ।
ମାର ନରପତି କର ପୀଡ଼ାକୁ ହାସିଲେ ॥
କୁଆଁରୀ ସ୍ୱବଶ ସେହୁ ଜାଣିଲଇଁ ତାଙ୍କୁ ।
ଦେଖୁଁ ଦେଖୁଁ ଲେଚ୍ଛୁଲେ ତୋ ପରି ପୁରୁଷକୁ ॥
ସୁବଳ ବୋଲନ୍ତି ସେହୁ ନୁହନ୍ତି ସ୍ୱକୀୟା ।
ଦ୍ରବ୍ୟ ସଞ୍ଚୟିନୀ ସେହୁ ପରସେବକୀୟା ॥
ନିଜ ଆତ୍ମସୁଖ ନାହିଁ ପରସୁଖେ ସୁଖୀ ।
ଗନ୍ଧ ପୁଷ୍ପ ଅଶନ ତାମ୍ବୂଳ ସଞ୍ଚି ରଖି ॥
କୃଷ୍ଣ ବୋଲେ ନାଗରୀ ନାରୀଙ୍କ ଯେତେକ ରୀତ ।
ଦେଖା ଦେଇ ଅନୁରାଗ ବଢ଼ାଇ ରହନ୍ତି ॥
ଉତ୍ତମ ସ୍ତ୍ରୀ ଲକ୍ଷଣ ଏ ଦ୍ରବ୍ୟ ସଞ୍ଚୟବ ।
ନିଜକାନ୍ତ ମନସ୍ତାପ କରନ୍ତି ମୋଚନ ॥
କଥା କହୁଁ କହୁଁ ଦୃଷ୍ଟି ଯବୁଦାଗ ପଡ଼େ ।
ଗହାଳ ଦେଖିଲେ ବନ ପଶି ତହିଁ ଲୋଡ଼େ ॥

ପ୍ରାଣପ୍ରିୟେ ମୋର ଏତେ ନିଷ୍ଠୁର ହୋଇଲ ।
ଦରିଦ୍ରରେ ଧନ ଦେଖାଇଣ ତ ହରିଲ ॥
କେଉଁଣେ ଲୁଚିଅଛ ଚନ୍ଦ୍ରବଦନ ଦେଖାଅ ।
ଚକୋର ଲୋଚନେ ସୁଖ ଅମୃତ ଚଖାଅ ॥
ଅନ୍ତରେ ରହିଣ ବାଳୀ ପିଷ୍ଟି ନ ଚଳଇ ।
ମରମ ବଚନ ଶୁଣି ତନୁ ତରଳଇ ॥
କେତେଦୂରେ ପୁଣି ଯେ ଦିଶିଲେ କନ୍ୟାଗଣ ।
ଛପିଛପି ଲତା ଉହାଡ଼ରେ ତିନିଜଣ ॥
ସନ୍ନିଧେ ପ୍ରବେଶ ହୋଇ କହନ୍ତି ବିନୟେ ।
ବନେଶ୍ୱରୀ ହୋଇ ବନବାସୀରେ ନିର୍ଦ୍ଦୟେ ॥
ନିର୍ମଳ ଜଳ ସନ୍ନିଧି ତୃଷାର୍ତ୍ତ ଅଇଲେ ।
ତୃଷା ଶାନ୍ତି ନ କରେ କି ଅନ୍ୟାୟ ହୋଇଲେ ॥
କୃଷ୍ଣର ବଚନ ଶୁଣି ବୃନ୍ଦାଦେବୀ ଭାଷେ ।
ଯେବଣ ଚାତକ ତୃଷା ହରେ ଘନରସେ ॥
ସେ ପୁଣ ଅବନୀ ନୀରେ ଆଦର ନ ବହେ ।
ମର୍କତନାୟକ ହେମ ପିତ୍ତଳେ କି ଶୋହେ ॥
ଶୁଣି କୃଷ୍ଣ ସୁବଳର ମୁଖକୁ ଚାହିଁଲେ ।
ମନ୍ଦ ମନ୍ଦ ହସି ପ୍ରେମବଚନ କହିଲେ ॥
ମଧୁକର ସର୍ବବିଧ କୁସୁମ ଚୁମ୍ବଇ ।
ଭଲ ମନ୍ଦ ମକରନ୍ଦରସରେ ରସଇ ॥
ଭେଦ ନ କଲକୁ ଯେହ୍ନେ ସର୍ବ ପୁଷ୍ପବନ୍ଧୁ ।
ଯୁବତୀରତ୍ନକୁ କେ ପୁରୁଷ ଲଙ୍ଘେ ନିନ୍ଦୁ ॥
ହୁଳହୁଳି ଦୃଷ୍ଟିଗ୍ରନ୍ଥି ଆଣିଲା କଢ଼ାଇ ।
ନୟନେ ଦର୍ଶନେ ମନେ ଉତ୍ସାହ ବଢ଼ାଇ ॥
ମୁଖପଦ୍ମ ସୁଗନ୍ଧ ଆଘ୍ରାଣେ ଆଶା ବଢ଼େ ।
ଅଙ୍ଗେ ଅଙ୍ଗ ମିଶି ବିମ୍ବାଧର ପାନ ଲୋଡ଼େ ॥
ପଞ୍ଚବିଧେ ସୁଖଦକୁ କାରଣ ସୁନ୍ଦରୀ ।
ସ୍ପର୍ଶବିଧେ ଦେଲା ଜୀବନ ହୋଇଲା କି ବଇରି ॥
ସନ୍ତୋଷେ ଯେ ବୁଦ୍ଧ ସଖି କହିବାକୁ ହୋଉ ।
ସୁଫଳ ହୋଇବ ଅଙ୍ଗ ବିଫଳ ଯେ ନୋହୁ ॥
ମୁନିମନମୋହିନୀ ଅପୂର୍ବ କନ୍ୟାଗଣ ।
ଭାଗ୍ୟବଳେ ମିଳିଲୁ ଯେ ତୁମ୍ଭ ସଙ୍ଗତେଣି ॥
ବହୁକାଳ ଅନୁସରି ପାଇଲି ଦର୍ଶନ ।
ସଦୟ ହୃଦୟ ସଖି ହୋଇବା ପ୍ରସନ୍ନ ॥

କୃଷ୍ଣର ବିନୟ ବାଣୀ ଶୁଣି ବୃନ୍ଦାବତୀ ।
କୃତାଞ୍ଜଳି ହୋଇ ପୁଣ କାକୁସ୍ତେ କହନ୍ତି ॥
ବ୍ରଜେନ୍ଦ୍ରନନ୍ଦନ ତୁମ୍ଭେ ଅଖିଳବନ୍ଦନ ।
ଦାସୀ ସଙ୍ଗେ ଇଚ୍ଛା କର କିସ ପ୍ରୟୋଜନ ॥
ଠାକୁରାଣୀ ଅଙ୍ଗ ସଙ୍ଗ ଯେଉଁ ଅଙ୍ଗ ଯୋଗ୍ୟ ।
ହୁଅଇ କି କେବେ ତାହା ପରଗୃହୀ ଭୋଗ୍ୟ ॥
ବୋଲନ୍ତି ନାଗରରୂପ ତ୍ରିଭୁବନ ମୋହୁ ।
ତୁମ୍ଭର ଉପରେ ଠାକୁରାଣୀ ଅଛି କେହୁ ॥
ଏମନ୍ତ ଯେ ଶୁଣି ବୃନ୍ଦା ସ୍ୱରୂପ ପ୍ରକାଶି ।
ବୃଷଭାନୁ ଜେମାଦେବଙ୍କ ଦାସୀର ମୁଁ ଦାସୀ ॥
ତାଙ୍କ ପଦ ନଖରପରେ କେଉର ନୃଶର ।
ଏଥିରେ କି ହେବ ଲୀଳା ଯଶର ବିସ୍ତାର ॥
ବିହର ରାଜକୁମର ରାଜଜେମା ସଙ୍ଗେ ।
କଉତୁକେ କେଳିରସ ବଢ଼ୁ ନାନାରଙ୍ଗେ ॥
ରାଧାଠାକୁରାଣୀ ରୂପ ରୂପେ ପଟାନ୍ତର ।
ଜାମ୍ବୁନଦେ ନୀଳମଣି ଯେମନ୍ତ ସୁନ୍ଦର ॥
ଠାକୁରାଣୀ ନାମ ଯହୁଁ ପଡ଼ିଲା ସଭାରେ ।
କର ଯୋଡ଼ି ସଖୀଗଣ ନମସ୍କାର କରେ ॥
କୋଳାହଳେ ଗାନ୍ତି ଜୟ ଜୟ ଶ୍ରୀରାଧିକେ ।
ଜୟ ବୃଷଭାନୁ ଜେମା ଜୟ ଗାନ୍ଧର୍ବିକେ ॥
ଆଶ୍ଚର୍ଯ୍ୟ ପାଇଣ ହରି ବୋଲେ କହ କହ ।
ଦାସୀ ହୋଇ ତୁମ୍ଭେ ଯେ ଜଗତଜନେ ମୋହ ॥
ଠାକୁରାଣୀ ପୁଣ ତୁମ୍ଭ କେଡ଼େ ଶୋଭାବନ ।
କହ ଗୋ ସୁନ୍ଦରୀ ଶୁଣି ଶରଧା ମୋ ମନ ॥
ବୋଲନ୍ତି ଯେ ବୃନ୍ଦା ପୁଣ ଗୋକୁଳନାଗର ।
ସର୍ବଗୁଣ ଆଶ୍ରିତ ସେ ଲାବଣ୍ୟସାଗର ॥
ମହାଭାବ ସ୍ୱରୂପିଣୀ ଗୁଣେ ଗରୀୟସୀ ।
ଶୋଭା ଲଳଣ ଉପମା ତ ବ୍ରହ୍ମାଣ୍ଡେ ନ ଦିଶି ॥
ଦୃଷ୍ଟାନ୍ତରେ କିଛି ଅବା କହିବି ବଚନ ।
ଶୁଣି ଯେବା ହୋଇଣ ପାରିବ ସ୍ଥିରମନ ॥
ରମା ଉମା ସାବିତ୍ରୀ ଯେ ଶଚୀ ରତି ଆଦି ।
ଯାର ରୂପ ଶୋଭା ଗୁଣ ନିରତେ ସମ୍ବାଦି ॥
ତାରଶୋଭା କହିବାକୁ କାହିଁ ମୋ ଯୋଗ୍ୟତା ।
ଯେଣୁ ଉପଗତେ ତୁମ୍ଭେ ହୋଇଅଛ ଶ୍ରୋତା ॥

ତେଣୁ କଷ୍ଟ କହିବାକୁ ହେବ ଶ୍ରୀରଜନ ।
ପବିତ୍ର ହୋଇଲା ଯେ ସଫଳ ଆଜ ଦିନ ॥
ତ୍ରୈଲୋକ୍ୟମୋହିନୀ ସର୍ବଗୁଣେ ସୁଲକ୍ଷଣୀ ।
ଶୁଦ୍ଧଜାତି ପଦ୍ମିନୀ ତରୁଣୀ ଶିରୋମଣି ॥
ଧାତା ଯେବେ ଏହୁ ଶୋଭା ଗୋଚର ପାଆନ୍ତା ।
ସୁନ୍ଦରୀ ସଂସାରେ ସେ ରଚନା ନ କରନ୍ତା ॥
ଚତୁରୀ ଚଟୁଳ ଶୋଭା ଛଟକ ତାହାର ।
ନୟନ ଜାଣଇ କେତେ ବଚନ ବାହାର ॥
ଶଙ୍କଣ ଗଉର କାନ୍ତି କୋମଳତା ଦେଖି ।
ହୃଦଗଲେ ଚମ୍ପକ କେତକୀ ଭଗ୍ନ ମାଗି ॥
ହରିତାଳଦଳିତ ଅନଳେ ହେମ ଖାସି ।
ତଳଳରେ ଜମ୍ବୁନଦ ଶରଣ ଯେ ପଶି ॥
ଶରଣବହଳ ଆଭରଣ ଅଙ୍ଗ ବହେ ।
କୁଙ୍କୁମାଦି ଲେପନ ସବୁ ଅନୁଗତେ ରହେ ॥
ଶ୍ରୀମୁଖକୁ ଚହିଁ ସୋମ ସମ ଇଚ୍ଛା କରେ ।
କୁମୁଦ ଆକାରେ ସେ ମୃତ୍ତିକା କୋଳେ ଧରେ ॥
ମୋତିପୁଞ୍ଜି ବସନ୍ତି ପ୍ରାନ୍ତପୂକ ଶୋଭା ଜ୍ୟୋତି ।
ବେନମାନେ ତାଟଙ୍କ କ ଶୁକ୍ର ବୃହସ୍ପତି ॥
ଚହିଁ ଚନ୍ଦ୍ରନେସ ଶଙ୍ଖ ମୃଗ ଅଙ୍ଗେ ଧରେ ।
ମୃଦୁହାସ ପିୟୂଷ ସ୍ୱଭାବେ ବର୍ଷ କରେ ॥
ଶତ ବହି ଉଦେ ହୋଇ ଗଗନ ମଣ୍ଡଳେ ।
ଦେଖିଣ କୁମୁଦ ଯେ ହସଇ ଥାଇ ଜଳେ ॥
ବିଶ୍ୱକର୍ମା ବୋଲେ ଶଶୀ ନୋହିଲୁ ସମାନ ।
ଭ୍ରୂଭଙ୍ଗି ଛଟକ ଓଷ୍ଠ ସୁରଙ୍ଗବର୍ଣ୍ଣନ ॥
ପଦଗନ୍ଧ କୁନ୍ଦରଦ ତୋର ହେବ କାହିଁ ।
ଦାନବର ଯୋଗ୍ୟ ତେଣୁ ଭୋଗକରେ ରାହୁ ॥
ଦେବତାଏ ମିଳିଣ ଅମୃତ ବାଣ୍ଟି ନେଲେ ।
ରଜନୀଭ୍ରମଣୀ ଦେଖି ଗୁଡ଼ ପଳାଇଲେ ॥
ମଳିଣ ହରିଣ ଶଶୀ ଦିନୁଦିନ କ୍ଷୀଣ ।
ଠାକୁରାଣୀ ଚରଣରେ ପଶିଲା ଶରଣ ॥
ଏକ ଏକ କଳା ମିଶି ନଖରଣେ ରହେ ।
ଅନୁକ୍ରମେ ପଞ୍ଚଦଶ କଳା ସେବି ଶୋହେ ॥
ମହତ୍ତ୍ୱ ସ୍ପରଶେ ଶଶୀ ଦେବଙ୍କୁ ଦୁର୍ଲ୍ଲଭ ।
ଶେଷକଳା ଶିରରେ ବହିଲେ ମହାଦେବ ॥

ମୃଗାକର ଧରଣ ଯେ ତାଣ୍ଡବେ ପ୍ରମୋଦେ ।
ବ୍ରହ୍ମା ଦେଖି ଲୋଭିତ ଯେ ଚରଣ ପ୍ରସାଦେ ॥
ଶୁକ୍ଳାଂଶୁ ଯେମନ୍ତ ରବିହୋଇ ଶତାକାନ୍ତି ।
ଶୀତଗୁଣ ପବନ ଭୁବନେ ନେଲେ ବାଣ୍ଟି ॥
ସ୍ତନ୍ୟପିଣ୍ଡ ତପନ ଯେ ଅଙ୍ଗେ ଆଲିଙ୍ଗନ ।
ସ୍ୱଧାନାମ ଅଙ୍ଗୀକାର କଲେ ଭଗବାନ ॥
କୃଷ୍ଣପକ୍ଷ ପଞ୍ଚଦଶ ତିଥି ଯେ ହୋଇଲେ ।
ଦେବଗୁରୁ ଜଉତିଷ ପାଞ୍ଜିରେ ଲିହିଲେ ॥
କଳକଣ୍ଠ ମଜନ ବ୍ରତରେ ତପେ ଥିଲା ।
ଏହି ପୁଣ୍ୟଦିନ ତିଥି ନାମେ ଡାକ ଦେଲା ॥
ସୃଷ୍ଟି ପ୍ରମୋଦିତ ମନ୍ଦ ମଳୟ ପବନେ ।
ମଦନବର୍ଦ୍ଧନ ନବପଲ୍ଲବ କାନନେ ॥
ଚର୍ବ ନେଇ ଶଶୀ ଯହିଁ ଚରଣେ ରହିଲା ।
ତେଣୁ ଠାକୁରାଣୀ ମନେ ସୁଦୟା ହୋଇଲା ॥
ପାଦପଦ୍ମ ମକରନ୍ଦ ଆହ୍ଲାଦ ପାଇ ।
ଦ୍ୱିତୀୟକଳା ନବଚନ୍ଦ୍ର ନଭେ ଉଦ୍ଭା ହୋଇ ॥
ଦିନୁଦିନ ବୃଦ୍ଧି ଜନେ ଶରଧା ବଢ଼ାଇ ।
ଦେଖି ବହ୍ନି ରକ୍ଷଣାର୍ଥେ ମଣ୍ଡଳ ବେଢ଼ାଇ ॥
ଦ୍ୱିଜରାଜ ପଦେ ଅଭିଷେକ କରାଇଲେ ।
ଗଙ୍ଗାନୀର ନଉଡ଼ଣ ଛତ୍ର ଧରାଇଲେ ॥
ସୁଧାର ସେ ବିନ୍ଦୁ ପଡ଼େ ଅଭିଷେକ ଜଳେ ।
ନାନା ରତ୍ନବୃଷ୍ଟି ତାରା ଗଗନ ମଣ୍ଡଳେ ॥
ରଜନୀରମଣୀ କୋଳେ ପାଉଅଛି ଶୋଭା ।
କିରଣ ଅମୃତ ଦଶଦିଗେ ପୂରେ ପ୍ରଭା ॥
ବହାଚନାବେଳେ ତାର କନ୍ୟା ମୋହ ହୋଇ ।
ତିଥି ଦେଇ ପ୍ରଜାପତି ଶ୍ୱଶୁର ବୋଲାଇ ॥
ରତିପତି ପ୍ରୀତି ଇଚ୍ଛି ମିତ୍ର ଯେ ହୋଇଲା ।
ଠାକୁରାଣୀ ଆଶ୍ରେ ଏତେ ସମ୍ପଦ ପାଇଲା ॥
ବୃନ୍ଦା ତହିଁ ଶ୍ରୀ କୃଷ୍ଣ କରକର କାଯୁ ।
ଲୋଚନ ଅଧରସୁଧା ସ୍ୱେଦ ମିଶି ବହେ ॥
ଶ୍ୟାମକୁଣ୍ଡ ଠଳ ହୋଇ ପ୍ରବାହ ଆଗମେ ।
ମନ୍ଥ ନଳା ଫିଟି ରାଧାକୁଣ୍ଡର ସଙ୍ଗମେ ॥
କମ୍ପମାନ ପୁଲକ ବିବର୍ଣ୍ଣ ହରି ଦେଖି ।
ସାତ୍ତ୍ୱିକ ବାଧିଲା ଯହିଁ ବୃନ୍ଦା ଉପଲକ୍ଷି ॥

ବିସ୍ମୟରେ କହିବ ଯେବେ ସର୍ବାଙ୍ଗ ବର୍ଣ୍ଣନା ।
ଦ୍ରବି ସର୍ବ ଅଙ୍ଗ ଜଳ ହୋଇଯିବ ସିନା ॥
ଏତେ ବିସ୍ମରଣ ପଶୁରଇ ପାସୋରଇ ।
କି କାରଣେ ରୋମ ପୁଲକିତ ଲୁହ ବହି ॥
ବୋଲେ ହରି ନୁହେ ସୁନ୍ଦରୀ କହିଲଟି ଯାହା ।
ଶ୍ରବଣେ ଶୁଣି ନୟନେ ଉଦ୍‌ଗାରିଲ ତାହା ॥
ଶରୀର ମଧ୍ୟରେ ସାର ବୋଲଉ ଯେ ତୁହି ।
ଅପୂର୍ବ ସୁନ୍ଦରୀ ଶୋଭା ଶୁଣୁଅଛୁ ମୁହିଁ ॥
ହୃଦୟେଣ ସମ୍ଭାଇଣ ପୁଲକଇ ଅଙ୍ଗ ।
ତୁହି ବାରେ ଦେଖିବାକୁ ନୋହିଲୁ ଯା ଯୋଗ ॥
ଏହି ଅପମାନେ ନେତ୍ର ଲୋତକ ତେଜଇ ।
କହ ଏବେ କେମନ୍ତ ଏ ଶାନ୍ତିକି ଭଜଇ ॥
ହରି ବୃନ୍ଦା କଥା ହେଉ ବଟୁ ଭଦ୍ରା ସଙ୍ଗେ ।
କଉତୁକେ ସମାସ୍ୟା ଯେ ପଚାରନ୍ତି ରଙ୍ଗେ ॥
ଛୁଇଁ ତୁହିଁ ପରଶରେ ଶୁଣି କେ ଦ୍ରବଇ ।
ଚନ୍ଦ୍ର ତୁହିଁ ଚନ୍ଦ୍ରକାନ୍ତମଣି ଯେ ସ୍ରବଇ ॥
ଅନଳ ପରଶ ଲାଗି ତରଳଇ ଘୃତ ।
କୃଷ୍ଣ ବଂଶୀସ୍ୱନ ଶୁଣି ପାଷାଣ ତେମନ୍ତ ॥
ତହୁଁ ଏ ଅଧିକ ବଟୁ ବୋଲେ ଇଙ୍ଗିତରେ ।
ସୁବଳକୁ ହସି କହେ କରତାଳି ମାରେ ॥
ବଟୁ କଟୁ ବଚନରେ ଛଳ ସଖୀ ବୋଲେ ।
ଅନେକ କାଳରୁ ଶିଳା ଜଳେ ବୁଡ଼ିଥିଲେ ॥
କେବେହେଁ ଯେ ଅନ୍ତଃତାର ଜଳରେ ନ ବୁଡ଼େ ।
ପ୍ରବଣରତନ ହିଆ କାମାନଳେ ପୋଡ଼େ ॥
ଶ୍ୟାମଘନ ଲାବଣ୍ୟ ସଲିଳ ସଙ୍ଗ ମାନେ ।
ଏକ ହୋଇ ନିମଜ୍ଜିଣ ଯିବେ ଗାନେ ଗାନେ ॥
ଶ୍ରୀପ୍ରିୟା ବୋଲେ ଆମ୍ଭେ ପୟଃପେଟୀର ଲକ୍ଷଣ ।
ତୁମ୍ଭେ ବହ ପକ୍ୱଫଳ ରସାଳର ଗୁଣ ॥
ବୋଲଇ ଲେଳିହତା ମୋହ ତହୁଁ ଶୁଣ ବଟୁ ।
ଜିହ୍ୱା ସେ ଜାଣଇ ସ୍ୱାଦୁ ନ ଜାଣଇ ଚଟୁ ॥
କ୍ଷୀରର ସଙ୍ଗତେ ନୀର ଅଭେଦ ମିଶଇ ।
ଘୃତ ମିଶିଲେଣି ଭାସି ବେଗଳ ଦିଶଇ ॥
ସଖୀ ସେ ଜାଣନ୍ତି ରସ ମଧୁର ଗୃହସ୍ଥ ।
ତୁମ୍ଭେ ସଖା ଜାଣ ବନେ ରଖିବା ବାଛୁରୀ ॥

ବୋଲଇ ସୁବଳ ସବୁ ଜାଣିବା ଏଠାଇଁ ।
ବୃଷଭାନୁକୁମାରୀଙ୍କ ପାଶଲେ ଭେଟାଇଁ ॥
ବୃନ୍ଦା ବୋଲେ ଶୁଣି ବନ୍ଧୁ ଗଲେଣି ତରଳ ।
ଦେଖିଲେ ଧଇର୍ଯ୍ୟ କେହ୍ନେ ପାରିବେ ସମ୍ଭାଳ ॥
ମୁଖଚନ୍ଦ୍ର ମଣ୍ଡଳ ହିମାଦ୍ରି କୁଚ ଭେଦ ।
ଲାବଣ୍ୟ ନିର୍ମଳଜଳ ବହେ ରୂପନଦୀ ॥
ପଞ୍ଚଶର ବରଷାରେ ବଢ଼ି ଲଙ୍ଘେ କୂଳ ।
ନେତ୍ରାପାଙ୍ଗ ତରଙ୍ଗରେ ଭ୍ରୁକୁଟୀ କୁଟିଳ ॥
ମନ୍ଦହାସ ସ୍ରୋତ ଅତି ବଚନ ଗମ୍ଭୀର ।
ତ୍ରିବଳୀ ଘୂର୍ଣ୍ଣନାଭି ଭଉଁରୀ ତୋପର ॥
ପଡ଼ି ବୁଡ଼ି ଗଡ଼ି ଅସମ୍ଭାଳେଣ ଭାସିବ ।
ଅଣକତ କାୟେ କାମ କୁମ୍ଭୀର ଗ୍ରାସିବ ॥
ବିବେକ ଯେ କୂଳ ତରୁ ହୋଇବ ଭଞ୍ଜନ ।
ଆସି ନ ପାରିବେ ତହିଁ ହୋଇବେ ମଗନ ॥
ଉଦ୍ଧାରିବା ପାଇଁ ଆମ୍ଭେ ସର୍ବେ ଯୋଗ୍ୟ ନୋହିଁ
ଯେତେବେଳେ ତୁମ୍ଭେ ଦୋଷ ନ ଦେବଟି ଆଉ ।
ଶୁଣି କୃଷ୍ଣ ମୋଦେ ଗଦଗଦେଣ ବଚନ ।
ବୋଲେ ମୋ ନୟନ-ମୀନ ସେ ସୁଖ ସଦନ ॥
ହରଷ ମାନସ ହଂସ କ୍ରୀଡ଼ାରେ ସତତ ।
କୁଚ-ତୁମ୍ବୀ ଅବଲମ୍ବେ ସୁମତି ତରତ ॥
ଏତେ କହି ବୃନ୍ଦାର ଯେ ହସ୍ତକୁ ଧରିଲେ ।
କୃତ କୃତ ହୋଇ ହରି ଶିରେ ଲଗାଇଲେ ॥
ବୋଲନ୍ତି ଜଗିଣ ଥିବ ଏହି କୁଣ୍ଡ କୂଳେ ।
ଦର୍ଶନ ପାଇବ କାଲି ସୂର୍ଯ୍ୟପୂଜା ବେଳେ ॥
ଏହିଠାରୁ ସଖା ହେନ ଆଗକୁ ନ ଯିବ ।
ଜଟିଳା ଜାଣିଲେ ଖେଦସାଗରେ ମଜ୍ଜିବ ॥
ଏତେ କହି ବୃନ୍ଦାଦେବୀ ଯେଝାସ୍ଥାନେ ଗଲେ ।
କୁଣ୍ଡ ଦେଖି କୃଷ୍ଣ ମନେ ଆନନ୍ଦିତ ହେଲେ ॥
ନିର୍ମଳ ଶୀତଳ ଜଳ ସ୍ୱାଦୁ ସୁପବିତ୍ର ।
ନିଜ ନାମ କୁଣ୍ଡେ ହରି ହୋଇଲେକ ମିତ୍ର ॥
ମଧ୍ୟେ ନଳା ଫିଟି ରାଧା କୁଣ୍ଡରେ ମିଶଇ ।
ଦେଖି ହସି କୃଷ୍ଣେ ମଧୁମଙ୍ଗଳ ଭାଷଇ ॥
କୁଣ୍ଡ ରୂପେ ବେନି ଅଙ୍ଗ ହୋଇଛି ସଙ୍ଗମ ।
ଆମ୍ଭମାନଙ୍କର ଏ ତ ଅଟଇ ଅଗମ୍ୟ ॥

ଦେଖ ହେ ସୁବଳ ନଳା ମଧ୍ୟେ ବେନିଜଳ ।
ବରକନ୍ୟା କର-ବନ୍ଧନ କି ଗଣ୍ଠି ଆଳ ॥
ଶତପତ୍ର-ମୁକୁଟ ଯେ ଜଳ ମାଳ ନାଳେ ।
ଅସରଳା ମୁକ୍ତା ଯେ ବରଣ ପୁଷ୍ପ ମାଳେ ॥
କମଳ କୋରକେ ଭୃଙ୍ଗ ଶଙ୍ଖଧ୍ୱନି କରେ ।
ବରହାରେ ସୁମଙ୍ଗଳ ବାଦ୍ୟ ଧ୍ୱନି ସ୍ଫୁରେ ॥
ଜଳ ତନ୍ତୁ ଲତା ମୋଦେ କୁସୁମ ବର୍ଷନ୍ତି ।
ଦେଖ ମଧୁ ଧାରା ମଧୁ ହରଷେ ସ୍ରବନ୍ତି ॥
କାମାନଳେ ହୋମସ୍ଥଳେ ଅବଗା ଭଜିଲେ ।
ଶୁକ ଆଦି ଦ୍ୱିଜ ବେଦବଚନ ପଢ଼ିଲେ ॥
ନବଦଳ ବକୁଳ ଭ୍ରମର ଖଦ୍ୟୋତଶ୍ରେଣୀ ।
ଅର୍ଘ୍ୟଘେନି ହରଷେ ପଦ୍ମିନୀ ସୁଲକ୍ଷଣୀ ॥
ରଜ ସାର୍ଦ୍ଧ୍ୟ ଅକ୍ଷତ ତଣ୍ଡୁଳ ପତ୍ରାବଳୀ ।
କେଶରନିକର ଅଳି ଧ୍ୱନି ହୁଳହୁଳି ॥
ଆଳତି ବଢ଼ାଇ ଧୀର ପବନ ଗତିରେ ।
ଜଳେ ଜଳବିନ୍ଦୁ ଝଳୁ ମୋତି ସଦୃଶରେ ॥
ଦୀପଦଣ୍ଡି ମୃଣାଳ ଏ ମଣ୍ଡପ ଯେ ମନ ।
କୁନ୍ଦବେଣ୍ଟ ପଲ୍ଲବ ଏ ବସନ ଅଶନ ॥
କହିଁକତି ମୋତିଗଡ଼ ଅଛଇ ବିଧାନ ।
ସଙ୍କୁଚିତେ କନ୍ୟାସଖୀ କୁମୁଦିନୀଗଣ ॥
ମଚ୍ଛ କଚ୍ଛପାଦି ବରଜାତିଏ ଅଛନ୍ତି ।
ମୁଖ ଦେଖାଇଣ ପୁଣ ପଚ୍ଛକୁ ଘୁଞ୍ଚନ୍ତି ॥
ଗନ୍ଧପୁଷ୍ପ ଆମୋଦିତେ ହୋଇଛନ୍ତି ଧନୀ ।
ହଂସକୁଳ ଆତଯାତ ପଦ୍ମନାଡ଼ ଘେନି ॥
ସମୁଧା ସମୁଧି ହୋଇ ବସ୍ତ୍ରକୁ ବଢ଼ାଇ ।
ଜଳଜନ୍ତୁ ଯୁଅଖେଳା କଉଡ଼ି ପକାଇ ॥
ବେନି ଅଙ୍ଗ ତରଙ୍ଗ ଚଞ୍ଚଳ ଉତ୍ସାହରେ ।
ପଦ୍ମିନୀ କୋଳରେ ମଧୁଶଯ୍ୟା ମଧୁକରେ ॥
କୁଣ୍ଡରୂପେ ରାଧା ମାଧବର ବସ୍ତ୍ର ଦେଖି ।
ମଧୁମଙ୍ଗଳ ସୁବଳେ କହେ ଉପଲକ୍ଷି ॥
ଆମ୍ଭଙ୍କୁ ତ ଭୋଜ କୃଷ୍ଣ ଦେବାର ଉଚିତ ।
ଶୁଣି ହରି ତନୁ ଭାବେ ହୁଏ ପୁଲକିତ ॥
ପରିମଳ କୂଳ ଦେଖି ଠାବେ ଠାବେ ବୁଲି ।
ନିଜକୁଣ୍ଡ କୂଳେ ମଣି ଜ୍ୟୋତି ଦଶେ ଝଳି ॥

କୁସୁମ ଗହ୍ୱରପରେ ଅଛି ଥୁଆ ହୋଇ ।
ଦେଖି ହରି ନୟନ ବେନି ସଖାଙ୍କୁ ଚାହାଇ ॥
ବୋଲେ ବନ୍ଧୁ ବସ୍ତ୍ର ଯଉତୁକ ତୁମ୍ଭ ପୁଣି ।
ସୁବଳ ବୋଲଇ ଏହୁ କନ୍ୟା ଚୂଡ଼ାମଣି ॥
ବଦୁଧ ବୋଲଇ ଏହୁ କନ୍ୟାର ଏ ଦୂତି ।
ଆସିଣ ତୁମ୍ଭରେ ଆଗେ ଲଗାଉଛି ପ୍ରୀତି ॥
ଅମୂଲ୍ୟ ଏ ଚିନ୍ତାମଣି ଲଭିଲ ଦୁର୍ଲ୍ଲଭେ ।
ସୁବର୍ଣ୍ଣେ ଘଟିତ ହୋଇବ ସୁଲଭେ ॥
ପୁନ ପୁନ ହରି ମଣି ପ୍ରଶଂସେ ମୋଦରେ ।
ସୁବର୍ଣ୍ଣ ଧାଗାରେ ଗୁନ୍ଥି ଲମ୍ବାଇ ହୃଦରେ ॥
ଏମନ୍ତେଣ ରବି ମେରୁ ଉହାଡ଼କୁ ଗଲେ ।
ବାସ୍ତୁ ବାଳ ନୟନ ଗୋପେ ପ୍ରବେଶ ହୋଇଲେ ॥
ଜନନୀ ଯାଳନ୍ତି ପୁତ୍ର ଅତି ସ୍ନେହ ବହି ।
ଆଜ ତ ଉଚ୍ଛୁର ବାପ କଲ କାହିଁପାଇଁ ॥
ବୋଲନ୍ତି ଶ୍ରୀକୃଷ୍ଣ ଅମା ବସ୍ତ୍ର ଥିଲେ ହଜି ।
ବିଳମ୍ବ ହୋଇଲା ତେଣୁ ଆଣନ୍ତେଣ ଖୋଜି ॥
ବଳରାମ ମୋର ସଙ୍ଗେ ଅଭେଟ ହୋଇଲେ ॥
ବଛା ଲୋଡ଼ି ଆଣନ୍ତେଣ ବହୁତ ବୋଇଲେ ॥
ସେହୁ ନ ରଖନ୍ତୁ ବଛା ରଖିବି ମୁଁ ଏକେ ।
ଶୁଣି ଯଶୋବନ୍ତୀ ଲୁହ ପଡ଼େ ଥକେ ଥକେ ॥
ଝିଠୀ ଦଉଛଇ ବାଳେ ଯାହା ଅଛି ଲବ୍ଧ ।
ଭୁଞ୍ଜିବୁ ତା ସିନା ମୋର ବୋଲେ କସ୍ତ ହୋଇ ॥
ରାମ ରାଜା ହୋଇ ଗୋପେ ସମ୍ପଦ ଭୁଞ୍ଜିବ ।
ତୋର କର୍ମେ ଅଛି ଦେହ ଦୁଃଖେ ଗଞ୍ଜି ହେବ ॥
ଏତେବୋଲି ଯଶୋବନ୍ତୀ ଗୃହ ଚରସ୍ଥରେ ।
ସଖା କମଳେ ଯାଇ ପୁଣ ଗୋଦୋହନ କରେ ॥
ପୂର୍ବସନେ ସଖା କଲେ ନୃତ୍ୟଗୀତ ରଙ୍ଗେ ।
ଷରସ ଭୋଜନ ବନ୍ଧୁ ସୁବଳର ସଙ୍ଗେ ॥
ନେତ ତୁଳ ଗଜଦନ୍ତ ପଲଙ୍କେ ପହୁଡ଼ି ।
ରାଧା ବାସରେଣ ନିଦ୍ରା ନୟନେ ନ ମାଡ଼ି ॥
ମଧୁମଙ୍ଗଳର ସଙ୍ଗେ ବାହୁର ଏକାନ୍ତେ ।
ରାଧା ଯନ୍ନିଧିକ ଭେଦ କରିବା କେମନ୍ତେ ॥
ବେଶରେ ନୃପତି ଜେମା ସୂର୍ଯ୍ୟପୂଜା କରେ ।
ଆମ୍ଭଙ୍କୁ ଦେଖିଲେ ପୁଣ ବକ୍ରଗୁଣ୍ଠ୍ୟ ଧରେ ॥

ଦେଖାଦେଖି ପରିଚୟ ଆଗରୁ ନୋହିଛି ।
ଦେଖିଲେ ଅନ୍ତର ହୁଏ ନ ପୁଣି ମୃଗାକ୍ଷୀ ॥
ବଧୂ ଆକଟନ୍ତି ଶାଶୁ ନଣନ୍ଦ ତାହାର ।
ଜାଣିଲେ ସେ ନ କରିବେ ମନ୍ଦିରୁ ବାହାର ॥
ଏଥିକୁ ଉପାୟ ଆଗେ କରିବା ବିଧାନେ ।
ବଟୁ ବୋଲେ ହରି ତୁମ୍ଭେ ଶୁଣ ସାବଧାନେ ॥
ଚତୁରା ନାପିଏ ଅଛି ଦୂତି ତାର ନାମ ।
ତାହାକୁ ପେଷିଣ ସେ ଜାଣିବା ସବୁ ମର୍ମ ॥
ବୋଲେ ହରି ଚାଲ ଯିବା ତାହାର ସଦନେ ।
ଏତେବୋଲି ବାହାର ହୋଇଲେ ବେନିଜନେ ॥
ଦୂତିକା ମନ୍ଦିରେ ଯାଇ ହୋଇଲେ ପ୍ରବେଶ ।
ଗୀତ ଜାଳି ବସି ବାଳୀ ମନରେ ହରଷ ॥
ରାଧା ଅନୁରାଗ ବାସ ଅଳଙ୍କାର ପାଇ ।
କୃଷ୍ଣଙ୍କୁ କେମନ୍ତେ ଏକା କରି ଦେଖିବଇଁ ॥
ରାଧା ଶ୍ରଦ୍ଧା କାମବାଧା ବେଦନା କହିବ ।
କେମନ୍ତେ ମୋ ଇଷ୍ଟଦେବ ସଫଳ ନୋହିବ ॥
ଏମନ୍ତେ ଏ ଦୁଇ ମିତ ଦେଖିଣ ପୁରତେ ।
ଶୁଭ ଯୋଗ ସଙ୍କୁନ୍ୟରେ ଭେଟିଲା ତୁରିତେ ॥
ଚରଣ ପଖାଳି ଦୂତି ଆସନେ ବସାଇ ।
କେତେ ବିନେ କଲା ଧୀରେ ବଚନ ଭାଷଇ ॥
ବୋଲଇ ବିଦୁଷ ଶୁଣ ଚତୁରୀ ସିହାଣି ।
ଏ ନନ୍ଦନନ୍ଦନ ରାଧା ରୂପ ଗୁଣ ଶୁଣି ॥
ବିରହକାତର ହୋଇ ଚିତ୍ତ ଅଟକାଇ ।
ମନୋଭବ ସନ୍ତାରେଣ କଲି କଟକାଇ ॥
ସାହା ହୋଇ ଚନ୍ଦ୍ରବଦନୀକି ଭେଟାଇବ ।
ମହାଘୋର ମଦନ ଅନ୍ଧାର ତୁଟାଇବ ॥
ଶୁଣି ଦୂତି ସ୍ୱରୂପ କହଇ ଏଅନ୍ତରେ ।
ତୁମ୍ଭ ପାଇଁ ବିରହିଣୀ ରାଧା ସନ୍ତତରେ ॥
ମନମତ୍ତ କରି ଲଜ୍ଜା ଅଙ୍କୁଶ ନ ମାନି ।
ଗୁରୁଜନେ ବଞ୍ଚାଇଣ ଲୁଚଇ ସଜନୀ ॥
ଗୋବତ୍ସା ଚରାଉ ଯେଉଁ ମୁରଲୀ ବଜାଅ ।
ନ ଦେଖି ବଦନେ ଥିଲେ ମନକୁ ମଜାଅ ॥
ତୁମ୍ଭ ପାଦପଦ୍ମ ଚିନ୍ତ ରତ ଆରାଧନେ ।
ସୂର୍ଯ୍ୟ ଛଳେ ପଦ୍ମରୂପ ପୂଜଇ ବିଧାନେ ॥

ତୁମ୍ଭ ଗୋଚାରଣ ଲୀଳା ଶବପଟେ ଲେଖି ।
ସୁଖୀ ହୁଏ ନଟବର ବେଶ ଛବି ଦେଖି ॥
ସେହିରୂପ ନୟନରେ ଦେଖଇ ସ୍ୱପନ ।
ବୃନ୍ଦା ତହୁଁ ଶୁଣି ପୁଣି ପ୍ରସନ୍ନ ଲପନ ॥
ବେଳୁବେଳ ଅନୁରାଗ ଅନ୍ତରେ ବଢ଼ଇ ।
ମୋହ ଯାଇ କ୍ଷଣେ କ୍ଷଣେ ଧରଣି ପଡ଼ଇ ॥
ତୁମ୍ଭର ସଙ୍ଗତେ ଭେଟ କରାଇବା ପାଇଁ ।
ଅଳଙ୍କାର ବସନ ଅଛଇ ଦେଖ ଦେଇ ॥
ଆସିଣ ତୁମ୍ଭଙ୍କୁ ଦେଇ ଭେଟି ନ ପାଇଲା ।
ଅନୁସରି ବନରେ ଅନେକ ଦୂର ଗଲା ॥
ଖେଦବଳରେ ଆସି ପୁରେ ବସିଛି ମନାସେ ।
ଦରିଦ୍ର ଅମୂଲ୍ୟ ନିଧି ପ୍ରବେଶ ମରମେ ॥
ନବପ୍ରିୟ ଭାବ ଅନୁରାଗରେ ଗରଦ ।
ଦୂତି ମୁଖୁଁ ଶୁଣି କୃଷ୍ଣ ପୁଲକଇ ଦେହ ॥
ଭରଷା ବଳିଲା ଉଲ୍ଲାସରେ ଛନ୍ନ ଛନ୍ନ ।
ଅନୁଗତ ଭାବ ଉଦବେଗ ଘନ ଘନ ॥
ହେମହାର ଦେଇ ଗଳାରୁ କାଢ଼ିଦେଲେ ।
ଅନେକ ବିନୟେ ମିଠ ବଚନ କହିଲେ ॥
ମନୋବନ୍ଦୀ-ଗଡ଼-ସନ୍ଧି କବାଟ ଫେଡ଼ିଲେ ।
କାମାନଳ ଦହନରେ ଅମୃତ ଇଡ଼ିଲେ ॥
ଚାଲ କେମାଦେଈ ପାଶେ ଥିବ ଯେଉଁଠାଇଁ ।
ଦାସୀ ବେଶ କରି ମୋତେ ଆଣିବ ଭେଟାଇ ॥
ଦୂତି ବୋଲେ ଅନ୍ତଃପୁର ଆକଟ ଅପାର ।
ନାନାରୂପେ କଇତବେ ପଶି ତ ନ ପାର ॥
ଯେ ଅଗମ୍ୟ କଥା ବାବୁ କରିବାକୁ କହ ।
ମାସ ଉପବାସୀ ହୋଇ ପାରଣା ନ ସହ ॥
କାଲି ବନେ ସୂର୍ଯ୍ୟପୂଜା ବେଳେ ଭେଟହେବ ।
ଏହି ରାତିରକ ମାନ ଦୁଃଖେ ସୁଖେ ଥିବ ॥
ଏତେ ବୋଲି ହାତ ଧରି ପାଚେରିଟି ଆସଇ ।
ବୋଧି କହି ଶୟନ ମନ୍ଦିରେ ପ୍ରବେଶଇ ॥
ଏମନ୍ତେ ରଜନୀ ପାହି ତପନ ଉଦୟେ ।
ନାନ୍ଦୀମୁଖୀ ଆସି ମିଳେ ବଳରାମ ଠାଏ ॥
ମଧୁର ବଚନେ ମନ ପ୍ରମୋଦ କରାଇ ।
ଏ ଗୋପ ନଗରେ ପାଟଛନ୍ଦକୁ ଧରାଇ ॥

ବୃଦ୍ଧ ପିତା ଭରା କରୁ ଉପହାସ କରାଅ ।
ଏହା ନ କରନ୍ତ ବନେ ବାଛୁରି ଚରାଅ ॥
ବନ୍ଧ ଦେଖା ଦେଖି ଯାନ କମ୍ପା ନ କରିବ ।
ଏତେ ଜଞ୍ଜାଳକୁ ପିତା କେମନ୍ତେ ପାରିବ ॥
ଗୋଧନ ପାଳନ୍ତ ଗୋପ ଶାନ୍ତାହିଁ କରିବ ।
ତେବେ ମିନା ନନ୍ଦ ଅଶକତରୁ ତରିବ ॥
ଜଂପ ଆଜ୍ଞାନ୍ତେ ଆପଣେ ଆସିଅଛୁ ନେଇ ।
ଆଜ ମିଳିବ ମଥୁରା ସୁନାଆଁ ଧନ ଦେଇ ॥
ଯାଜ ଉପଯୁର କର ତୁମ୍ଭେ ଆଜ ଯାଇ ।
ଏକା ବାଳମେଳେ କୃଷ୍ଣ ରଖ୍ ବଛୁ ଗାଈ ॥
ହଉ ବୋଲି ବଳରାମ ସନମତ କଲେ ।
ଶ୍ରୀଦାମକୁ ଘେନିଣ ଆସ୍ଥାନ ତେଜି ଗଲେ ॥
ତହୁଁ ନାନ୍ଦୀମୁଖୀ ପାଇଁ କୃଷ୍ଣ ପାଶେ ମିଳି ।
ବୋଲେ କାଲି ସହିଁକି ଉଛାହ ଅଛୁ ବଳି ॥
ଠାକୁରାଣୀ ଆଜ୍ଞା କରି ସୁଫଳ ହୋଇବ ।
ବଳାଇ ରହିଲେ ଆଜ ଏକା ତୁମ୍ଭେ ଯିବ ॥
ଶୁଣି କୃଷ୍ଣ ହରଷକୁ କେ ପାରିବ କହି ।
କାନନେ ଗମନ ନାନ୍ଦୀମୁଖୀ ମୁଖ ଚାହିଁ ॥
ଗୁରୁ ପୁଷ୍ୟା ମାଧବ ଦିସ ରାଧା ନଷତରେ ।
ସିଦ୍ଧଯୋଗ ହେବ ଶୁଭ ମିଥୁନ ଲଗ୍ନରେ ॥
ଦିନେଶ ଦିବସ ଯତାଇଣ ମେଶଭୋଗ ।
ବସନ୍ତ ସମୀର ଧୀର ଅନୁକୂଳ ଯୋଗ ॥
ଗୋବତ୍ସ ଗୋପାଳ ବାଳ ଘେନି ସଙ୍ଗେ ଚଳି ।
ଗନ୍ତପଥ ଅନୁସରି କୁଣ୍ଡ କୂଳେ ମିଳି ॥
ବତ୍ସ ରଖି ନାନାଲୀଳା ରଙ୍ଗେ ବିହରେ ।
କେମାଦେଶ ଗମନ ପଥକୁ ଅନୁସରେ ॥
ଏଥି ଅନନ୍ତରେ ରାଧା ପାଳିଶ ମିଳେ ଦୂତି ।
କହଇ କୃଷ୍ଣ ଚରିତ ଅନ୍ତରଙ୍ଗ ପ୍ରୀତି ॥
ଏ ତୁମ୍ଭର ରୂପଗୁଣ ବୃନ୍ଦା ତହୁଁ ଶୁଣି ।
ଯେତେ ସୁଖ ଭୋଗ କୃଷ୍ଣ କରୁହିଁ ନ ଜାଣି ॥
କିଶୋର ବୟସ ନବ ବିରହ କାତରେ ।
ଲଳିତ ଲହୁଳି ଅଙ୍ଗ ଅନଙ୍ଗ ଘାତରେ ॥
ତୋର ନାମ ସେନା କରି ରଣେ ଅଛୁ ରହି ।
ଅହର୍ନିଶ ଭାବେ ପଦ୍ମ ଚନ୍ଦ୍ରମାକୁ ଚାହିଁ ॥

ସାହା ହୋଇ ଦାରୁଣ ମଦନ ଭୟ ଖଣ୍ଡ ।
ନୋହିଲେ କରିବ କାଣ୍ଡେ ଖଣ୍ଡ ଖଣ୍ଡ ପିଣ୍ଡ ॥
ଗୋବତ୍ସ ଚରାଇ ବନେ ବସି କହ୍ନୁ ଅଛୁ ।
ବିଳମ୍ବ ନ କର ବେଗେ ଚଳ ଗୋ ମୃଗାକ୍ଷି ॥
ଦୂତି ତହୁଁ ଶୁଣି ପ୍ରାଣନାଥର ବିରହ ।
ଉତ୍କଣ୍ଠିତା ହୋଇ ଘେନ ସଜନୀ ସମୂହ ॥
ସ୍ନାନ ସୁବେଶ ହୋଇଣ ଦେବାର୍ଚ୍ଚନେ ବସେ ।
ମଙ୍ଗଳ ଅର୍ଚ୍ଚନେ ହୁଳହୁଳି ଯନ୍ତ୍ରବାଜେ ॥
ଜୟଶଙ୍ଖ ମହୁରୀ କାହାଳି ସାନାରବ ।
ଉର୍ମ୍ମି ତାଳ ଅମୃତ ଘେନିଣ ଯେଝା ଯେଛା ॥
ଖଦି ପଟା ଭ୍ରମର କେ ବରଣୀ ବାନ୍ଧଇ ।
ପାଏଡ଼ା ପାଡ଼ିଣ କେହୁ କୁସୁମ ସିଞ୍ଚଇ ॥
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଦ୍ୱିଜନାରୀ ।
ଦଧିମାଛ ସ୍ୱର୍ଣ୍ଣକୁମ୍ଭ କେହୁ ଆଗେ ଧରି ॥
ରାଜହଂସ ଦେଖାଇ କେ ପାରୁଆ ଉଡ଼ାଇ ।
କୃଷ୍ଣ ରୂପ ଚିତ୍ର କେମା ଚରଣ ବଢ଼ାଇ ॥
ବେତ ଧରି କେଉଁ ନାରୀ ଖଣ୍ଡିଆ ଡାକରେ ।
ମହିମା ମହିମା କେ ଡାକଇ ଉଚ୍ଚ ସ୍ୱରେ ॥
ଧୀରେ ଧୀରେ କେଉଁ ନାରୀ ହେଣ୍ଡ ମଣାଇଁ ।
କେବଳ ସୁବର୍ଣ୍ଣ କର ଯୋଡ଼ିଣ ଜଣାଇଁ ॥
ଧୂପକାଠି ଦର୍ପଣ କେବଣ ନାରୀ କରେ ।
କେ ମାନ ପରଶ କେ ବଡ଼ଆଲଗି କରେ ॥
କେ ଛତ୍ର ଚାମର ଧରେ କେ ମେଘାଡମ୍ବରେ ।
ମଣ୍ଡିତ ହୋଇଛି ଶୋଭା ଅବନୀ ଅମ୍ବରେ ॥
କେହୁ ଝରିନାଳିଆ କେ ବସନଗୁଙ୍ଗୁଡ଼ି ।
କେହୁ ଅଳଙ୍କାର ମୂଜାସଜ ଚଉପେଡ଼ି ॥
ନଇବେଦ୍ୟ ଅଶନ କେ ଘେନାଇ ଚଳାଇ ।
କେହୁ ଯାଶୀ ଶୁକ ପିକ ପିଞ୍ଜରୀ ଧରଇ ॥
ମାଜଣା ଯୋଗାଉ ପୀଠ ରଉଶୀ ପାଦୁକା ।
ନାନାରସ କଉତୁକେ କେବଳ ନାୟିକା ॥
କର ପ୍ରସାରଣ ଅନୁସରି କେହୁ ବାଳୀ ।
କାହ୍ନା କରେ କର ଦେଇ ଧୀରେ ଧୀରେ ଚଳି ॥
ଏମନ୍ତ କାନନେ ଯାଇ ପ୍ରବେଶ ହୋଇଲେ ।
ନାଗରେ ଘେନି ବୃନ୍ଦା ଥାନ୍ତୁଛି ଅଇଲେ ॥

କେତକୀ କୁସୁମ ଛତ୍ର ଚମ୍ପାପୁଷ୍ପ କମ୍ପେ ।
ଭୃଙ୍ଗର ବାରଣେ ଶିରେ ଧରିଲେ ମୁଷମେ ॥
ଖଗମୃଗ ଉତ୍ସୁକରେ ଧାଆନ୍ତି ହରଷେ ।
ତରୁ ଲତା ପ୍ରଫୁଲ୍ଲିତ ଗଉର ବକଷେ ॥
ବନ୍ଧୁୟଲ୍ଲତା ଜ୍ୟୋତି ଜିଣି ଦିଗ ଛନ୍ନ ଛନ୍ନ ।
ଠାକୁରାଣୀ ବଚନ ଜାଣି ଛନ୍ନ କୃଷ୍ଣ ମନ ॥
ତରୁ ତରୁ ଉଡ଼ିବେ କଦମ୍ବ ଶାଖେ ଉଠି ।
ଜେମାଦେଇ ଗମନରେ ଅନ୍ୱେଷିଣ ଦୃଷ୍ଟି ॥
ଚଳେ ମଧୁମଙ୍ଗଳ ସୁବଳେ ହରି ଭାଷେ ।
ଦେଖ ମିତ ଏ ଦିଗୁଁ ତ ସମୁଦ୍ର ଘୋଟିଆସେ ॥
ଏତେ ବୋଲି ବେଗେ ବେଗ ବୃକ୍ଷରୁ ଖସିଲେ ।
ଦେଖିଣ ସୁବଳ ମଧୁମଙ୍ଗଳ ହସିଲେ ॥
ଯାହା ଶୋଭା ଶୁଣି ଏହୁ ତରଳ ବହଇ ।
ତାହା ରୂପ ଦେଖିଣ ଏ କେମନ୍ତେ ରହଇ ॥
ସମୁଦ୍ର ନୁହଇ ହରି ଜେମାଦେଈ ବିଜେ ।
ଲାବଣ୍ୟବାରିଧି ରାଧା ସଖୀଗଣ ମାଝେ ॥
ହୁଳହୁଳି ଗୀତ ବାଦ୍ୟ ସିନ୍ଧୁ ଘୋଷ ଜାଣି ।
ଲହରୀ ପରାୟେ ଦିଶେ ଏ ଭ୍ରମରଶ୍ରେଣୀ ॥
ଅକଳିତ ଗୁଣାବଳୀ ଗମ୍ଭୀର ତରଙ୍ଗ ।
କୃଷ୍ଣବେଣୀ ନଦୀତଟ ଭେଟଣ ସଂଯୋଗ ॥
ଭାଲତଟ ବାଳମିତ୍ର ଉଦୟ ପ୍ରକାଶେ ।
ନେତ୍ର ମଚ୍ଛ କୁଚ କଚ୍ଛ ପରି ପୁଷ୍ଟ ଦିଶେ ॥
ଚନ୍ଦ୍ର ସ୍ୱାତୀ ନାସା ମୋତି ଦନ୍ତପନ୍ତି ସନ୍ଦୁ ।
ମୁଖହାସ ଓଷ୍ଠ କୋକନଦ କଇଁ ପଦ୍ମେ ॥
ସୁବାହୁ ମୃଣାଳ ଗ୍ରୀବ ଶଙ୍ଖ ଶୋଭା ଦିଶେ ।
ହୃଦୟରେ ମୋତିହାର ସୁରନଦୀ ମିଶେ ॥
ଆଭରଣ ରତ୍ନକରେ ରତ୍ନାକର ନାମ ।
ଭଉଁରୀ ନାଭି ତ୍ରିବଳୀ ତ୍ରିବେଣୀ ସଙ୍ଗମ ॥
ବାଲିବନ୍ତ ଜଘନ ଏ ଚନ୍ଦ୍ରଭାଗା ନଖ ।
ଏହୁ ତୀର୍ଥ ଆଶ୍ରେଣ ଖଣ୍ଡଇ କାମଦୁଃଖ ॥
ଫେନଚକ୍ଷ ଚଞ୍ଚଳ ଯେ ନାବ କି ଭାସଇ ।
ସାଢ଼ୀଧର ଚଳନ୍ତେ ଏ ବୋଇତ ଆସଇ ॥
ମୁକୁର ଚନ୍ଦ୍ରମା ରାମା ଅନୁସରି ରହେ ।
ଅନେକ ରୂପକ ସିନ୍ଧୁ ଏକ ଠୁଳ ହୁଏ ॥

କାଳନ୍ଦୀ ନଦୀ ରୂପରେ ତୁମ୍ଭେ ଯାଇ ମିଶ ।
ଅପଘାତ ହେଲେ ହୁଏ ମହା ସୁଖ ରସ ॥
ଧଇର୍ଯ୍ୟ ମନ୍ଦରଗିରି ବାହୁ ରଜ୍ଜୁ ଛନ୍ଦେ ।
ମନ୍ଥନ କରି ପୟୋଧି ସୁରାସୁର ମଧେ ॥
ନାନାରସ ଜାତ କରି ସୁଧା ପାନ କର ।
ଦାରୁଣ ମଦନବାଣ ବ୍ୟଥା ତାପ ହର ॥
ପାରିଲେ ଭରସା କର ନ ପାରିଲେ ଯୁଝ ।
ଗୋବର୍ଦ୍ଧନ ତଳେ ଉଠି ଲତା ତଳେ ଲୁଚ ॥
ଅନ୍ୟ ନାରୀ ନୁହନ୍ତି ଯେ ବୃହାନ୍ତେ ମୋହିବୁ ।
ଆଜ ସେ ଜାଣିବ ଧୈର୍ଯ୍ୟ କେମନ୍ତେ ରହିବୁ ॥
ନୃପତିଦୁହିତା ଏ ଯୁବତୀଶିରୋମଣି ।
ଯେବେ ବଶ କରିବୁ ଏହାକୁ ବେଣୁପାଣି ॥
ତେବେ ସେ ବହିବୁ ଶିରେ ଶିଖିପୁଚ୍ଛବାନା ।
ଏଠାରେ ନାଗର ପଣ ଜଣା ଯିବ ସିନା ॥
ହସି କୃଷ୍ଣ ଉଲ୍ଲସିଣ ବାଜେ ବାହା ମାରି ।
ବୋଲନ୍ତି ଦେଖ ମିତ ମୋତେ କଲ ତୁମ୍ଭ ପରି ॥
ଅଗ୍ନିଜ୍ୱାଳେ କ୍ଷୀର ପୂରି ଉଚ୍ଛୁଳୁ ଯେ ଥାଇ ।
ଧୀର ହୋଇ ରହଇ ସେ ନୀର ସଙ୍ଗ ପାଇ ॥
ଶୀତକାଳେ ଜଳ ଛୁଇଁ ଶୀତେ କମ୍ପୁଥାଇ ।
ପଶିଣ ମଜ୍ଜିଲେ ଯେହ୍ନେ ଶୀତଭୟ ଯାଇ ॥
ସେହିରୂପେ ତାର ସଙ୍ଗ ହେବ ଯେତେବେଳେ ।
ତେତେବେଳେ ନାଶହେବ ବିକାର ସକଳେ ॥
କାମବ୍ୟାଧି ଚେଷ୍ଟା କରିଅଛୁ ନାନାମତେ ।
ରାଧା ଔଷଧରେ ବାଧା ନ କରିବ ମୋତେ ॥
ତୁମ୍ଭେ ଦୁଇ ମିତ୍ର ମାତ୍ର ସାହା ହୋଇଥିଲେ ।
ଏ ନୃପନନ୍ଦିନୀ ସଙ୍ଗ ଲଭିବ ମୁଁ ଭଲେ ॥
ଏମନ୍ତେ ଦୂତିକା ପାଶେ ମିଳି ହସ ହସ ।
କୃଷ୍ଣଙ୍କୁ ଚାହିଁଣ କହେ ବଚନ ସନ୍ଦେଶ ॥
ତୁମ୍ଭର ଚରିତ ଯେ ଜଣାନ୍ତେ ଜେମା ପାଶେ ।
ପଡ଼ିଲେଣ ଘୃତ ଯେହ୍ନେ ଜଳଇ ହୁତାଶେ ॥
ପୁଣ ପୁଣ ପୁଚ୍ଛଇ ମୋ ପ୍ରାଣନାଥ କାହିଁ ।
କାହିଁଲ ବନରେ ଛନ୍ତି ତୋର ଭେଟ ପାଇଁ ॥
ମୋତେ ଆଗ ପେଶି ସଖୀ ସଙ୍ଗରେ ଆସଇ ।
ଉପାଧି ଦେଇଣ ତୋରେ ସଜନୀ ପେଶଇ ॥

ଶୁଣି କୃଷ୍ଣ ପୁଲକିତ କମ୍ପସ୍ତମ୍ଭ ଦମ୍ଭେ ।
ମିଶ୍ର ଉକତି କି କଥା ନ କହେ ଆରମ୍ଭେ ॥
ଏମନ୍ତେ ବୃନ୍ଦା ରାଧା ସମ୍ମୁଖରେ ଜଣାଇ ।
ବ୍ରଜେନ୍ଦ୍ରନନ୍ଦନ କୁଣ୍ଡ କୂଳେ ଛନ୍ତି ରହି ॥
ମୃଗୟା କରଇ ଶ୍ୟାମ କାମତମ ଘୋରେ ।
ଶ୍ୟାମଳ ମଞ୍ଜୁଳ ତନୁ ଉଜ୍ଜ୍ୱଳ ହାରରେ ॥
କଟିଘଣ୍ଟି ସ୍ୱରେଣ ସୁସ୍ୱରେ ବଂଶୀସ୍ୱନେ ।
ଶ୍ରବଣ ନୟନ ମତ୍ତ ହରିଣାକ୍ଷୀଗଣେ ॥
କଟାକ୍ଷ ବିଷମବାଣ ଭ୍ରୂ ଧନୁପରେ ଯନ୍ତି ।
ଅପାଙ୍ଗ ଆକର୍ଣ୍ଣେ ପୂରି ମନ୍ଦହାସେ ମନ୍ତ୍ରି ॥
ସନ୍ଧାନେ ମରମେ ବାଜି ବିବେକ ହଜଇ ।
ଦେଖି କାମକିରାତ ସେ ପୁଣି ପ୍ରହାରଇ ॥
ନ ପଳାଇ ଶ୍ରଦ୍ଧା ବନ୍ଧ . ବିପରୀତ ଏହି ।
ନିଜ ଧଇର୍ଯ୍ୟକୁ ତେଜି ସୁଧାନିଲଭେ ରହି ॥
ଭୋଳିତ ଉଦ୍ଦେଶିଣ ହରି ଏ ବନେ ଲେଉଡ଼ଇ ।
ଲଭିଲେ ମୃଗୟା ଜୟ କରି ବାହୁଡ଼ଇ ॥
ସାବଧାନେ ହୋଇ ଏଥେଁ ବିଜୟ କରିବା ।
ବିଶ୍ୱାସ ସଜନୀ ପେଶି ଆଗେରି ବରିବା ॥
ଲଳିତା ବୋଇଲେ ଏହା ବିଗୁର ଅଟଇ ।
ଠାକୁରାଣୀ କହେ ଏହୁ ମନକୁ ଖଟଇ ॥
ବିଶ୍ୱାସ କରିଣ ତୁଳସୀକୁ ପଠାଅଇ ।
ଜାତିପୁଷ୍ପ ମାଳା ଯେ ଚନ୍ଦନ ପାନ ଦେଇ ॥
ହରଷେ ତୁଳସୀ ଘେନି ବନରେ ଚଳିଲେ ।
କେତେଦୂରେ କୁଣ୍ଡକୂଳ କୃଷ୍ଣଙ୍କୁ ମିଳିଲେ ॥
ଦୂରୁଁ ଦେଖି ସଖୀ ପଞ୍ଚଧନ୍ୱା ଲୁଚି ଦେଲେ ।
ଅବଲମ୍ବି ହରି କଳ୍ପପାଦପର ମୂଳେ ॥
ଦୂରୁଁ ଗୃହୁଁ ଦୂତି କହେ ଦେଖି ନବ ନାଗର ।
ରାଧିକାର ପ୍ରିୟସଖୀ ପ୍ରବେଶ ଆଗର ॥
ଶୁଣି କୃଷ୍ଣ ପାଟେ ଉଠି ପହଣ୍ଡ ଦଶ ଆସି ।
ମୃଦୁ ମଧୁ ଲଳିତେ ତୁଳସୀ ହସି ହସି ॥
ବୃଷଭାନୁ ଜେମାଦେଈ ଏ ବରଣ ବିଧି ।
ଯେ ତୁମ୍ଭର ମନୋରଥ ହେବ ସର୍ବସିଦ୍ଧି ॥
ଶୁଣି ଶ୍ୟାମ ହେମପାତ୍ର ମସ୍ତକେ ଲଗାଇ ।
ସର୍ବାଙ୍ଗେ ଚନ୍ଦନ ଘେନି ମାଳାକୁ ଲମ୍ବାଇ ॥

ତାମ୍ବୂଳକୁ ଭୁଞ୍ଜିଣ ପ୍ରସନ୍ନମୁଖେ କହେ ।
କେଉଁଠାରେ ଜେମାଦେଈ ବିଜେ କରି ରହେ ॥
ତୁଳସୀ ବୋଇଲେ ମୋତେ ସମ୍ମୁଖକୁ ପେଶିଲେ ।
ସଖୀଗଣ ଘେନିଣ ସେ ସୂର୍ଯ୍ୟସ୍ଥାନେ ଗଲେ ॥
ଶ୍ରୀକୃଷ୍ଣ ବୋଇଲେ ଭେଟ କେଉଁଠାରେ ହେବ ।
ତୁଳସୀ ବୋଇଲେ ତୁମ୍ଭେ ଏଥିଠାରେ ଥିବ ॥
ସୂର୍ଯ୍ୟ ସ୍ଥଳେ ସକଳ ସୁବସ୍ତୁଗଣ ରଖି ।
କୁଣ୍ଡେ ବିଜେ କରିବେ ଘେନିଣ ପ୍ରାଣସଖୀ ॥
ବୃନ୍ଦା ଘେନି ବେନିଜନ ମିଳନ କରିବେ ।
ଲଳିତା ସଙ୍ଗେ ସଖୀ ଅପସରି ଦୂରେ ହେବେ ॥
ମନସିଜ ରହସ୍ୟ ସଫଳ କରାଇବେ ।
ବେନିଜନ ଚିର ମନୋରଥ ପୂରାଇବେ ॥
ମେଲାଣି ହୋଇଲେ ସିଦ୍ଧ ଠାକୁରାଣୀ ପାଶେ ।
ଶୁଣି କୃଷ୍ଣ ଅଶ୍ରୁଜଳ ହରଷେ ବରଷେ ॥
ନଖାଗ୍ରେ ସେ କାଳମାରେ ପ୍ରେମପତ୍ର ଲିହି ।
ମୋଦେ ମୁଦ୍ରି ଚନ୍ଦନ ଚୁମ୍ବନ ମୁଦ୍ର ଦେଇ ॥
ଗଳାମାଳା କମଳ ସହିତେ ଦୂତି କରେ ।
ଗୂଢ଼ କହି ପେଶିଲେ ସେ ତୁଳସୀ ସଙ୍ଗରେ ॥
ନେନି ଟେକି ଏ ହାତରେ ନୃପତି ଦୁଲ୍ଲଣୀ ।
ଏମନ୍ତେ ଭେଟିଲେ ଯାଇ ସେ ବେନି ତରୁଣୀ ॥
ପ୍ରସନ୍ନବଦନ ଦେଖି ପ୍ରଫୁଲ୍ଲିତ ରାଧେ ।
ବେନିବାମା ହରଷରେ ଜଣାଇ ସାନ୍ନିଧ୍ୟେ ॥
ଦେଖିଲୁଁ ନାଗରବର କୁଣ୍ଡକୂଳ ଭାଗେ ।
ବସିଅଛି ବନମାଳୀ ତୋର ଅନୁରାଗେ ॥
ସମୀର ସୁଗନ୍ଧେ ବହେ ତୋ ଅଙ୍ଗ ସୁଗନ୍ଧେ ।
ଚରଣ ପରାଗ ରେଣୁ ଘେନଇ ଆନନ୍ଦେ ॥
ଶିରରେ ଲଗାଇ ମାଳା ଗଳାରେ ବହିଲା ।
ଚନ୍ଦନ ଘେନି ଶୀତଳ ହୋଇଲି ବୋଇଲା ॥
ତାମ୍ବୂଳ ଚର୍ବିତ ହରି ମହାସୁଖ ପାଇ ।
ଗଳାର କମଳମାଳା ଲେଖ ଲିହି ଦେଇ ॥
ବୋଇଲେ ବାଳା କୃଷ୍ଣମାଳା ହୃଦରେ ଲମ୍ବାଅ ।
କାମଦାବାନଳ ଜଳୁ ଅଛଇ ଲିଭାଅ ॥
ଶ୍ରୀହସ୍ତରେ ବର୍ଣ୍ଣାବଳୀ ପତ୍ରିକା ଦେଖାଅ ।
ଅମିୟ ସିଞ୍ଚିଣ ଖିନ୍ନ ଜୀବନ ରଖାଅ ॥

ଏତେ କହି ଶ୍ରୀକୃଷ୍ଣ ଉଲାଗିମାଳ ଘେନ ।
ହୃଦୟେ ଲମ୍ବାଇ ଆଗେ ଲଗାଇ ମର୍ଦ୍ଦନ ॥
ଶ୍ରୀହସ୍ତେ ଶ୍ରୀଲେଖ ଘେନ ହୃଦୟେ ଲଗାଇ ।
ପ୍ରେମ ମୁଦ ଗୁନ୍ଥି ଭୁଙ୍ଗବଦ୍ୟା କରେ ଦେଇ ॥
ମୁଦଫେଡ଼ି ଚଢ଼ି କର୍ଣ୍ଣମୂଳରେ ଶୁଣାଇ ।
ନେତ୍ର ପ୍ରେମଜଳେ କାଳୀ ନଖେ ଲେଖାହୋଇ ॥
ଗୁଣମଣି ପ୍ରାଣଧନୀ ତୁମ୍ଭକୁ ଶଠାଉ ।
ଚପୁର କମଳେ ମନ ଭ୍ରମନ୍ତେଲ ଖଟାଉ ॥
ବୃନ୍ଦାବାଣୀ ତରଙ୍ଗିଣୀ ବଢ଼ନ୍ତେ ମୁଁ ଭାସି ।
ଗୋଡ଼ାଇ ଓଗାଳ ଆଗେ କାମଗ୍ରାହା ଗ୍ରାସି ॥
ନାମଲତା ଅବଲମ୍ବ କରିଣ ରହିଛି ।
କୂଳେ ଆସିବାକୁ ମୋର ସକ୍ଷ ନାହିଁ କଛୁ ॥
ଅଶକତ ଦେଖି କୂଳେ ଉଦ୍ଧରିଲ ଯେବେ ।
ମନୋଭବ-ପରାସ୍ତ ଉଚିତ ନୁହେଁ ତେବେ ॥
ନଖପନ୍ତ୍ର ଜାତି ପୁଷ୍ପ ମାଳ ଚାହ୍ନି ବହି ।
ଚନ୍ଦନ ବୋଲ-ତାମ୍ବୁଳ ଭୁଞ୍ଜି ସୁଖ ପାଇ ॥
କଣ୍ଠାଜନ ବୋଲ ଚହ୍ନ ଦେଖନ୍ତେ ବଦତେ ।
ମଦନ ଦାରୁଣ ଖଣ୍ଡ ନ ଯାଇ ପରତେ ॥
ପୁଣି ପୁଣି ମରମେ ପଶଇ ପଞ୍ଚବାଣ ।
ଉଦ୍ଧରି ରଖିଲ ଲୋକେ ଆନ କରେ ପୁଣ ॥
ପାରିଲେ ସମ୍ଭାଳ ନ ପାରିଲେ ତହିଁ ମେଲ ।
ଅଣକେତ କୂଳେ ଲାଗି ଏତେ କଳବଳ ॥
ଅଙ୍ଗୀକାର ପରାଭବ ମହତ ଜନକୁ ।
ଦଣ୍ଡ ଭେଦ ନୋହୁ ଶ୍ୟାମ ବୁଝି ଯେ ଏଥକୁ ॥
କୋଳରେ ରଖିଣ କୁଚ କନ୍ଦରେ ଲୁଚାଅ ।
ଘୋଡ଼ାଇ ବକ୍ଷର ବାହୁ କାମକୁ ଦୂଞ୍ଚାଅ ॥
ସଚେତ କର ଅଧରୁ ଦେଇ ସୁଧାପାନ ।
ନୋହିବ ସେ ରଖିବା ହେବ ଭାସିଗଲ ଜନ ॥
ଉଚିତକି ନ ଲେଖିଲି ମୋର ଦୋଷ କର କ୍ଷମା ।
ଏ ନେହ କାମିନୀ କହିବାରୁ ତ ଜାଣିମା ॥
ଶୁଣି ହରି ପୁଲକରେ ଅଶ୍ରୁଜଳ ବହି ।
କମ୍ପ ସ୍ୱେଦ ଗଦଗଦ କଣ୍ଠ ଜାଡ଼ ବାହି ॥
ପୁଣି ପୁଣି ଲେଖ ଘେନ ଲଦଇ ସେ ହୃଦେ ।
ସ୍ତମ୍ଭ ହୋଇ ଆଗକୁ ଯେ ନ ଚଳଇ ପଦେ ॥

ଲଳନା ବୋଇଲେ ଭୁଙ୍ଗବଦ୍ୟା ମୁଖ ଚୁହିଁ ।
ଆମ୍ଭ ପ୍ରତିଭାଷା ଦିଅ ବୃନ୍ଦାହାତେ ଲିହି ॥
ଶୁଣି ଭୁଙ୍ଗବଦ୍ୟା ଯେ ଲେଖନପତ୍ର ଘେନ ।
ଲେଖିଲେ ସରସବାଣୀ ମନେ ମନେ ଗୁଣି ॥
ମୁଦ ଘେନ ନେମାଦେଇ ହୃଦରେ ଲଦିଲେ ।
ଉରଜ ଚନ୍ଦନ ଭାଳେ ଲଗାଇଣ ଦେଲେ ॥
ଘେନିଣ ହରଷେ ବୃନ୍ଦା ଚଳେ କୃଷ୍ଣ ପାଶ ।
ଦୂରୁ ଦେଖି ନାଗର ହୃଅନ୍ତି ହାସହାସ ॥
ବୋଇଲେ ହେ ବନେଶ୍ୱରି ମୋତେ ପରସନ୍ନ ।
ତୁମ୍ଭରେ ଯେ କରି ହୁଏ ଏବେ କଥାମାନ ॥
ଗଗନଚନ୍ଦ୍ରମା କରଗତକୁ ଆଣିଲ ।
କି ଦେଇ ଶୁଝିବ ମୋର ଜୀବନ କିଣିଲ ॥
କାଳେ କାଳେ ତୁମ୍ଭରେ ଯେ ହୋଇଥିବ ଋଣୀ
ମହତ ବିବେକ ଜନ ବିଦୟୁରୁ ଜାଣି ॥
କାମ କୋପାନଳେ ଚିରକାଳରୁ ଦଗଧ ।
ସୁରନଦୀ ବୁନ୍ଦାଇଣ ମିଳାଇଲ ସନ୍ନିଧ ॥
ଭସ୍ମ ଅଙ୍କୁରଇଲ ଅମିୟ ବାଣୀ ସିଞ୍ଚି ।
ପଲ୍ଲବ ପ୍ରଫୁଲ୍ଲଫଳ ଲଭେ କି ସରଞ୍ଚି ॥
ଶୁଣି ବୃନ୍ଦା ବୋଲେ ହସି ଶୁଣ ହେ ତମାଳ ।
ଧଇର୍ଯ୍ୟରେ ଥିଲେ ସମୟରେ ଲଭଫଳ ॥
ପତ୍ର ଶୁଣି ତୁମ୍ଭ ପ୍ରେମ ପତ୍ରିକା ସୁକେଶୀ ।
ବିକାର ବାଧନ୍ତେ ପଦେ ନ ପାରଇ ଆସି ॥
କି କି ଲେଖି ପତ୍ରିକ ତୁମ୍ଭଙ୍କୁ ଅଛି ଦେଇ ।
କୃତ କୃତ୍ୟ ଘେନ ହରି କରାଞ୍ଜଳି ହୋଇ ॥
ଚନ୍ଦନ ତାମ୍ବୁଳ ମୃଗମଦ ଗରଗର ।
ଗୃହ୍ନି ଲଗାଇ ଶିର ଚୁମ୍ବି ହୃଦୟର ॥
ପଢ଼ି ନ ପାରିଣ ସେପତ୍ର ବୃନ୍ଦାକରେ ଦେଲେ ।
ସରସ ହରଷେ ବୃନ୍ଦା ପତ୍ରିକା ପଢ଼ିଲେ ॥
'ଜୀବବନ୍ଧୁ ଶୋଭାସିନ୍ଧୁ ପଦନଖ ଶଶୀ ।
ହୃଦୟ କୁମୁଦ ଚକ୍ଷୁ ଚକୋର ଲାଳସୀ ॥
ନବଜଳଧର ବରଷାରେ ନଦୀବଢ଼ି ।
ନିଜ ଦେହ ନିମଜ୍ଜାଇ ମହା ଜଳେ ପଡ଼ି ॥
ମନହଂସୀ ମିଳଣ ଭାସି ଶରଧା ବଢ଼ାଇ ।
ନୟନମୀନ ଅପାଙ୍ଗତରଙ୍ଗ ବୁଡ଼ାଇ ॥

ଅନଙ୍ଗ ବାହନେ ନାଚେ କୁଣ୍ଡଳେ ଆକର୍ଷି ।
କରୁଣା-ବୋଇତେ ଏଥୁଁ ପାରକର ଆସି ॥
ପାଦପଦ୍ମ ପିଞ୍ଜରାରେ ପୋଷିଣ ରଖିବା ।
ବିମ୍ବାଧରୁ ସୁଧାପାନ ଦେଇଣ ତୋଷିବା ॥
ଲେଖା ଅପରାଧ କ୍ଷମା କରିବା ହୋଇବେ ।
ନେମାରେ ଦଇନ୍ୟ ବୃନ୍ଦାଦେବୀ ଜଣାଇବେ ॥
ଶୁଣି ହରି ତନୁ ଯାରି ପ୍ରେମ ଜର ଜର ।
ଭାବନାର ଭାବଭାଷା ଭାବି ଗରଗର ॥
ବନେଶ୍ୱରୀ କର ଧରି ସନ୍ତରେ ପୁଚ୍ଛଇ ।
କହ କହ ରସମୟୀ କି କହିଅଛଇ ॥
ବୃନ୍ଦା ବୋଇଲ ରାଧା ଏହା ବିନୟେ କହିଛି ।
ଅବୋଧ ନାୟିକା କାନ୍ତ ଅଭୋଗ୍ୟ ହୋଇଛି ॥
ଅନ୍ତରର ଲଳିତ ଲହୁଲି ନବବାଳା ।
ନାହିଁ ଅନୁଭବ ନବ ମନୋଭବ କଳା ॥
ସେବା ଅପରାଧ ଦୋଷ ମନରେ ନ ଘେନ ।
ସାରି ଶୁକ ପଢ଼ାଇ ସୁସ୍ୱରୁବାଣୀ ଶୁଣି ॥
ସୁଧାନିଧି ସଞ୍ଚ ଯେହ୍ନେ ଭୁଞ୍ଜନ୍ତି ଦେବତା ।
ରସ ରଖି ରସ ଭୋଗ କର ନିଜ କାନ୍ତା ॥
ସମାଗମ ପ୍ରଥମେ ଗୁଆଁରି ନାରି ଦଶା ।
ଜାତ ହୁଏ ଲଜ୍ଜା ଛନ୍ନମନ ଅଭରସା ॥
କ୍ରମେ କ୍ରମେ ଲତା ବଢ଼ି ତରୁକୁ ବେଢ଼ଇ ।
ଏକାବେଳେ ବେଢ଼ାଇବା ଲୋଡ଼ିଲେ ଛିଡ଼ଇ ॥
ତୁମ୍ଭେ ତ ରସିକବର କସ ବା ଅଧିକେ ।
ଶୁଣି କୃଷ୍ଣ ଇଷିତେ କମ୍ପଇ ଅଙ୍ଗ ଝାଙ୍କେ ॥
କେତେବେଳେ ପ୍ରବେଶ ହୋଇବେ ନେମାଦେଇ ।
ଦର୍ଶନ କରିବା ଯେ ଗୁମୁରେ କସ ଦେଇ ॥
ମୋହଠାରେ ଅନୁଗ୍ରହ ଅଛିଟିକି ବୃନ୍ଦେ ।
କୃପା ଅବଲୋକନେ ହସିବେ ମନ୍ଦେ ମନ୍ଦେ ॥
କି ଅବା ମାନିନୀ ହୋଇ ମୁଖେ ମସୀ ମର୍ଦ୍ଦି ।
ପାଦ ଅଗ୍ରେ କ୍ଷିତି ଘଷି ପଛନ୍ତେ ଓହାଢ଼ ॥
ଏମନ୍ତ ଅନ୍ତର ସେ ଦେଖିଲେ ମନମଥ ।
ନିମିଷେ ବିଶ୍ରାମ ନ କରିବ ଶରପଥ ।
ଆଗମ ଜାଣି ପାରୁଛି ନ ଗଲା ଯା ଏଥୁଁ ।
ଏହି ଅପରାଧ ଘେନ ଲୋଡ଼ିଲେ ପଥୁଁ ॥
ଦାରୁଣ ମଦନ ଆଜ ରଖିବ କି ଭଲେ ।
ନ ପୁଣ ନ ଆସନ୍ତି ମୋ କରମ ବିଫଳେ ॥
ରମ୍ୟ ସ୍ଥାନ ଦେଖି ଶ୍ରମେ ଶ୍ରମ ପାଇ ରହି ।
ବନଜୀବ କଉତୁକ ଦେଖେ ଅବା କାହିଁ ॥
ଗୁରୁଜନ ଦେଖି ଅବା ପଥ ନିରୋଧିଲେ ।
ଭୟ ଦେଖାଇଣ ଅବା ସଖୀ ନିଷେଧିଲେ ॥
ମୋରେ ବାମ ହୋଇ କାମବାଣେ କି କଠାଳ ।
ଜାଣୁଅଛି ମୋହର ହୃଦୟ ପରିକଳ ॥
ଯାଅ ଯାଅ ବୃନ୍ଦା ବେଗେ ଆଣ ପ୍ରାଣସଖୀ ।
ନିମିଷକ କୋଟିଯୁଗ ହେଉଛି ନ ଦେଖି ॥
ବୃନ୍ଦାଦେବୀ ବୋଲେ ହରି ନୁହସି ଆରତ ।
ଏହିକ୍ଷଣି ଠାକୁରାଣୀ ଆଣିବି ତ୍ୱରିତ ॥
ଏତେ କହି ବୃନ୍ଦାଦେବୀ ଶୀଘ୍ରହୋଇ ଗଲେ ।
ସୂର୍ଯ୍ୟସ୍ଥଳେ ନେମାଦେଇ ସନ୍ନିଧିରେ ମିଳେ ॥
ଦୂରୁ ଦେଖି ବୋଲେ ରାଇ ଆସ ଆସ ପାଶେ ।
ଏକାନ୍ତରି କହ କଥା ମରମ ବିଶ୍ୱାସେ ॥
ପ୍ରାଣନାଥ ଦର୍ଶନ ପାଇଲ କେଉଁଠାରେ ।
କେଉଁ ଅବକାଶରେ କେମନ୍ତ ବେଶ ଧରେ ॥
ଆଦରେ ପଣିକା ପଢ଼ି କସ ଆଜ୍ଞା ଦେଲେ ।
ଅଳିକୁ କି ଉଧାରିବା ଅଙ୍ଗୀକାର କଲେ ॥
ବୃନ୍ଦାଦେବୀ ବୋଲେ ଧୀରେ ଶୁଣ ଗୋ ରାଧିକେ ।
ଯେତେ ପୁଚ୍ଛାକଲୁ ସେହୁ ତୋ ତହୁଁ ଅଧିକେ ॥
ଶ୍ୟାମକୁଣ୍ଡ କୂଳେ ତରୁ ଅବଲମ୍ବେ ଉଭା ।
ନଟବର ବେଶ ତୋର ମଣି ଉରେ ଶୋଭା ॥
ଏହିହରେ ଶ୍ରବଣ ନୟନ ଅଛି ଡେରି ।
ଆଗକୁ ପାଏ ଆସିଣ ପଛ ଅନୁସରି ॥
ଆବେଗ ଉଧ୍ୱାହ ଚିତ୍ତ ଧରି ନ ପାରଇ ।
ନିଭୃତେ ପଲ୍ଲବଶଯ୍ୟା ରଚନା କରଇ ॥
ପଦେ ପଦେ ବିଚଳିତ ସଚକିତ ନେତ୍ରେ ।
ପାରୁଛି ଆସି ନ ଦେଖି ଖେଦ ଚିନ୍ତା ଚିତ୍ତେ ॥
ଏକା ହୋଇ କାନନେ ଭ୍ରମଇ ତୋତେ ଖୋଜ ।
ନ ଦେଖି ବିସ୍ମୟ ମନେ ଖରଶ୍ୱାସ ତେଜ ॥
ମୋତେ ଦେଖି ପାରୁଛି ଆସିଣ ଗଲେ ଘେନ ।
ଆଦରେ ପଣିକା ଘେନ ଲଗାଇ ମୂର୍ଦ୍ଧନ ॥

ଲୋକଙ୍କେ ନ ପାରି ପଡ଼ି ମୋତେ ପଠାଇଲେ ।
ଶୁଣି ବେଳୁଁ ବେଳ ଅନୁରାଗ ବଢ଼ାଇଲେ ॥
ବେଗେ ଯେବେ ଆସ ବୋଲି ପଠିଆଇ ମୋତେ ।
ମନମଥ ଘାତେ ପଥ ଚାହୁଁଥିବେ ତୋତେ ॥
ବିଳମ୍ବ ନ କର ସଖି ବେଗ ହୋଇ ଯିବା ।
ପ୍ରାଣନାଥ ବିରହ-ଅନଳ ଲିଭାଇବା ॥
ପୂଜାସ୍ଥଳେ ସକଳ କାମିନୀଗଣ ରଖି ।
ସଙ୍ଗରେ ଯେନେଲେ ଏକା ପ୍ରାଣପ୍ରିୟ ସଖୀ ॥

ଛଦ୍ମରେ ବନରେ ପଶିଲେ ପୁଷ୍ପ ତୋଳି ।
ବୃନ୍ଦା କର ଧରି ପଥେ ଯାଉଁ ଯାଉଁ ଭଳ ॥
ଯେନେହେଁ କୃଷ୍ଣଙ୍କୁ ସଖୀ ଦେଖିଲି ଯେ ନାହିଁ ।
ଛନ୍ନ ହୋଇ ସଲଜ୍ଜାରେ ନ ପାରେ ଚାହିଁ ॥

ସ୍ମିତମୁଖ ପୋତ ସ୍ତନେ ରହନ୍ତେଣ ହରି ।
ଗ୍ରୀଟ୍ କମ୍ବୁ ଇଷିତେଣ ନେବେ କୋଳ କରି ॥
କେଶ ଆଉଁସିଣ ମୁଖେ ଦେବେ ଯେ ଚୁମ୍ବନ ।
ସଖି ତେତେବେଳେ ଦେହେଁ ଥିବ କି ମୋ ଜ୍ଞାନ ॥
ମୋର ଉରଜସଂପୁଟେ ମନ ଥିବେ ରଖି ।
ଯୋଡ଼ାଇ ଲୋଡ଼ନ୍ତେ ପୁଣ ପୁଣ ଫେଡ଼ ଦେଖି ॥

ଉରେ ଉର ଲଗାଇ ଭିଡ଼ିବେ ନିବିଡ଼ରେ ।
ଭୁମେମାନେ ହସୁଥିବ ଲତା ଉହାଡ଼ରେ ॥
କୁଞ୍ଜଗୃହ ଗତେ ଦେଇ ତାଙ୍କର ଆସୁତେ ।
ବାହୁଡ଼ିବ ଲାବଣ୍ୟ ସାଗରେ ମେଳି ମୋତେ ॥

ବିବେକ ଧଇର୍ଯ୍ୟ ଧୀର ଆଗେ ପଳାଇବେ ।
ଶିଖାଇଲି ଚରିତ କପାଁଇ ମନେ ଥିବେ ॥
ମନସିଜ ତାଡ଼ଣିଆ ହୋଇଥିବ ବାଦୀ ।
ଚେତନା ବୁଡ଼ାଇ ହରାଇବ ମନୋବୃଦ୍ଧି ॥
ଉତ୍କଣ୍ଠିତା ହୋଇ ରସେ ଭାସଇ ସୁକେଶୀ ।
ସଖୀ ସେ କହନ୍ତେ ଜାଣି ଯେନାଇ ବିଶେଷି ॥

ଏମନ୍ତେଣ କୁଞ୍ଜକୂଳେ ପ୍ରବେଶ ହୋଇଲେ ।
କେତେ ଦୂରେ ରହି କୃଷ୍ଣ ରୂପକୁ ଚାହିଁଲେ ॥
ତମାଳ ତରୁ ତଳରେ ଚକ୍‌କଣ କାଳିଆ ।
ପୀତପଟ ଶିଖୀ-ପୁଚ୍ଛ ମୁକୁତାମାଳିଆ ॥

ବେଣୁନାଦ ଗମ୍ଭୀର ମଧୁର ମୃଦୁହାସେ ।
ମେଘ ନଗ ନଦୀ ମହାରୂପ କି ପ୍ରକାଶେ ॥
ଚକିତେଣ ଛନ୍ନ ହୋଇ ବୋଲେ ମହାଦେଇ ।
ଶାଢ଼ୀଯେରା ନଭେ ନବଘନ ଉଦେ ହୋଇ ॥
ବୋଲେ ବୃନ୍ଦା ଶୁଣ ରାଧେ ସ୍ୱରୂପ ବଚନ ।
ଏହି ଶ୍ୟାମଘନ ଉଦେ ତୋ ତାପମୋଚନ ॥
ଶିଖେଣ ଶିଖଣ୍ଡୀ ଶକ୍ରକୋଦଣ୍ଡକୁ ଜିଣି ।
ପୀତାମ୍ବର ସୁନ୍ଦର ରୁଚିର ବେଣୁପାଣି ॥
ମନସିଜ ସୁରରାଜ ଧନୁ ଘଡ଼ଘଡ଼ି ।
ବିଷମବାଣେ ଧଇର୍ଯ୍ୟ ଦଳି ଦର୍ପ ହରି ॥
ଉପହାର ବକମାଳା ଘନେ ଶୋଭା ଦିଶେ ।
କାମଦାବାନଳେ ଘୃତସିକ୍ତ ଯୋହି ଆସେ ॥
ଏ ଘନକାଳରେ ସଖି ସୁଖୀ ସର୍ବ ଜନ୍ତୁ ।
ଲାବଣ୍ୟ ଅମୃତ ଚକ୍ଷୁ ଚାତକ ପିବନ୍ତୁ ॥
ତନୁ-ନୀପ ପ୍ରଫୁଲ୍ଲିତ ପୂର୍ଣ୍ଣକାମ-ହ୍ରଦେ ।
ବରଷାରେ ବିରହୀ-ମାନସହଂସୀ ମୋଦେ ॥
ଦେଖି ଦେଖି କୁଚ ହେମଗିରି ଯୋଡ଼ାଇବ ।
ଏହିକ୍ଷଣି ମଧ୍ୟେ ପ୍ରେମନଦୀ ବଢ଼ାଇବ ॥
ମେଘ ଛଳେ ଅରୁଣ ଅଧର ମୁଖଶଶୀ ।
ଭଲି ନ ହସିବେ ଏ ହୋଇଣ ମିଶାମିଶି ॥
ଇନ୍ଦ୍ରଗୋପ ତାମ୍ବୁଳରେ ଗଣ୍ଡଭୂମି ମଣ୍ଡି ।
ତେଣୁ ତୋର କୋକିଳ ବଚନ ବାହୁ ଜାଡ଼ି ॥
ଦେଖ ଶିଖେ ଶିଖୀକି ଏ ଟେକ ଅଛି ପୁଚ୍ଛ ।
ଶ୍ୟାମଘନଛଳେ ବନ ଅନ୍ଧାର ପ୍ରତ୍ୟକ୍ଷ ॥
ସ୍ମରଶର ବରଷାରେ ଜରଜର ନୁହ ।
କୁଞ୍ଜ-ଅଟ୍ଟାଳରେ କାନ୍ତକୋଳେ ସୁଖେ ରହ
ତମାଳ ଗହଳ ଏ କି ନିବିଡ଼ ରଜନୀ ।
ମୁଖଚନ୍ଦ୍ର ଔଜ୍ଜ୍ୱଲ୍ୟରେ ଭୁଲ ତୋ ସଜନୀ ॥
ଧୃଷ୍ଟ ବୋଲେ ରାଧେ ବନକନ୍ଦରେ ଫୁଟାଉ ।
ଅଣକତେ ଚେତରେ ଉଠାଣି ଉଠାଉ ॥
ଦୂରେ ରହି ଚାହିଁଲେ ସେ ଦେଖିଲେ ସୁନ୍ଦର ।
ବୋଲେ ସଖୀ ସ୍ୱରୂପରେ ଏ ନୀଳକନ୍ଦର ॥
ଗିରିବର ଲକ୍ଷଣ ସାଦୃଶ୍ୟ ହୁଏ ଯେତେ ।
ଶୁଣ ତୁ ସକଳ ସଖୀ କହଇ ଅଗ୍ରତେ ॥

ଶିଖଣ୍ଡଶିଖରେ ଦେଖ ଶିଖୀଏ ଖେଳୁଛି ।
ଜଳଦ-ଚିକୁର ଚୂର୍ଣ୍ଣକୁନ୍ତଳ ଚଳୁଛି ॥
ବଦନ-ଚନ୍ଦ୍ରମା ଉଦେ ସର୍ବ ଆହ୍ଲାଦେ ।
ହଂସାତେଜ ସିଂହ ନାଚେ ମୃଗ ସଙ୍ଗେ ମୋଦେ ॥
ଚକ୍ଷୁ ମୃଗ ନାସା ଶୁକଚଞ୍ଚୁ ମୋତିଫଳ ।
ଓଷ୍ଠ ପକ୍ୱବିମ୍ବ ଦୃଢ଼ମତେଣ ନିଶ୍ଚଳ ॥
ଗ୍ରୀବଣ ଲବଣ୍ୟ ଶ୍ୟାମଲତା କଣଳୟେ ।
ବସନ୍ତ-କୁଣ୍ଡଳପକ୍ଷୀ ଦୋଳ ଖେଳେ କଏ ॥
ଦଶନ ଦାଡ଼ିମ୍ବବୀଜ ଫାଟିଣ ବସନ୍ତ ।
ଗଣ୍ଡସ୍ଥଳ ମର୍କତ ମୁକୁର ଶୀଳାଭ୍ରାନ୍ତ ॥
କଳକଣ୍ଠ ବଚନ ଏ ବେଣୁରନ୍ଧ୍ର ଗୀତେ ।
ସମୀର ସମୀର ଭେଦ ସୁସ୍ୱର ମଣ୍ଡନ୍ତେ ॥
ହସ୍ତ ହସ୍ତୀଶୁଣ୍ଡ ପଦ୍ମ ପଲ୍ଲବ ବଳୟ ।
ସୁବାସ ତୁଳସୀପୁଷ୍ପ ଅଗନ୍ଧ ମଳୟ ॥
ବକ୍ଷସ୍ଥଳ ବିସ୍ତାର କୌସ୍ତୁଭ ରତ୍ନହାରେ ।
ଗଙ୍ଗାଦ ଅଗସ୍ତି ବଦ୍ଧ ମିଳନ୍ତି ଅଭିସାରେ ॥
ବ୍ୟାଘ୍ରନଖ ପଦକ ଏ ରତ୍ନଶୀଳାଚୟ ।
କଟିକେଶରୀଙ୍କ ଦେଖି ସଖୀ କର ଭୟ ॥
ନାଭିକୋଟର ଗମ୍ଭୀର ରହିଅଛି ବୁଡ଼ି ।
ସର୍ବ ଚିହ୍ନ ଦେଖାଇ ଲାବଣ୍ୟଲତା ଯୋଡ଼ି ॥
ନିତମ୍ବଯୁଗଳ ଭୁଜଙ୍ଗଶୃଙ୍ଗ ସୁଚଞ୍ଚଳ ।
ପାଦ କଳ୍ପପାଦପ ପଲ୍ଲବ ନବଦଳ ।
ନଖପୁଷ୍ପ ଅଷ୍ଟାଦଶ ଚିହ୍ନ ଫଳାମୃତ ।
ଅମୂଲ୍ୟ ସେ ଚତୁର୍ବର୍ଗ ହୁଅଇ ଲଭିତ ॥
ଏ ଗିରି ଆଶ୍ରୟେ ଏହି ତରୁତଳେ ରହ ।
ପ୍ରେମଭାବ ଲଭି ଉର ଶାନ୍ତ କର ଦେହ ॥
ମଞ୍ଜୀର ମଞ୍ଜୁଳ ପକ୍ଷୀ କୂଜିତ ସୁନାଦ ।
ଧୂରଶାସ୍ତ୍ର ବଖାଣନ୍ତି ଶୁଣ ଏଥିଁ ଜାଣ ॥
ବୋଇଲ ବାନ୍ଧ ବୃନ୍ଦେ ମୋର ତନୁ ତରଳାଉ ।
କାଳନ୍ଦୀନଦୀ ହ୍ରଦକୁ ଯଳଖି ବଳାଉ ।
ମନସିଜ-ସ୍ରୋତେ ପଶି ନ ପାରିବା ଆମ୍ଭି ।
କୂଳ ଛାଡ଼ି ଧସାଧସ ହୋଇ ଯିବା ସର୍ପି ॥
ବିଷପାଣି ସ୍ପରଶରେ କ୍ଷୀଣ ମଳିବା ।
ନାକାଟକୁ ଗଲେ କି ଏ ନଦୀକୂଳ ତଳିବା ॥

ଜାଣୁ ଜାଣୁ ପଡ଼ ଗଡ଼ ବୁଡ଼ିବା ଗଣ୍ଡେରେ ।
ହାହାକାର କରୁଥିବେ ଏ ଗୋପ ଦାଣ୍ଡରେ ॥
ବୋଲଇ ସଜନୀ ସଖୀ ହେଲା ଚିତ୍ତ ଭ୍ରମ ।
ମଦନମୋହନ ନନ୍ଦନନ୍ଦନ ଏ ଶ୍ୟାମ ॥
ତୋର ରୂପ ଗୁଣ ଶୁଣି ଦ୍ରବଣ ବହିଲେ ।
ନିଜକୁଣ୍ଡେ ମିଶି କୁଣ୍ଡେ ସଙ୍ଗମ ହୋଇଲେ ॥
ବେଗରେ କାଳନ୍ଦୀନଦୀ ସ୍ୱରୂପେ ବହଇ ।
ଗୁଣବନ୍ତ ବଚନ ତ ଅନ୍ୟଥା ନୁହଇ ॥
ଶ୍ୟାମଳ ମଞ୍ଜୁଳ ତନୁ ନିର୍ମଳ ସଲିଳ ।
ନୀଳୋତ୍ପଳନେତ୍ର ମୁଖ ବିକଶେ କମଳ ॥
ମକରକୁଣ୍ଡଳ ଦେଖ ମକର ଖେଳୁଛି ।
ବେଣୀ କାଳୀ ଫଣୀ କି ଏ ଉପରେ ରହିଛି ॥
ନୀଳକଣ୍ଠ ନିକଟରେ ଦେଖି ନ ଚଳଇ ।
ଅଳକା କୁନ୍ତଳ ଜଳତନୁ ବିକାଶଇ ॥
କୋକନଦ ଅପାଙ୍ଗ କୁମୁଦ ହାସ ମୋଦେ ।
ବିକଶି ବଶଇ ତୋର ମୁଖଚନ୍ଦ୍ର ଉଦେ ॥
ଭ୍ରୂଭଙ୍ଗେ ସୁସଙ୍ଗେ ଭୃଙ୍ଗ ମକରନ୍ଦେ ବସି ।
ହେମ ଗୁଣ୍ଠଣ ମୋତିମାଳା ମଦନ ବଡ଼ଶୀ ॥
ପଡ଼ିଲେ ନୟନମୀନ ଅପାଙ୍ଗେ ଛଟକ ।
ଅଧର ପ୍ରବାଳନାବେ ରହଇ ଅଟକ ॥
ହସ୍ତ କାତଦଣ୍ଡ ପୀତପଟ ଏ ଅଖାଳ ।
ହୃଦୟରେ ମଣି ନାନାରତ୍ନବେଢ଼ା ଜାଲ ॥
ଝସଦୃଶି ପଡ଼ନ୍ତି କି ଉବୁଟିବେ ଏଥୁ ।
ସତେ ଉବୁଟିବୁଁ କାମକେଳୁଆଳ ହାତୁଁ ॥
ଚଞ୍ଚଳ ତରଙ୍ଗ ଏ ତ୍ରିଭଙ୍ଗୀ ତନବାଙ୍କ ।
ଏହାର କିଙ୍କିଣୀ କଳରବ ହଂସ ବକ ॥
ମଧ୍ୟ କଚ୍ଛପାଦ ଅବତାର ଏ ଅବତାର ।
ନିତମ୍ବଯୁଗଳ ଦମ୍ପତି ଚକ୍ରବାକର ॥
ପୁଣ ଅଛନ୍ତି ଗଭୀର ନାଭି ସେ ଭଉଁରି ।
ଜାନୁଯୁଗ ପୁଳିନରେ ମଦନ ବିହରି ॥
କୁଣିତ ନୂପୁର ନୀରତରରବ ତୋରେ ।
ରାଜଛନ୍ଦ ହଂସଗାମୀ ଚଳ ଗୋ ସଙ୍ଗରେ ॥
ଏ ନଦୀ ସ୍ନାନେଣ କାମଯମ ତାପ ନାଶ ।
ତରକାଳ ତୃଷା ହର ଲଭଅ ହୁତାଶ ॥

ସୁଖେଣ ବିହର ନିଜ ପ୍ରାଣନାଥ ସଙ୍ଗେ ।
କାତର ନୋହିବ ସଖୀ ରତିକଳା ରଙ୍ଗେ ॥
ତବ ଭାବ ଭାବି ସେବା ସେବ ମନ ଜାଣି ।
ପତିବ୍ରତା ସାଧ୍ୱୀ ତୁ ସତୀଶିରୋମଣି ॥
ଯାହା ଆଜ୍ଞା ଦେବୁ ତାହା କରିବୁଁ ନିଶ୍ଚୟ ।
ରସ ରଖି ଅଳ୍ପହିଁ ନୋହିବୁ ପରିଚୟ ॥
ଅବ୍ୟୟ ବ୍ୟୟରେ ସଖି ମୁଦ୍ରିତ ହୋଇବୁ ।
ରତି ଅନ୍ତେ ଯେମନ୍ତେଣ ନୀରସ ନୋହିବୁ ॥
ପଳାଇ ଲୋଡ଼ନ୍ତେ ବ୍ରୀଡ଼ା ନ ଦେବୁଟି ଗୁଡ଼ ।
ତାର ହେଲେ ଅନୁରାଗ ଦିନେ ଦିନେ ବଢି ॥
ବୋଲେ ଜେମା ଯେତେ ସଖୀ ଦେଲ ଉପଦେଶ ।
କେମନ୍ତେ ରଖିବି ଚିତ୍ତେ ଧୈର୍ଯ୍ୟ ହେଲ ଧ୍ୱଂସ ॥
ବୁଡ଼ିଗଲା ଜନର କି ରହେ ବୁଦ୍ଧି ଦମ୍ଭ ।
କରେ ଯାହା ପଡ଼ଇ ତା କରେ ଅବଲମ୍ବ ॥
ଏମନ୍ତେଣ ଶ୍ରୀକୃଷ୍ଣ ସନ୍ନିଧେ ଯାଇ ମିଳେ ।
ଗଙ୍ଗା ଯେସନେଣ ସିନ୍ଧୁ ସଙ୍ଗମେ ଉଚ୍ଛୋଳେ ॥
ମୁଖଚନ୍ଦ୍ର ଲୁହିଁ ଚକ୍ଷୁପଦ୍ମ ସଙ୍କୁଚିତେ ।
ଚରଣକମଳେ ରହି ବୁଡ଼ ଭୃଙ୍ଗମତେ ॥
ଜୀବଆତ୍ମା ନବବଧୂଣ ମନ ନିଉଛୁଳ ।
ପାଦପଦ୍ମ ପୂଜି ଯେତେ ବିବେକ ସଞ୍ଚାଳ ॥
ନଖଗଣେ ନିଜଗଣ ରୂପ ବିକଶଇ ।
ଏମନ୍ତେ ସେ ଜେମା ଚିତ୍ତେ ଭ୍ରମେ ଆଶ୍ୱସଇ ॥
ଏକା କୃଷ୍ଣ ବିଜେ ବୋଲି ସଖୀଗଣ ଭଣ୍ଡି ।
ଏବେ କି ଯୁବତୀଗଣ ରହିଛନ୍ତି ବେଢ଼ି ॥
ଏମନ୍ତ ପୁରୁଷ ପାଇ ପଶୁପରମଣୀ ।
କଟାଁଇ ରହିବେ ପୂରେ ଦିବସ ରଜନୀ ॥
କାର୍ଯ୍ୟ ନ ଲଭୁଣୁ ମୁଁ ତ ପ୍ରଘଟ ହେଉଛୁ ।
ବିଗୁରିଣ ଏହା ଖେଦଚିତ୍ତେ ପଛଘଞ୍ଚ ॥
କୃଷ୍ଣ ମନ ଧନ ଲୁଟିଆଇ ଲେଉଟଇ ।
ଗଙ୍ଗା କି ସାଗରେ ପଶି ଉଜାଣି ଠେକଇ ॥
ସଙ୍କ ରୂପ ଚାହିଁ ମୋହେ ମଦନମୋହନ ।
ତରଳହୃଦୟ ମନ ନିଶ୍ଚଳଲୋଚନ ॥
ବିଗଦଧ ଧୀରୋଦାତ୍ତ ଲକ୍ଷଣ ବହିଲେ ।
ତଥାପି ଧଇର୍ଯ୍ୟ ଧରି ନ ପାରିଲେ ଭଲେ ॥

ଯାଜ୍ଞିକ୍ୟ ବାଧାରେ ଧାଇଁ ଧରି କୋଳ କଲେ
ପ୍ରାଣବନ୍ଧୁ କାହିଁକି ରେ ଯାଉଛୁ ବୋଇଲେ ॥
ଅଙ୍ଗେ ଅଙ୍ଗ ପରିରମ୍ଭ ଦୁହେଁ ପ୍ରେମେ ଭାସି ।
ଦଳିତ କଜ୍ଜଳ ହରିତାଳ ମିଶାମିଶି ॥
ପ୍ରମୋଦେ ପ୍ରମୋଦେ ସମର୍ପିତ ପ୍ରାଣେ ପ୍ରାଣେ ।
ଭୁଜେ ପରିବନ୍ଧ ମୁଖପଦ୍ମ ଗନ୍ଧଘ୍ରାଣେ ॥
ସେହି ମୁହିଁ ମୁହିଁ ସେହି ଦେହକୁ ପାଶୋରି ।
ରସେ ଢଳହଳ ଅନୁରାଗ ଭାବ ପୂରି ॥
ବୋଲେ ବନେଶ୍ୱରୀ ଶୁଣ ପୁରୁଷଉତ୍ତମ ।
ନବବଧୂ ସମାଗମେ ଯେଥାଶତ କର୍ମ ॥
ଲୋକଅପବାଦ ଗୁରୁଜନ ବାଦ ବିଘ୍ନ ।
ନ ପଡ଼ିବ ଭୋଗ୍ୟ କର ଜାଣି ଶୁଭ ଲଗ୍ନ ॥
ବୃନ୍ଦା ଉପଦେଶେ ହରି ପ୍ରିୟା କର ଧରି ।
ମାଧବୀ ମଣ୍ଡପ ବିଜେ ଘେନି ସହଚରୀ ॥
ହୁଳହୁଳି ଦେଇ ପୁଷ୍ପ-ଆସନେ ବସାଇ ।
ମଙ୍ଗଳ ପଢ଼ନ୍ତି ପ୍ରେମଉତ୍କଣ୍ଠା ମିଶାଇ ॥
ଦ୍ୱିଜରାଜମୁଖୀ ସଖୀ ବରଣ ବେଭାରେ ।
ସଂକଳ୍ପ ଉଚ୍ଚରେ ମୁରଯଜ୍ଞ ଆରମ୍ଭରେ ॥
ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି ତିନିବାର ଉଚ୍ଚାରିଲେ ।
ଗଙ୍ଗା ଆଦି ପୁଣ୍ୟନଦୀ ସିନ୍ଧୁ ସୁମରିଲେ ॥
ପୂର୍ଣ୍ଣକୁମ୍ଭ ସ୍ଥାପିଣ ବରୁଣ ପୂଜାବିଧି ।
ମନମଥ ମନୋରଥ ଯେଣେ ହେବ ସିଦ୍ଧି ॥
ଦୂର୍ବାକ୍ଷତ ପୁଷ୍ପ ଦେଇ ଆଳତି ବନ୍ଦାଇ ।
ଏକ ସଖୀ ଆନରକଙ୍କୁ ବଧାଇ ଯଧାଇ ॥
ଲଳିତା ଲଳିତେ ସେ ବିଡ଼ିଆଲାଗି କରେ ।
ବିଶାଖା କର୍ପୂର ନାନା ଗନ୍ଧପାତ୍ର ଧରେ ॥
ସୁରସା ପକାଇ ଖଣ୍ଡ ବସନ ସଂଯୋଗେ ।
ଭ୍ରମର ଚମ୍ପକଲତା ଢାଳଇ ସରାଗେ ॥
ରଙ୍ଗଦେବୀ ନାନା କଉତୁକ କଥା ଭଣି ।
ସୁଦେବୀ ସୁବାସ ପାଣି ରତ୍ନଝରି ଘେନି ॥
ତୁଙ୍ଗବିଦ୍ୟା ଉତ୍ସାହନ୍ତ ବିବିଧବିଧାନେ ।
ଇନ୍ଦୁରେଖା ଦର୍ପଣ ଧରଣ ସନ୍ନିଧାନେ ॥
ଏହୁ ଅଷ୍ଟସଖୀଙ୍କର ମୂଳସେବା ଏହି ।
ଅବକାଶ ଅନୁମତେ ଯେତେବେଳେ ଯେହି ॥

ମଞ୍ଜରୀସମୂହ ଛନ୍ତି ନାନା ସେବା ଯହିଁ ।
କେତେହେଁ ବିସ୍ତାରି ତା କହିବା ଗୋଟି ଗୋଟି ॥
ଗାନ୍ଧର୍ବେ ଗାନ୍ଧର୍ବୀ ଶୁଭଉତ୍ସବ ବଢ଼ାଇ ।
ନାନା ପୁଷ୍ପ ତୋଳି ଶିରେ ଗଭାକୁ ଚଢ଼ାଇ ॥
ପୁଷ୍ପଦୋଳା ପଲଙ୍କେ ବିଜୟେ ତହୁଁ କଲେ ।
ନବଘନ କୋଳେ ବିଦ୍ୟୁ ସ୍ଥିକାନ୍ତି ରହିଲେ ॥
କିଶୋର କିଶୋରୀ ସୁଖେ ସଖୀ ପ୍ରମୋଦିତ ।
ମୂଳଜଳେ ଯେସନ୍ତ ପୁଷ୍ପ ଲତା ପଲ୍ଲବିତ ॥
ଧୀରେ ଦୋଳ ଦୋହଲାଇ ରଙ୍ଗେ ଗୀତ ଗାଇ ।
ଶୁଣି ବ୍ରଜ ଜନ ମନ ଆନନ୍ଦିତ ହୋଇ ॥
ଦୋଳାରୁ ଓହ୍ଲାଇ ବନେ ପଶିଣ କ୍ରୀଡ଼ନ୍ତି ।
ନାନା ପୁଷ୍ପ ତୋଳି ଆଳୀ ଶିରେ ମଉଡ଼ନ୍ତି ॥
ରମ୍ୟସ୍ଥାନ ଦେଖିଣ ବିଶ୍ରାମ କଲେ କ୍ଷଣେ ।
ସାରୀ ଶୁକ ପିକ ଚକ୍ରବାକ ଡାକ ଶୁଣେ ॥
ମୁଖପଦ୍ମ ଭ୍ରମନ୍ତେଣ ଭ୍ରମର ଭ୍ରମନ୍ତି ।
ଏମନ୍ତ ଦେଖିଣ ବୃନ୍ଦା ଉତ୍କଣ୍ଠ କରନ୍ତି ॥
କାମରାଜ ଉପରେ ଏ ମଣ୍ଡଳ ବୋଡ଼ାଇ ।
ରାଶି ଦେଇ ଓଗାଳଇ ଦେଖାଇ ବଢ଼ାଇ ॥
ଯଜ୍ଞ ଆରମ୍ଭରେ ତାର ହୋଇଛି ପରଜା ।
ତେଣୁକରି ଦେଖାଏ ସେ ରାଜାର ତରଜା ॥
ପ୍ରିୟାରସେ ହବିର୍ଭାଗ ପାଇ ହେଲ ତୋଷ ।
ନାଗର ନାଗରୀ ଦୁହେଁ ଶୁଣି ହସ ହସ ॥
ଶ୍ରୀହସ୍ତେ କୁସୁମ ତୋଳି ଗୁନ୍ଥି ରତ୍ନମାଳ ।
ଜାନୁରେ ବସାଇ ପ୍ରିୟା ମଦନଗୋପାଳ ॥
କବରୀ ସାଜିଆଇ ରଙ୍ଗ ଯତନେ ମଣ୍ଡିଲେ ।
ମକର ଲିହନ୍ତେ କରକମ୍ପେଣ ଛୁଡ଼ିଲେ ॥
କୁଚେ ପତ୍ରାବଳୀ ଲିହିବାକୁ ବଢ଼ ମନ ।
ଧୈର୍ଯ୍ୟ ନ ବଳେ ଆଦର କରିବାକୁ ବସନ ॥
କୃପଣ ଧନରେ ଚେତା ପ୍ରାୟେ ନେଜମାନଦଣ୍ଡ ।
ଟସକର କୁଟିଳ କ୍ଷୁଣ୍ଣର ମନ ରହି ॥
ଯୁବତୀସମୂହ ନାନାରସେ ଭଙ୍ଗୀ ଲୀଳ ।
ନେତ୍ର ପ୍ରାନ୍ତ ଚକ୍ର ବୃଦ୍ଧି ତହିଁ ଅଛି ମଣି ॥
ଗୁପତେଣ ନଖ ଅଗ୍ର କରେ ଗତାଗତି ।
କୁମ୍ଭସ୍ଥଳେ ଅଙ୍କୁଶ ଭେଦନ୍ତେ ଯେସନ୍ତ ହସ୍ତୀ ॥

ତହୁଁ କେତେଦୂର ଯାଇ ଶ୍ରମ ଭୁଷି ଦେହେ ।
ଜଳକେଳି କରନ୍ତି ସେ କୁଣ୍ଡ ଅବଗାହେ ॥
ଝିନବାସ ଜଡ଼ିତ ହରଇ ଯଉବନ ।
ରହିଲେ ଆକଣ୍ଠେ ବୁଡ଼ି ଯୁବତୀଙ୍କ ଗଣ ॥
ବୋଲନ୍ତି ନାଗର ଏହା ନୁହଇ ଉଚିତ ।
ନାଭି ବଳି ସ୍ନାନକଲେ ଅଧର୍ମ ବହୁତ ॥
ଶୁଣି ପାଞ୍ଚ ସାତ ନାରୀ ହୋଇ ଏକମେଳ ।
କୃଷ୍ଣ ନୟନକୁ ଜଳ ମାରି କରି ଗୋଳ ॥
ପଛମୁଖ ହୋଇ ହରି ତାଙ୍କେ ନେଲେ ହସ୍ତ ।
ଶ୍ରସ୍ତ ହୋଇ କୂଳେ ଉଠି ଯୁବତୀ ସମସ୍ତ ॥
ଚନ୍ଦନ ପିଚକା ନଳୀ ଧରି କୃଷ୍ଣ କରେ ।
ମୃଦୁହାସେ ବାସ ମାତ୍ରେ ଯଉବନ ପରେ ॥
ଲଜ୍ଜା ପ୍ରେମ ସହ କେହୁ କୃଷ୍ଣ ଆଲିଙ୍ଗନେ ।
ପରିରମ୍ଭ କରି କର ଆଚ୍ଛାଦେ ନୟନେ ॥
କେହୁ ସଙ୍କୁଚିତେ ରହି କେ ଅଙ୍ଗ ମୋଡ଼ଇ ।
କେବଣ ନାୟିକା ବାହୁ ଛନ୍ଦଣୀ ଜୋଡ଼ଇ ॥
କେହୁ ଅଙ୍ଗ ଢ଼ାଳି ରହେ କେ କରେ ବଞ୍ଚାଇ ।
କୁଚକୁମ୍ଭ ସଙ୍ଗ କୃଷ୍ଣ ଲୋଚନେ ଲୁଚ୍ଛଇ ॥
ଶତମୁଖୀ ପିଚକା ପଡ଼ନ୍ତେ ଘନ ଘନ ।
ଗଉର ଲାବଣ୍ୟ ତନୁ ନମଜେ ବସନ ॥
ଆନନ୍ଦ ଉଦ୍ରେକ ହରି ଅଙ୍ଗଶୋଭା ଦେଖି ।
ଜାମ୍ବୁନଦ ପଙ୍କେ ଖଞ୍ଜରୀଟ ଆଖି ଲାଖି ॥
କୃଷ୍ଣଙ୍କୁ ପ୍ରବଳ ଦେଖି ସୀମନ୍ତିନୀ ଯୂଥ ।
ପିଚକାରେ ଅଦୃଶ୍ୟ କଲେକ ନେତ୍ରପଥ ॥
ସୁଗନ୍ଧ ଚନ୍ଦନ ବୋଳି ଅମୋର ଶରୀରେ ।
ଆଗହୁଁ ସମ୍ପୂର୍ଣ ବୃନ୍ଦା ଅଛି ଯତନରେ ॥
ଜଳଯନ୍ତ୍ର ଦ୍ୱାରି ହରି ଚତୁ ଅବଲମ୍ବେ ।
ମୋହନ ମୁରଲୀ ଧରି ବଜାନ୍ତି ପଞ୍ଚମେ ॥
ଶୁଣିଣ କାମିନୀବୃନ୍ଦ ମତ୍ତ ବିଶୋରିଲେ ।
ଜଳଯନ୍ତ୍ର ପଖାର ସଂଯୋଗି ନ ପାରିଲେ ॥
କମ୍ପମାନ ହୋଇ ହସ୍ତୁଁ ଆୟୁଧ ପଡ଼ିଲେ ।
ଆପଣା ଇଚ୍ଛାରେ ଯାଇ କୃଷ୍ଣଙ୍କୁ ବେଢ଼ିଲେ ॥
ସଭା କରି ପଣା ଖେଳାଇଲେ ବେଢ଼ି ଜନ ।
ହାର ଜିଣେ ଯୁଦ୍ଧ କଲେ ଚୁମ୍ବ ଆଲିଙ୍ଗନ ॥

କେହ୍ନ ହାରେ କେହ୍ନ ଜଣେ ପଣାର ଆପୂତ ।
ହାର ଜଣା ଉଭପୂରେ କୃଷ୍ଣର ସମ୍ମତ ॥
ଚତୁସ୍ତ୍ରୀ ଯୁବତୀ ଥାଇ ବୋଲନ୍ତି ଏ ମିତ୍ର ।
ଆମ୍ଭର ହାରକୁ ତୁମ୍ଭ ବଂଶୀ ଗୋଟି ଆଡ଼ ॥

ତୁମ୍ଭେ ଯେବେ ଜିଣିବ ଏ ଉରହାର ନେବ ।
ଆମ୍ଭର ଜିତାକୁ ତୁମ୍ଭ ବଂଶୀଗୋଟି ଦେବ ॥
ଏମନ୍ତ ସେ ହୁଡ଼ ରଖି ପାତନ୍ତେ ବିଦାନ ।
ପଡ଼ିଲା ପଞ୍ଝତି ଜିତେ ଯୁବତୀରତନ ॥
ଲଳିତା ଉଚ୍ଛୁଡ଼ ବଂଶୀ ନେଲେ ଛଡ଼ାଇ ।
ଏହି ବେଣୁଖଣ୍ଡି କୁଳବଧୂଙ୍କି ବୁଡ଼ାଇ ॥
ଆଉ କସ ଏ ପିଡ଼କୁ ରଖ ଦାମୋଦର ।
ଆମ୍ଭ କୁଚଶମ୍ଭୁକୁ ତୁମ୍ଭର ମୋତିହାର ॥
ସମାନ ନୋହିଲେ ଅଙ୍ଗ ଭୂଷଣ ଯେ ନେବ ।
ହାରିଲେ ତୁମ୍ଭ ଇଚ୍ଛାରେ ମୋତି ଯାଚି ଦେବ ॥

ହୁଡ଼ ରଖି ତୋଡ଼ କରି ପାତନ୍ତେ ସେ ବେନି ।
ଡାକନ୍ତି ସେ ଦଶ ଚଉଦ ଯେ ଘୂରି ତିନି ॥
କେହ୍ନ ଡାକେ ଦୁଗା ଘୂରି ଦୁତିଆ ପଞ୍ଝତି ।
କେହ୍ନ ଡାକେ ବାମଞ୍ଚା କେ ଡାକେ ବିଦ୍ୟୁବଣ୍ଡି ॥
ଏକା କୃଷ୍ଣ ସକଳେ ସପକ୍ଷ ଜେମା ହୋଇ ।
ଘୂରି ଘୂରି ଆଠ ପାଞ୍ଚ ଜଣେ ଜେମାଦେଇ ॥
ଦେଖିଣ ବିଶାଖା କଣ୍ଠୁ ନେଲେ ହାର କାଢ଼ି ।
ସୁଚିତ୍ରା ନେଲେ ଯେ କୁଣ୍ଡଳଯୋଡ଼ ଫେଡ଼ି ॥
ଚମ୍ପକଲତା ଯେ କରୁ କଙ୍କଣ କାଢ଼ିଲେ ।
ରଙ୍ଗଦେବୀ କଟିରୁ ଯେ କିଙ୍କିଣୀ ଫେଡ଼ିଲେ ॥
ସୁଦେବୀ ଚରଣୁ ଯେ ନୂପୁର ଯୋଡ଼ ନେଲେ ।
ତୁଙ୍ଗବିଦ୍ୟା ଅଙ୍ଗୁଳି ମୁଦ୍ରିକା ସଯତନେ ॥
ଶଶିରେଖା ନାସା ଗଜମୋତିକ ଘୋଟଇ ।
ଏହି ସିନା ଆମ୍ଭ ସର୍ବ ମନକୁ ଘାଣ୍ଟଇ ॥
ରହ ରହ ପ୍ରାଣସଖୀ ରାଧା ସେ ଡାକନ୍ତି ।
ପ୍ରାଣନାଥ ମୋହର ଯେ ଅଲାଗା ହସନ୍ତି ॥
ଯେତେ କେହ୍ନେ ବଳେ କର୍ଣ୍ଣକୁଣ୍ଡଳ ନେବାକୁ ।
ହାତ କେହ୍ନେ ଗଲା ଗଳା ମୁକୁତାମାଳାକୁ ॥

କଙ୍କଣ କିଙ୍କିଣୀ ସଖୀ କେମନ୍ତେ ଯେ ଫେଡ଼ି ।
ଏତେବେଳେ ସଖୀ ଟିକେ ଦୟାହିଁ ନ ମଡ଼ି ॥
ମଞ୍ଜୁଳ ମଞ୍ଜୀର ଯୋଡ଼ ନାହିଁ ତ ପଦରେ ।
ଅଙ୍ଗ ଆଭରଣ ଶୂନ୍ୟ ବିଚ୍ଛେଦ ଖେଦରେ ॥

କେତେ ଅପମାନ କର ପ୍ରାଣଧନ ନାଥେ ।
ନ ପାରେ ଅବସ୍ଥା ଏତେ ଦେଖି ନେତ୍ରପଥେ ॥
ତୁମ୍ଭର କରିଣ ଏବେ ଅଙ୍ଗେ ଆଏ ଖଞ୍ଜି ।
ତେବେ ସେ ହୋଇବ ମୋର ନେତ୍ରର [illegible] ॥

ବୋଲନ୍ତି ସଜନୀ ରାଧା କୃଷ୍ଣର କି ଦୋଷ ।
ବଂଶୀ ସଙ୍ଗେ ମିଶି ଏ କରନ୍ତି ଧୈର୍ଯ୍ୟ ଧ୍ୱଂସ ॥
ତୁମ୍ଭେ ଲାଗିଥାଅ ଏବେ କୃଷ୍ଣ ସଙ୍ଗେ ଥିବ ।
ଆମ୍ଭର ହୋଇଣ ସେହ୍ନ ବିବାଦ ନୋହିବ ॥
ଏହା ଭଣି ମଣ୍ଡନ କରିଲେ ସଯତନେ ।
ବସିଲେ ସୁପକ୍ୱଫଳ ମିଷ୍ଟାନ୍ନ ଭୋଜନେ ॥
ସ୍ୱାଦୁଫଳ ଯତନେ ଅଣାଇ ବନେଶ୍ୱରୀ ।
ସଖୀ ଆଣିଥିଲେ ଯେ ମିଷ୍ଟାନ୍ନ ନର୍ଭ କରି ॥
ଏକାସନେ ହରି ରାଧା ଭୋଜନ କରନ୍ତି ।
ଲଜ୍ଜା ତେଜି ଅଧର ଅମୃତେ ଲୋଭମତି ॥
ସଖୀଗଣ ଅବଶେଷ ଭୁଞ୍ଜି ତୋଷ ହୋଇ ।
ଆଚମନ ସାରି ସଖୀ ତାମ୍ବୂଲ ଭୁଞ୍ଜାଇ ॥
ନିଭୃତ ନିକୁଞ୍ଜ ଶେଯ ଯତନ ହୋଇଛି ।
ପୁଷ୍ପଗବାକ୍ଷରେ ଧୀରସମୀର ବହୁଛି ॥
ପୁଷ୍ପଚନ୍ଦ୍ରାତପ ପୁଷ୍ପଗର୍ଭଦଳ ଶେଯ ।
ଘ୍ରାଣି ସିଞ୍ଚି ସମ୍ଭୁଲି ଶ୍ରୀକର୍ପୂର ରଜ ॥
ତହିଁ ବିଜେ କରାଇଲେ କିଶୋର କିଶୋରୀ ।
କୁସୁମ କବାଟ ପଡ଼ି ସଖୀ ଅପସରି ॥
ମନୋଭବେ ଗୋଚର ନୁହଇ ଯେଉଁ ରସ ।
ଅକଥନ ଲୋକରେ ସେ ନୁହଇ ପ୍ରକାଶ ॥
ଚିରକାଳ ବିହରର ତୃଷା ପୂର୍ଣ୍ଣ ନୁହେ ।
ଅଷ୍ଟଦଳ କୁଞ୍ଜେ ସଖୀ ଏହିଭାବେ ରହେ ॥

ପୁଷ୍ପରସ ମଧୁପାନେ ହୋଇଣ ପ୍ରମତ୍ତ ।
ବେଳୁଁ ବେଳ ଅତିଶୟ ଲୀଳାର ଉଦ୍ଧତ ॥
ବୃନ୍ଦାର ଆଦେଶେ ବୃକ୍ଷେ ସାରିକା ଭାଷଇ ।
ସୂର୍ଯ୍ୟପୂଜା ବିଳମ୍ବରୁ ଜଟିଳା ଆସଇ ॥
ଶୁଣି ସଙ୍କୁଚିତେଣ ବାହାର ବେନିଜନ ।
ସୂର୍ଯ୍ୟପୂଜା ଛଳରେ ଚଞ୍ଚଳ ରାଈ ମନ ॥
ବିଷାଦେ ବିଚ୍ଛେଦ ଚନ୍ଦ୍ର ଅର୍କସ୍ଥଳେ ଚଳେ ।
ସଖୀ ବେନି ଘେନି ହରି ବତ୍ସବାଳ ମେଳେ ॥
ବଧୂର ବିଳମ୍ବ ଦେଖି ଜଟିଳା ଆମନ୍ତେ ।
ବୃଦ୍ଧମୂର୍ତ୍ତି କଥା ଭାଷେ ମିଳି ତା ଅଗ୍ରତେ ॥
ବୋଲନ୍ତି ମୁଁ ଥିଲି ତୋର ବଧୂ ସନ୍ନିଧାନେ ।
ଆଜି ପୂଜା ପୂର୍ତ୍ତିଥି ଅନେକ ବିଧାନେ ॥
ପ୍ରସନ୍ନ ପାଇଲେ ବର ବାଞ୍ଛାସିଦ୍ଧି ଫଳ ।
ବଧୂ ଯୋଗେ ଉଜ୍ଜ୍ୱଳ ହୋଇଲା ତୁମ୍ଭ କୁଳ ॥
ପତିବ୍ରତା ସାଧ୍ୱୀ ସେ ସତୀଶିରୋମଣି ।
ମଧୁର ବଚନେ ସମସ୍ତଙ୍କ ମନ କିଣି ॥
ଧନ୍ୟ ତୁମ୍ଭ ପୁଣ୍ୟରେ ପାଇଛ କୁଳବଧୂ
ଧନ୍ୟ ଏ ଗୋକୁଳ ଧନ୍ୟ ଅଭିମନ୍ୟୁ ସାଧୁ ॥
ବୋଲଇ ଜଟିଳା ତୁମ୍ଭମାନଙ୍କର ଧର୍ମେ ।
କଲ୍ୟାଣ ଯେ କରୁଥାଅ ଏହି ଶୁଭ କର୍ମେ ॥
ବୃଦ୍ଧମୂର୍ତ୍ତି କଥାଭାବେ ମୋହିତ ହୋଇଲା ।
ଆନନ୍ଦେ ବିଧାଇ ବାସ ଅଳଙ୍କାର ଦେଲା ॥
ସୂର୍ଯ୍ୟ ପୂଜା ବଢ଼ାଇ ପ୍ରବେଶି ପୁରେ ରାଈ ।
ପୁରଜନେ ଆନନ୍ଦ କମଳ ମୁଖ ଚାହିଁ ॥
ସାୟଂ ପ୍ରବେଶିଲା ହରି ବତ୍ସ ନେଉଟାଇ ।
ବେନିଜନ ମନ ବେନି ନେଲେ ପାଳିଟାଇ ॥
ସ୍ନାନ ଯେ ସୁବେଶ ହୋଇ ମିଷ୍ଟାନ୍ନ ଭୋଜନେ ।
ଦୋହନ ବଢ଼ାଇ ସଭା ଘେନି ପ୍ରିୟଜନେ ॥
ଘଟ ଶିରେ ବହି ଯେତେ ଘଟିଆଳ ନାଟେ ।
ନାନା ଗୀତ ଗାଉଛନ୍ତି ଥାଇ ଯେଝା ଘାଟେ ॥
ଯେହି ରୂପେ ମନୋବୁଦ୍ଧି ଲୟ ରାଧାଠାରେ ।
ଲୌକିକ ମତରେ କରେ ନାଟ୍ୟସମାଗୃହରେ ॥
ପଲଙ୍କେ ପହୁଡ଼ି ସେହି ରସରେ ଭାଷଇ ।
ନିଦ୍ରା ଗଲେ ସ୍ୱପନରେ ସେହି ସେ ଦିଶଇ ॥

ଏଥୁଁ ରତିଗ୍ରନ୍ଥେ ରାଧା କାନ୍ତବିଚ୍ଛେଦରେ ।
ନିଶି ଶେଷେ ବନାଗମ ମନପ୍ରମାଦରେ ॥
ସ୍ନାନ ସୁବେଶ ହୋଇଣ ନୃପତିଦୁଲ୍ଲଣୀ ।
ଦାସୀ ପରଗୃହରେ ବେଳ ପୁଚ୍ଛେ ପୁଣି ପୁଣି ॥
ଏମନ୍ତେଣ ନାତି ହରି ବଢ଼ାଇ ବାହାର ।
ବଳଦେବ ସହିତେଣ କାନନେ ବିହାର ॥
ଏମନ୍ତେଣ ଗୋପାଳେ ଗୋଧନ ଗୋବର୍ଦ୍ଧନେ ।
ଚରନ୍ତେ ଦେଖିଲେ ବତ୍ସବାଳ ସନ୍ନିଧାନେ ॥
ହେମାରବ କରି ଗାଈ ଧାଇଁଣ ଅଇଲେ ।
ସ୍ତନଭରି ବତ୍ସଙ୍କୁ ଲେହିଣ ପିଆଇଲେ ॥
ଗୋପାଳେ ପୁଅଙ୍କୁ ଧରି ଦିଅନ୍ତି ଚୁମ୍ବନ ।
କାଖେ କାନ୍ଧେ ଗଲେ କେହୁ କରେ ଆଲିଙ୍ଗନ ॥
ଅତିଶୟ ସ୍ନେହ ଦେଖି ବିସ୍ମରନ୍ତି ରାମ ।
ଦିଶନ୍ତି ସକଳେ ଏ କୃଷ୍ଣ ଅନୁପମ ॥
ନିଜ ବତ୍ସବାଳ ଅନ୍ୟେ ନ ଛନ୍ତି କାହିଁ ।
କୃଷ୍ଣଙ୍କୁ ପୁଚ୍ଛନ୍ତି ସେ ସଂଶୟ ମନେ ବହି ॥
ପ୍ରଣାମ କରିଣ କରଯୋଡ଼ି କହେ ହରି ।
ବାଳକ ସଙ୍ଗରେ ମୁଁ ଭୋଜନଲୀଳା କରି ॥
ଭ୍ରମ ହୋଇ ବ୍ରହ୍ମା ଗର୍ବ ବହି ନ ଜାଣିଲା ।
ମୋତେ ମାୟା କରି ବତ୍ସବାଳ ହରିନେଲା ॥
ଏ ଗୋପନଗର ଚିନ୍ତା ନୋହିବା ନିମିତ୍ତ ।
ଉପାୟ କରିଣ ବତ୍ସବାଳ କଲି ଜାତ ॥
ଶୁଣି ରାମ ତୋଷେ ହରି ଆଲିଙ୍ଗନ କଲେ ।
ଆମ୍ଭର ମର୍ଯ୍ୟାଦା ଭଲା ରଖିଲୁ ବୋଇଲେ ॥
ଏମନ୍ତେଣ ବରଷ ସମ୍ପୂର୍ଣ୍ଣେ ବେଦବର ।
ଗର୍ବ ମନେ ପୁଣି ମିଳେ ଶ୍ରୀବୃନ୍ଦାବନର ॥
ବତ୍ସବାଳ ହରି କମଣ୍ଡଳରେ ରଖିଲା ।
କେମନ୍ତ ଆକୁଳ ହେଉଥିବେ ନ ଦେଖିଲା ॥
ଏମନ୍ତ ବିଚାରି ହଂସ ଆରୋହି ବିଜୟ ।
ଦେଖିଲେ ସେ ବୃନ୍ଦାବନ ସର୍ବ ବ୍ରହ୍ମମୟ ॥
ତରୁଲତା ମୂର୍ତ୍ତିମନ୍ତ ଯଜ୍ଞ ଆରମ୍ଭରେ ।
ପର୍ଣ୍ଣ ପୁଷ୍ପ ଫଳ ମଧୁ ଇନ୍ଧନ ସମ୍ଭାରେ ॥
ଉଦରେ ଅନଳ ସ୍ଥାପି ସମିଧ କ୍ଷେପନ୍ତି ।
ଶୁକ ପିକ ଆଦି ଦ୍ୱିଜ ନିଗମ ପଢ଼ନ୍ତି ॥

ମୃଗଗଣ ବ୍ରହ୍ମଜ୍ଞାନ କରନ୍ତି ବିସ୍ତର ।
ସର୍ବ ଦେବ ହବିର୍ଭାଗ ଲୋଭେ ପରସ୍ପର ॥
ଘନମାଳା ଯେମନ୍ତ ଇନ୍ଦ୍ର ଅମୃତ ବରଷେ ।
ବନସ୍ଥଳ ଔଷଧୀଣ ଆହ୍ଲାଦ ରସେ ॥
ଅଷ୍ଟନିଧି ଯେମନ୍ତ ସେ କୁବେର ରହଇ ।
ମନ୍ଦଗନ୍ଧ ଶୀତଳେଣ ସମୀର ବହଇ ॥
ଯମୁନା ସଙ୍ଗରେ ସେବା କରଇ ବରୁଣ ।
କରପଦ୍ମ ଯୋଡ଼ି ଦୂରେ ଅଛି ଯମରାଜ ॥
ଏମନ୍ତ ସକଳ ଦେବେ ବ୍ରହ୍ମର୍ଷି ଆଦି ।
ବ୍ରହ୍ମଜ୍ଞାନ ଶୁଣିବାରେ ହୋଇ ଅନୁବାଦୀ ॥
ଲକ୍ଷ ଲକ୍ଷ କାମଧେନୁ ସର୍ବବାଞ୍ଛା ଦ୍ରୁମେ ।
ସର୍ବଫଳ ସିଦ୍ଧି ବ୍ରହ୍ମା ଦେଖି ଚିତ୍ତ ଭ୍ରମେ ॥
ମଣିମୟ ସିଂହାସନେ କମଳନୟନ ।
କର ଯୋଡ଼ି ସ୍ତୁତି କରେ ସହସ୍ରଲୋଚନ ।
ଦେଖି ଭୟେ କମମାନେ ଚିତ୍ତ ମୋହ ଗଲା ।
କ୍ଷଣକରେ ଚେତା ପାଇ ଧ୍ୟାନହିଁ ରହିଲା ॥
ଦେଖଇ ପଶୁପବେଶ ନବଘନ ବର୍ଣ୍ଣ ।
କାଖେ ବେଣୁ ବେତ୍ର ବାମ କରେ କତ୍ତି ଅନ୍ନ ॥
ଦକ୍ଷିଣ କରରେ ଗୁଣ୍ଡି କବଳ ତୁଣ୍ଡରେ ।
ଏକା ହୋଇ ବଚ୍ଛା ଲୋଡ଼େ ଗହନମଣ୍ଡଳେ ॥
ଚରଣେ ପଡ଼ନ୍ତି ବ୍ରହ୍ମା ଭୟେ ଥରହର ।
ସ୍ତୁତି ବଖାଣଇ ଉଭା ହୋଇ ଶିରେ କର ॥
ନମସ୍ତେ ଗୋକୁଳଚନ୍ଦ୍ର ଅଖିଳ ଜୀବନ ।
ଶରଣରକ୍ଷଣ ନାଥ ମହିମା ଗହନ ॥
କର୍ମଯୋଗେ ଫଳଲୋଭେ ନାନା କର୍ମ କରେ ।
ସ୍ୱର୍ଗଫଳ ଭୁଞ୍ଜି ପୁଣ ପଡ଼ଇ ସଂସାରେ ॥
ଆତ୍ମଜ୍ଞାନ ଶ୍ରମମାନ ତୁଚ୍ଛ କୁଟିବାରେ ।
ଏ ଯାଗରେ ମୋର ପଦ ଲଭିବା ନ ପାରେ ॥
ଯାହାଙ୍କୁ ମୋହର ଚିତ୍ତ ସୁଦୟା ହୁଅଇ ।
ତାର ମୋର ପାଦପଦ୍ମେ ଭକ୍ତି ଉପୁଜଇ ॥
ଏତେ ଅଧିକାର ମୋତେ ଦେଇଅଛ ପ୍ରଭୁ ।
ତୋତେ ନ ଚିହ୍ନିଲିଁ ମୁହିଁ ଜାତ ହୋଇ ଗର୍ଭୁ ॥
ଆନ ଜନ କାହିଁ ତୋର ପାଇବେ ଗୋଚର ।
ଗୁଣ କର୍ମ ମହିମା ନିଗମେ ଅଗୋଚର ॥
ଏ ଗୋପୀ ଗୋପାଳ ଭାଗ୍ୟ କେ ଅବା କହିବ ।
ଏହି ଅପରାଧେ ମୁଁ ପାଇଲି ପରାଭବ ॥

ଶ୍ଳୋକଃ

ଆସାମହୋ ଚରଣରେଣୁ ଜୁଷା ମହଂ ସ୍ୟାଂ ।
ବୃନ୍ଦାବନେ କିମପି ଗୁଳ୍ମଲତୌଷଧୀନାଂ ॥
ଯାଦୁସ୍ତ୍ୟଜଂ ସ୍ୱଜନମାର୍ଯ୍ୟପଥଞ୍ଚ ହିତ୍ୱା ।
ଭେଜୁର୍ମୁକୁନ୍ଦପଦବୀଂ ଶ୍ରୁତିଭିର୍ବିମୃଗ୍ୟାଂ ॥
ଆଶା ମୋର ଏହି ପଦରେଣୁ ଥିବ ବହି ।
ବୃନ୍ଦାବନେ ତରୁଲତା ଗୁଳ୍ମହୋଇ ରହି ॥
ଏହିମତେ ବିନୟେ ଅନେକ ସ୍ତବ କଲା ।
ଗୋବଚ୍ଛା ବାଳକ ବେଗେ ଆଣି ସମର୍ପିଲା ॥
ଚରଣରେ ପଡ଼ିଣ ବୋଇଲ ବେଦବର ।
ଶ୍ରୀକରେ ତୋଳିଣ ହରି କହନ୍ତି ମଧୁର ॥
ମୋର ଦୁଷ୍ଟଆତ୍ମା ତୁ କିପାଇଁ ଶୋକ କରୁ ।
ସମସ୍ତଙ୍କୁ ଜାଣି ସିନା ବଚ୍ଛାବାଳ ହରୁ ॥
ନୋହିଲେ ଗୁପତଲୀଳା ପ୍ରକଟ ହୁଅନ୍ତା ।
ତୁହି ସିନା କରୁ ସର୍ବ ସର୍ଜନାର ଚିନ୍ତା ॥
ନିଜପୁର ଯାଇଣ ଜଗତ ଚିନ୍ତା କର ।
ଆଜ୍ଞା ଶିରେ ଘେନିଣ ଗଲାକ ବେଦବର ॥
ଗତକାଳ ପୁଅଙ୍କୁ ଘେନିଣ ହରି ଗଲେ ।
ବତ୍ସ ଲୋଡ଼ି ପୁଣ ମିଳେ ଭୋଜନର ସ୍ଥଳେ ॥
ଦେଖି ପୁଏ ବୋଲୁଛନ୍ତି ଭଲ ଭଲ ହରି ।
ଲୋଡ଼ି ଯାଇ କେତେବେଗ ଆଣିଲୁ ବାଛୁରି ॥
ଆମ୍ଭେ ଜଗି ବସିଛୁଁ ତୁମ୍ଭେ ଏଠାରେ ବସ ।
ବାଳକ ମଧ୍ୟରେ ବସି ଭୁଞ୍ଜି ହେଲେ ତୋଷ ॥
ଏମନ୍ତେଣ ସାୟଂକାଳେ ବତ୍ସ ବାହୁଡ଼ାଇ ।
ଗୋପେ ମିଳେ ଅବାବଧ ପତାକା ଉଡ଼ାଇ ॥
ସ୍ନାନ ବେଶ ଦୋହନ ଭୋଜନ ସରି ଅନ୍ତେ ।
ରଜନୀରେ ପଲଙ୍କେ ପହୁଡ଼ି ନିଦ୍ରାଗତେ ॥
ବୃଷଭାନୁ ନନ୍ଦିନୀର ଭାବ ହୃଦେ ଗୁଣି ।
ସେ ରସେ ବିଳସେ ଆନ ରସହିଁ ନ ଗଣି ॥
ସେହି ସଖୀଗଣ ସେବା ଘେନଇ ମୁଁ ମନେ ।
ଦାଶରଥି ଦାସ ସେବେ ପଦ ସମ୍ବାହନେ ॥
ସମ୍ପୂର୍ଣ୍ଣ ଚତୁର୍ଥ ବୋଲି ସହସ୍ର ପଦରେ ।
ଗୋପୀନାଥ ଦେବ ତନଅଙ୍କ ଭଦ୍ରବରେ ॥

ରାଧାକୃଷ୍ଣ ନବ ଅନୁରାଗ ପ୍ରେମସାର ।
ଜୀବରେ ମରମଗତ ଆନେ ନାହିଁ ପାର ॥
ଏଙ୍କୁ ଗର୍ଭ ଆଶ୍ରୟର ଗନ ମନ୍ଦ ମନେ ।
ଉପାସନା ସଜାତୀୟା ନିଷ୍ଠ ନ ଭେଦ ॥

ଗ୍ରନ୍ଥ କୃପା କରେ ହୃଦେ ମୁଁ କରେ ଲେଖନ ।
ସାଧୁଜନମାନେ ଏଥି ଦୋଷକୁ ନ ଘେନ ॥
ଶ୍ରୀକଣ୍ଠ ଦାସ ଗୋସାଇଁ ଚରଣ ଆଶ୍ରୟେ ।
ଦାଶରଥି ଦାସର ଏ ସ୍ଫୁରିତ ହୃଦୟେ ॥

ଚତୁର୍ଥବୋଲି ସମାପ୍ତ

ଶ୍ରୀରାଧାଗୋବିନ୍ଦ ଶରଣମ୍



## ପଞ୍ଚମ ବୋଲି

ରାଗ—ଖେମଟା ବୃତ୍ତି

ଜୟ ଗୋକୁଳ ସୁନ୍ଦରନନ୍ଦ ନନ୍ଦନନ୍ଦନ ।
ଜୟ ରାଧା ପ୍ରାଣବନ୍ଧୁ ଜଗଜନବନ୍ଦନ ॥
ଜୟ ମେଦିନୀମଣ୍ଡଳ ମୃଗମଦତିଳକ ।
ଜୟ ବୃନ୍ଦାବନଚନ୍ଦ୍ର ନୟନସୁଖଦାୟକ ॥
ନବଜଳଦ ନୀଳମଣି ମୃଦୁମଞ୍ଜୁଳ ତନୁ ।
କୁଳବତୀ ବ୍ରତ ହନ୍ତା କାମ ଜନମ ମନୁ ॥
ଶୃଙ୍ଗାରର ସାଗରବର ଧଇର୍ଯ୍ୟେ ମେରୁ ।
ଭକ୍ତଜନବତ୍ସଳ ଯେ ବାଞ୍ଛାକଳପତରୁ ॥
ବେଣୁବାଦନେ ମୋହନେ ମୋହି ଗୋକୁଳନାରୀ ।
ନଟବର ବେଶ ଛବି ଗୋବର୍ଦ୍ଧନଧାରୀ ॥
ନାଶି ପୂତନା ଶକଟା ତୃଣା ବତ୍ସା ବକାକୁ ।
ଅଘା ଧଂସି ଉଦ୍ଧରିଲ ଗର୍ଭୁଁ ବତ୍ସବାଳଙ୍କୁ ॥
ରାଧା ଚନ୍ଦ୍ରାବଳୀ ଆଦି ଗୋପବାଳୀ ସକଳି ।
ବତ୍ସବାଳ ଜାତି କରି ଧାତା ଗର୍ବକୁ ଦଳି ॥
ଗୋପୀ ଗୋପାଳ ଆନନ୍ଦ କନ୍ଦ ସୁଖସାଧନ ।
ଶ୍ୟାମରଞ୍ଜନ ଜୀବନଧନ ରୂପେ ମଦନ ।
ଖେଳେ ତପନତନୟା ତୀରେ ଗୋପାଳୀମେଳେ ।
ବେନି ସହୋଦର ତେଜ ବୋଲି ଧାମବଦଳେ ॥
ଯନ୍ତ୍ର ଚରଣକମଳେ ମଧୁ ବିରହ ଖଣ୍ଡ୍ର ।
ରେଣୁ ଉକୁଟି ଶଦିତ ଭକ୍ତ ହୃଦୟ ମନ୍ତ୍ର ॥
ପଞ୍ଚ ସୁପଞ୍ଚ ଅଙ୍ଗୁଳି ପଞ୍ଚ ପଞ୍ଚା ବିଧାନେ ।
ଶାନ୍ତ ଆଦି ପଞ୍ଚରସ ସ୍ୱରୂପେ ଅନୁସନ୍ଧାନେ ॥

ନଭ ଆଦି ପଞ୍ଚଭୂତଗଣ ପରେ ପରେଶ ।
ରହେ ପୃଥକ ଅଙ୍ଗୁଳି ଶନ୍ଧ ଅନୁକ୍ରମେଣ ॥
ରେଖାଙ୍କୁଶ ବଜ୍ରଧ୍ୱଜ ଚକ୍ର ପଦ୍ମ ସ୍ୱସ୍ତିକ ।
ଅଷ୍ଟକୋଣ ଚକ୍ର ନବଚନ୍ଦ୍ର ଦକ୍ଷ ପଦକ ॥
ବାମେ ବିନ୍ଦୁ ତ୍ରିକୋଣ ଧନୁ ଅମ୍ବର ମଚ୍ଛ ।
ଅଙ୍ଗ ଅର୍ଦ୍ଧଚନ୍ଦ୍ର ଧନୁ ପଦଘଟ ପ୍ରତ୍ୟକ୍ଷ ॥
ଅଷ୍ଟ ଦ୍ୱଚଷଣ ଦଶେ ନବ ନବ ଶନ୍ଧରେ ।
ଶୋଭା କମନୀୟ ମୁକୁଟ ଏ ଧରଣୀ ଶିରେ ॥
ପାଦପଦ୍ମ ମକରନ୍ଦ ସୁଗନ୍ଧରେ ବାସଇ ।
ଦାସ ମାନସ ମଧୁପ ମଧୁପାନେ ରସଇ ॥
ବାଳ ଅରୁଣ ତରୁଣ ପଦ୍ମପାଦ ରଙ୍ଗିମା ।
ବନ୍ଧ୍ୟ ଆହ୍ଲାଦେ ଶୀତକର ମୁଖଚନ୍ଦ୍ରମା ॥
କ୍ୱଣ କ୍ୱଣିତ ନୂପୁର କ୍ଷୁଦ୍ର ଘାଘୁଡ଼ି ସାରେ ।
ଉଦେ ଉଡୁଗଣ ନିକର ଏ ବସ୍ତୁ ପ୍ରଦରେ ॥
ଦେବ ଋଷି ଆଦି ଏନ୍ତୁ ପଦ ଆଶ୍ରେ ଉଦ୍ଧତ ।
ଅତି ଦୁର୍ଲ୍ଲଭ ଜାଣି ମୁଁ ହେଲ ଶରଣାଗତ ॥
ସାଧୁଜନଙ୍କର କୃପାରେ କରଇ ପ୍ରକାଶ ।
ବ୍ରଜବିହାର ବୋଲି ପଞ୍ଚମ ପରମ ରସ ॥
ପଞ୍ଚଦଶାକ୍ଷରେ ଛନ୍ଦ ଅତି ଲଳିତ ଭାବ ।
ହରି ହୃଦପୂରେ କାହିଁ ମୋତେ ଏ ଅସମ୍ଭବ ॥
ତାଳବନରେ ଧେନୁକା ଧ୍ୱଂସିଲେ ବଳଦେବ ।
ବାମେ ବେନି ଅଧିକାର ସଖା ଧର୍ମରେ ଭାବ ॥

ବେନି ବରିହରେ ବୃନ୍ଦା ଉପଦେଶ ବଚନ ।
ନିମିଷକେ ତ କୁଞ୍ଜରେ ରାଧାକୃଷ୍ଣ ମିଳନ ॥
ସଖୀ ସଙ୍ଗେ ରସ ନାନାରଙ୍ଗେ ମକରଧ୍ୱଜେ ।
ଫୁଲକୋଦଣ୍ଡ କାଣ୍ଡ କଳିତ ଲଳିତ ଧ୍ୱଜେ ॥
କାମ ଗଞ୍ଜିଣି କାମିନୀକୁଳ ଧଇର୍ଯ୍ୟ ଧ୍ୱଂସି ।
କୁଞ୍ଜେ କୁଞ୍ଜେ ରତିରଙ୍ଗେ ସଖୀ ସଙ୍ଗେ ବିଳସି ॥
ବନେ ବନେ ବୁଳ ଏକ ଆରେ ଉପମା ହୁଳ ।
ବୃଷଭାନୁ ଜେମା ସମାସ୍ୟାକୁ ନ ପାରେ ବଳ ॥
ଉପଭୋଗ ସଂଯୋଗରେ ବୃନ୍ଦାଂ ସେବେ ତରୁଣେ ।
ମଧୁପାନେ ମତ୍ତ ହୋଇ ରତ ସୁରତରଣେ ॥
ପ୍ରାତଃକାଳେ ବ୍ରଜେଶ୍ୱରୀ କୁନ୍ଦଲତାକୁ ପେଷି ।
ଜଟିଳାକୁ କହି ରାଣ୍ଡ ପୁରେ ଦେନାଇ ଆସି ॥
କୃଷ୍ଣ ନିମିତ୍ତ ଅତି ଯତନେ ପାକ ସମ୍ପାଦ ।
ବଳବନ୍ତ ହେବେ ହରି ଦୁଷ୍ଟ ଦାନବ ଛେଦ ॥
ଏହି ସବୁ ଅନୁକ୍ରମେ ଗୀତ ହେବ ବିସ୍ତାର ।
ରାଧାକାନ୍ତ ଅପମାନରୁ କରିବେ ନିସ୍ତାର ॥
ନଳକୁବର ନାରଦେ ପୁଚ୍ଛେ ବନ୍ଧ ପୟୁର ।
କହ ହେ ମୁନି ରାଧାଗୋବିନ୍ଦଙ୍କ ସମାଚାର ॥
ଏହି ଅତି ଅମିୟଚରିତ ଶ୍ରବଣେ ପିଏ ।
ଭୁମ୍ଭ ବିନୁ ଏ ଗୁପତ ଲୀଳା କହିବ କିଏ ॥
ଏଥି ଉତ୍ତାରେ କେବଣ କୃତ୍ୟ କଲେ ଶ୍ରୀହରି ।
କହ ବୋଲି ମୁନି ପାଦଧୂଳି ଶିରରେ ବୋଳି ॥
ଗଦଗଦରେ ମୁନିବର ପୁଲକିତ ହୋଇ ।
ସ୍ୱେଦ ସ୍ତମ୍ଭ ଦମ୍ଭ ଆଦି ହରି ଭାବକୁ ବହି ॥
ସାଧୁ ମହିମା ଶ୍ରୁତିରେ ଶୁଣି ପଣ୍ଟରେ ଯାହା ।
ତୋର ଭାବେ ହରି ହୃଦେ ମୋର ପ୍ରକାଶେ ତାହା ॥
ପୂର୍ବେ ଲଳିତାଙ୍କୁ ପ୍ରସନ୍ନ କରାଇ ପଚାରି ।
ସେହୁ ଯାହା କହିଥିଲେ ତା କହିବ ବିସ୍ତାରି ॥
ଏକ ଦିନକରେ ବଳରାମ ସଙ୍ଗେ ବିହାର ।
ବନବିହାର ବେଶରେ ଧେନୁ ଅନ୍ନ ଆହାର ॥
କେହୁ କାଚ କାଛୁ କଟି ଘଣ୍ଟି ଘାଗୁଡ଼ି ସାରେ ।
ଶିରେ ରଜତନା ଭାଲେ ବୋଳିଙ୍କି ଚନ୍ଦନଗାରେ ॥
କେହୁ କର୍ଣ୍ଣପିଛ କାଛୁ ଜାନୁ ମୁକୁତା ଜାଳି ।
କେଉ କେଉ ହେମକିଙ୍କୁଳରେ ଝୁମ୍ପା ଓହଳି ॥
କେହୁ ସର୍ବାଙ୍ଗେ ଚନ୍ଦନ ଚୂଆ ଚିତ୍ର ବନାଇ ।
ରାମକୃଷ୍ଣ ପ୍ରଶଂସନ୍ତି କାହା ବେଶ ଅନାଇ ॥
କେହୁ ଚିକ୍କଣ ପଟନ୍ତ ନେତ ଗଣ୍ଠି ହୋଇ ।
ଶିରେ ଝୋମ୍ପି ଭଲେ ଝାମ୍ପି ଗୁରୁଚନ୍ଦନ ଶୋହି ॥
ହାର କେୟୂର କଙ୍କଣ ଘଣ୍ଟି ନୂପୁର ବାଜେ ।
ରଙ୍ଗମାଟି ଅଙ୍ଗେ ବୋଳି କେହୁ ପାଇକ ସାଜେ ॥
କେହୁ କସାଟ କୁଣ୍ଡଳ ଶିରେ ମୟୂର ଚୂଳ ।
ଗୁଞ୍ଜାଗୁଞ୍ଜ ଗୁଞ୍ଜାହାର ମୁ[illegible]ତମାଳ ॥
କେହୁ ମୃତ୍ତିକାଶି ବେଶବାସ କାଛ କାଛେଣି ।
କାମକନକ ଅନେକ ମୋଡ଼ଝଣ୍ଡା ସାଜେଣି ॥
ଆଡ଼ମ୍ବର ବାଙ୍କଚୂଳ ନାନା କୁସୁମ ଗଭା ।
ବାହେ ବାହୁଟି କୁଣ୍ଡଳ ହାର କଙ୍କଣ ଶୋଭା ॥
କ୍ଷୁଦ୍ର କିଙ୍କିଣୀ ନୂପୁର ବାଜେ ତାଳ ମାନରେ ।
ରଙ୍ଗେ ନୃତ୍ୟ କରେ ରାମକୃଷ୍ଣ ଅବଧାନରେ ॥
କେହୁ ମାଲବେଶ କାଛୁ ଅଙ୍ଗେ ବିଭୂତି ମାଖି ।
ଏକ ଆରେ ପଞ୍ଜାପଞ୍ଜି ହରି କରାଇ ସାକ୍ଷୀ ॥
କେହୁ ଗାଡ଼ି ଘୋଡ଼ା ଚଢ଼ି ଧାବେ ରାଜତ ବେଶେ ।
କେହୁ ମାହୁନ୍ତ ଗୋପାଳ ଗଜ କାନ୍ଧରେ ବସେ ॥
କେହୁ ଠେକା ପାଗ ଅଧାବଳି କେହୁ କାନେଟି ।
କେହୁ ବାଘ ଗୁଡ଼ିଆଳ କେହୁ ବାଘମୁହାଁଟି ॥
କେହୁ ଭାଟ ବେଶ ଧରି ଭୁଜରେ ବାହୁ ତୋଳଇ ।
ରାମକୃଷ୍ଣ କବିତ୍ୱରେ କଏବାର କରଇ ॥
କେହୁ ଗୋରଚନା ତିଳା କେହୁ କସ୍ତୁରୀ ଟିକା ।
କେହୁ ଅନ୍ନପୁଡ଼ା କାନ୍ଧେ ବାଡ଼ି ଲଗାଇ ଶିକା ॥
କେହୁ ସାତ ଥାଙ୍କ ଅନ୍ନ ଭାର କରି ବାହାର ।
କେହୁ ବୋଲେ ମହାବନେ ଆଜ ହେବ ବିହାର ॥
କେହୁ ଛତା ବାଡ଼ି କାନ୍ଧେ ଧରି ବଚ୍ଛା ଅଡ଼ାଇ ।
ଶିଙ୍ଗା ବେଣୁ ଖୁରି ବ୍ରଜବନ୍ଧୁ ସଙ୍ଗେ ଗୋଡ଼ାଇ ॥
କେହୁ ଦେଖାଇ କହନ୍ତି ରାମକୃଷ୍ଣ ମହିମା ।
ନେତ୍ରଚକୋରୀ ନିଷ୍କଳ ଧ୍ୟାନୀ ମୁଖଚନ୍ଦ୍ରମା ॥
ବନଗମନ ଉତ୍ସବେ ସର୍ବେ ଚଞ୍ଚଳ ମନେ ।
ନଦୀପାର ହୋଇ ସର୍ବ ପଶି ମହାକାନନେ ॥
ମନ ମଙ୍ଗେ ପେଷି ବାହୁଡ଼ିଲେ ଗୋପସୁନ୍ଦରୀ ।
ବନେ ଚରାଇ ବାଛୁରୀ ପୁଏ ରଙ୍ଗେ ବିହରି ॥

କେହୁ କମଳା ନାରଙ୍ଗ ଡାଳ ନୂଆଇ ତୋଳି ।
ନାନା ସୁବାସ କୁସୁମ ତୋଳି ଗୁନ୍ଥନ୍ତି ମାଳୀ ॥
କେହୁ ମୟୂର ନାଟକୁ ଚାହିଁ ନାଟ ଆରମ୍ଭେ ।
ହେଠମାନେଥଣ ଚରଣ ଉର୍ଦ୍ଧ୍ୱେ ତୋଳି ସମ୍ଭବେ ॥
କେହୁ ପିକ ଡାକ ଶୁଣି କୁହୁ କୁହୁ ଭାଷଇ ।
କେହୁ ଡାହୁକ ଧ୍ୱନିକି ଶୁଣି ଅନୁସରଇ ॥
କେହୁ ପକ୍ଷିକ ଉଡ଼ାଇ ଚାଲି ଗୋଡ଼ାଇ ଧାଏଁ ।
ମୃଗଗଣ ନିକଟରେ ମୃଗ ପରାଏ ହୁଏ ॥
କେହୁ ହଂସ ଚାଲି ଚାହିଁ ହଂସ ପରାଏ ଚାଲେ ।
ତରୁ ଡାଳେ ଡାଳେ ଡ଼ିଅନ୍ତି କେ ବାନର ମେଳେ ॥
କେହୁ ନାନା ଜୀବ ଭାଷା ଭାଷି ଲତାରେ ପଶି ।
କେହୁ ପଟକାହାଳରେ ଗୀତ ଆଳାପେ ଘୋଷି ॥
କେହୁ ଶାର୍ଦ୍ଦୂଳ ଭାଲୁଙ୍କ ଧ୍ୱନି କରି ଡରାଇ ।
କେହୁ ବଛା ନାମେ ରାଇ ମୃଦୁତୃଣ ଚରାଇ ॥
କେ କେ କେ ଡାକେ ଚେଣ୍ଟୋଇ ଯୋଡ଼ି ଗଗନେ ଉଡ଼ି
ଆନନ୍ଦେ ରାମକୃଷ୍ଣ ସଙ୍ଗେ ଗୋପସୁତେ ବିହରି ॥
କାହା ପାଦତଳୁ ଭୂମିବାସୀ ପତଙ୍ଗ ଉଡ଼େ ।
ଭୟେ ଚମକଣି ପଛେ ସଖା ଉପରେ ପଡ଼େ ॥
ଏକ ଆରେ ହସି ହାସେ କରତାଳକୁ ଦେଇ ।
କାହା ପଦଶ୍ରେ ପଡ଼ନ୍ତେ ଶଶା ଗଲା ପଳାଇ ॥
ଶିରେ ଝଡ଼ ପଡ଼ୁଅଛି ନାଗେଶ୍ୱର ବକୁଳ ।
ଜାତିଲତିକା ତଳେରେ ଶୋଇଅଛି ନକୁଳ ॥
ଶୁକ ଡାଳମ୍ବ ଡାଳେରେ କୃଷ୍ଣ ମହିମା ଗାଏ ।
ବେଢ଼ି ଏକ ଆରେ ଶ୍ରଦ୍ଧାଭରେ ଶୁଣନ୍ତି ସୁଏ ।
କାହିଁ କୃଷ୍ଣାଞ୍ଜନରଣ କାହିଁ କୁକ୍କୁଟ ଯୁଦ୍ଧ ।
କାହିଁ ପୁଚ୍ଛରଙ୍ଗେ ଲଂଘାଲଂଘି ଆହାର ସନ୍ଧ ॥
କେଉଁଠାରେଣ କସ୍ତୁରୀଯୂଥ ଅଛନ୍ତି ରହି ।
କୃଷ୍ଣ ସୁଗନ୍ଧ ଆଘ୍ରାଣି ଗାଢ଼ ନିଷ୍ଟଳେ ରହିଁ ॥
ତେଙ୍ଗ ଖଜୁରିଗଛରେ ବାୟା ସିଅଁନ୍ତି ବସା ।
ଅଧୋଦ୍ୱାର ରଞ୍ଜଣ ସୁରେଖ ବନ୍ଧ ବରଷା ॥
କୁହୁ ମାରି କପୋତ ଉଚ୍ଚେ ନାଦ କରନ୍ତି ।
ପକ୍ଷୀ କୋଳାହଳ ଶୋଭାବନ ମହାସମ୍ପତ୍ତି ।
ବୃକ୍ଷ ଫଳଭରେଣ ପ୍ରଣତ ଗୋବଦ୍ଧ ପାଦେ ।
ଲତା କୁସୁମ ବରଷି ମଧୁଧାରା ଆନନ୍ଦେ ॥

ଖଗ ମୃଗ ଦରଶନ ଲୋଭେ ସଙ୍ଗେ ଗୋଡ଼ାଇ ।
ଦେଖି ରାମକୃଷ୍ଣ ଭୁଲେ ଗୋପସୁତ ବଡ଼ାଇ ॥
ଏମନ୍ତେଣ ମନ୍ଦଗନ୍ଧ ଶୀତଳ ସମୀର ବହେ ।
ପକ୍ୱତାଳ ଆମୋଦେନ୍ତ ରାମ ଶ୍ରୀଦାମେ କହେ ॥
ସଉରଭ ଚହଟଇ ଚାହିଁ ଏଥି ଢଗେରେ ।
ବାଟ କଢ଼ାଅ ତାଳବନକୁ ଯିବା ବେଗରେ ॥
ଶୁଣି କର ଯୋଡ଼ି ବୃଷଭାନୁ କୁମାର କହେ ।
ତାଳବନରେ ଧେନୁକା ଢର. କୃଶଣ ରହେ ॥
ଅତି ଦର୍ପିଷ୍ଠ ଦାନବ ଭୟେ ନ ଯାନ୍ତି କେହି ।
ତେଣୁ ଗୋପରେ ଅପୂର୍ବ ତାଳ ଦେଖାନ୍ତ ନାହିଁ ॥
ଶୁଣି କୋପ ଗୁରୁତର ରାମ ଅରୁଣ ଆଖି ।
ତାଳବନକୁ ଧାବନ୍ତି ସର୍ବେ ବସ୍ତୁ ଉପେକ୍ଷି ॥
ତାଳ ଖାଇବା ଶ୍ରଦ୍ଧାରେ ସୁଏ ଉତ୍ସୁକ ମତି ।
ଗଗନରେ ସୁରଗଣେ ଜୟଧ୍ୱନି କରନ୍ତି ॥
କେତେ ଦୂରେଣ ଯାଇ ଦେଖିଲେ ସେ ତାଳବନ ।
ଅତି ଉଚ୍ଚ ସଞ୍ଚ ଘଞ୍ଚ ଫଳଭରେ ଶୋଭନ ॥
ଏକ ଏକ ଶାଖା ବହୋଳରେ ସଲଖ ତରୁ ।
ଅଗ୍ରେ ପତ୍ର ଛତ୍ର ଛାଇ ଫଳଭରେଣ ଗରୁ ॥
ବାହା ମାଣ୍ଡ ତାଳ କେହୁ ପାଡ଼ି ଝଙ୍କାଇ ଝାଡ଼େ ।
ଭକ୍ଷ ବୃକ୍ଷଣ ବାଜି ଅନେକ ଅବନୀ ପଡ଼େ ॥
ରାମ ବୃକ୍ଷେକ ଉପାଡ଼ି ବୃକ୍ଷ ବୃକ୍ଷେଣ ପିଟି ।
ଯେତେ ତାଳଫଳ ଝଡ଼ି ତରୁତଳରେ ଲୋଟି ॥
କୃଷ୍ଣ ପାଦ ପ୍ରହାରନ୍ତେ ତରୁ ପ୍ରଲମ୍ବ କରେ ।
ତାଳବନ ଭାଙ୍ଗି କରି କଲେକ ନିର୍ଭୟରେ ॥
ତାଳ ପଡ଼ନ୍ତେଣ ଘଡ଼ଘଡ଼ ଶବଦ କରେ ।
ଶୁଣି ଧାଇଁଲା ଧେନୁକା ଖରରୂପେଣ ଖରେ ॥
କୋପେ ଆସନ୍ତି ଅସୁରବଳ ବନ କମ୍ପାନ୍ତି ।
[illegible] ହରି ହରି ଜପନ୍ତି ॥
ମାଡି ବନ ଭଗ୍ନ ଦେଖି ଘୋର ଗର୍ଜନ କଲା ।
ସେଣେ ବଳଦେବ ଅଙ୍ଗେ ପାଦଘାତ ମାଇଲା ॥
ଦେଖି ନନ୍ଦ ବୃଦ୍ଧ ପାଦ ରାମ ଧଇଲେ ଦୃଢ଼େ ।
ବୁଲାଇ ବୃକ୍ଷେ ମରାଇଲେ ତାଳ ଅନେକ ଝଡ଼େ ॥
ମୁଖେଁ ରୁଧିର ପକାଇ ଦୈତ୍ୟ ଜୀବନ ହାରି ।
ଯେତେ ବନ୍ଧୁବର୍ଗ ସହିତାଇ କୃଷ୍ଣ ନିବାରି ॥

ଦେଖି ଦାନବ ମରଣ ଦେବେ ପୁଷ୍ପ ବରଷି ।
ଚାଲି ଆଇଲେ ଗୋପାଳେ ରାମକୃଷ୍ଣ ପ୍ରଶଂସି ॥
ତାଳଫଳ ଭାର ବୃନ୍ଦାବନେ ପୁଣ ହରଷ ।
ଦିନଶେଷରେ ଗୋପରେ ଆସି ହେଲେ ପ୍ରବେଶ ॥
ଏମନ୍ତେ କୃଷ୍ଣଙ୍କ ପୁଣ ନ ଗ୍ଲଅନ୍ତି ଷଣ୍ଢ ।
ଛଳେ ନ ରହନ୍ତି ମୂର୍ଚ୍ଛିମନ ଗୋବିନ୍ଦ ସେପଣ ॥
ଅବକାଶ ନୁହେଁ ବୃଷଭାନୁଜେମା ମିଳନେ ।
ବେନି ବିରହ ଉପାୟ ରଞ୍ଚି ଅନୁବଧାନେ ॥
ଏକଦିନେ ବୃଷଭାନୁଜେମା ସଖୀ ମେଳରେ ।
ବୃନ୍ଦାବନେ ଫୁଲ ତୋଳେ ସର୍ଯ୍ୟପୂଜା ଛଳରେ ॥
କୃଷ୍ଣ ଦରଶନ ଲାଳସାରେ ନେତ୍ର ବଞ୍ଚଇ ।
ବୃନ୍ଦା ଆଦି ସଖୀଗଣ ସଙ୍ଗେ ସୁଖେ ବଞ୍ଚଇ ॥
ବନପଲ୍ଲବଦଳ ମନୋହର ମଙ୍ଗଳମତେ ।
ଦ୍ୱିଜକୁଳ ଧ୍ୱନି ଫୁଲବୃଷ୍ଟି ମଳୟ ବାତେ ॥
କର ଯୋଡ଼ି ବୃନ୍ଦା ଜେମା ଶ୍ରୀମୁଖରେ ଜଣାଇ ।
ଖଗ ମୃଗ ତରୁ ଲତା ଦେଖାଇବ ମଣାଇଁ ॥
ହେ ୨ ବନେଶ୍ୱରୀ ଅଭିଷେକ କରନ୍ତି ଏଠାରେ ।
ନାନା ସୁବାସ କୁସୁମକୁଳ ବରଷେ ଶିରେ ॥
କାମସେନାପତି ଋତୁଶ୍ରେଷ୍ଠ ସଖାଙ୍କ ସେନା ।
ସର୍ବଜନ ସୌନ୍ଦର୍ଯ୍ୟ ସ୍ୱାମୀ ପଦେ ଧ୍ୱଏ ଦଇନା ॥
ଅଳି ମଞ୍ଜୁଳ ପରେ ଶଙ୍ଖନାଦ କରଇ ।
ମୟୂରଶ୍ରେଣୀ ମୂର୍ତ୍ତିକୁମ୍ଭଙ୍କୁ ଶ୍ରୀମୁଖରେ ନାଚଇ ॥
ଶୁକ ପିକ ଆଦି ଦ୍ୱିଜଏ ମଙ୍ଗଳ ଗାଇବି ।
ମୃଗ ମୁଖେ ତୃଣ ଧରି ରୂପ ଶୋଭା ଭାବନ୍ତି ॥
ଶୀତଗନ୍ଧ ସେନି ସମୀରେ ମଳୟ ମରୁତ ।
ତରୁ ଦ୍ୱିବ ଧାରି ମୁତ ଫଳଭରେ ପ୍ରଣତ ॥
ଚୂତ ବକୁଳ ମୁକୁଳ ଦେଖି ଭ୍ରମର ଢାଳେ ।
ନବପଲ୍ଲବ ବଞ୍ଜୁଳୀ ପଖା ପଡ଼େ ଗହଳେ ॥
ଶିରେ କେଶର କୁସୁମ ହେମଦଣ୍ଡୀ ଶୋଭନ ।
ଚିନ୍ତାମଣିମୟ ସିଂହାସନ ରତ୍ନ ଆସନ ॥
ରୁଚିର ପୁଷ୍ପରାଜ ଏ ମଣ୍ଡପ କୁସୁମେ ମଣ୍ଡି ।
ଚଉଦିଗେ ବନ୍ଧି ପଞ୍ଚଅଛି ପରାଗ ଗୁଣ୍ଡି ॥
ପୁଷ୍ପ ଚନ୍ଦନ ଶ୍ରୀଫଳ ମଧୁ ଆଦି ବିଧାନେ ।
ଚମ୍ପାକଳି ଦୀପାବଳୀ ଏ ମଙ୍ଗଳାରୋପଣେ ॥

ବନେଶ୍ୱରୀ କରି ଆଣିଛ ଏ ସକଳ ଜୀବେ ।
ମୂର୍ତ୍ତିମନ୍ତେ ସେବେ ଯମୁନା ଏ ସଜଳ ଭାବେ ॥
ଆମ୍ଭମାନଙ୍କୁ ହେ ଜେମା ଦୟା କରିଣ ଥିବା ।
ଅହର୍ନିଶି ସନ୍ନିଧିରେ ଯେବନ୍ଧ କରିବୁଁ ସେବା ॥
ଆଜ ଗୁରୁବାର ମୂର୍ତ୍ତିହସ୍ତ ପୁଷ୍ୟା ନକ୍ଷତ୍ର ।
ପ୍ରୀତିକୁମ୍ଭ ଯୋଗ ସଂଯୋଗରେ ଧରାଅ ଛନ୍ତି ॥
ଏତେ କହି ମଣିସିଂହାସନେ ବସେ କରାଇ ।
ଧୂପ ଧୂମ ଛତ୍ର ଚାମର ଦର୍ପଣ ଧରାଇ ॥
ଚଉପାଶେ ମିଳି ହୁଳହୁଳି ଦିଅନ୍ତି ବାଳୀ ।
ବୃନ୍ଦା ତୀର୍ଥଜଳ କୁମ୍ଭ ସେନି ଶିରରେ ଢାଳି ॥
ନାନ୍ଦୀମୁଖୀ ଦୁର୍ବାକ୍ଷତ ଦେଇ ଆଳତି କଲେ ।
ବନଦେବୀମାନେ ପଟଆର ହୋଇ ରହିଲେ ॥
ବୃନ୍ଦା ଦ୍ୱାଦଶେ ଦ୍ୱାଦଶ ସଖୀ ଅଧିକାରିଣୀ ।
ମନୋହର ଶିରୋମଣି ବୃଷଭାନୁ ଦୁଲଣୀ ॥
ଖଗ ମୃଗ ଲତା ତରୁ ଆଦି ଆହ୍ଲାଦରେ ।
ଅହର୍ନିଶି ରତ ନିଜ କାନ୍ତ ଅନୁମୋଦରେ ॥
ପୌର୍ଣ୍ଣମାସୀ କାମବୀଜ ଗାୟତ୍ରୀ ଦେଲେ ।
ଜପ କରିବା ମାତ୍ରେକ କୃଷ୍ଣ ସନ୍ନିଧେ ମିଳେ ॥
କାମଧେନୁ ବାଞ୍ଛାତରୁ ଚିନ୍ତାମଣି ପ୍ରାପତେ ।
ଅନ୍ୟ କାର୍ଯ୍ୟ ନୁହେଁ କୃଷ୍ଣ ବାଞ୍ଛାପୂର୍ଣ୍ଣ ନିମିତ୍ତେ ॥
ବନେଶ୍ୱରୀ ଅଭିଷେକ ହୋଇ ବନଭ୍ରମଣେ ।
ସୂର୍ଯ୍ୟପୂଜା ବଳାଇଣ ଗଲେ ନିଜ ସଦନେ ॥
ଏକଦିନେ ଗୋପସଭାରେ ଗୋକୁଳବୃନ୍ଦ ।
ରାମକୃଷ୍ଣଙ୍କୁ କୋଳରେ ଧରି ବସିଛି ନନ୍ଦ ॥
କୃଷ୍ଣ ବୋଲନ୍ତି ହେ ପିତା ଆମ୍ଭେ ରଖିବୁଁ ଗାଈ ।
ବନେ ବନେ ଚରାଇବୁଁ ଦୁଧ ହୋଇବ ଫାଇ ॥
ହେଉ କାଳିଠାରୁ ରଖ ଗାଈ ବୋଇଲେ ତାତ ।
ସବୁ ଦୁଷ୍ଟ ଶିଷ୍ଟ ଖଣ୍ଡନ୍ତୁ ଏ ସୁରଭିମାତ ॥
ମୋହନ ନୀତି ବାଞ୍ଛି ପ୍ରାତେ ପୁଣ ଗାଈ ଦୁହିଁଲେ ।
ଏକଗୋଷ୍ଠି କରି ଗାବ ସଙ୍ଗେ ବଚ୍ଛ ସେ ନେଲେ ॥
ଗୋପ ଗୋପଥ ପୂରି ଗହଳେ ଭିଡ଼ ପଡ଼ିଲା ।
ଦଶଦିଶ ନ ଦିଶଇ ଧୂଳି ପୂରି ଉଠିଲା ॥
ଦେଖି ପୌର୍ଣ୍ଣମାସୀ ବୋଲେ ରାମକୃଷ୍ଣଙ୍କୁ ଗୁହିଁ ।
ଏତେ ଗାଈ ଏକମେଳ ହୋଇ ଚରିବେ କାହିଁ ॥

ମୋର ବୋଲ କର ଗୋଷ୍ଠୁ ଗୋଷ୍ଠ କରଣ ରଖି ।
ବନେ ବନେଣ ସୁରଭି ଚରି ଲଭିବେ ସୁଖ ॥
ଶୁଣି ସବୁ କୁମରଙ୍କୁ ଏହି କଥା ଯୋଗାଇ ।
ବୋଲେ ଗୋପାଳେ କେ ତୁମ୍ଭ ବୋଲ ପାରେ ଭଙ୍ଗାଇ ॥
ଯେଉଁ ବନରେ ଯାହାକୁ ତୁମ୍ଭେ ଆଜ୍ଞା ଦେବ ।
ସେହି ବଚନେ ସେହି ବନରେ ରଖିବୁ ଗାବ ॥
ଶୁଣି ପୌର୍ଣ୍ଣମାସୀ ଭଗବତୀ ପ୍ରସନ୍ନ ହୋଇ ।
ଅନୁରୂପ ଅଧିକାର ମାଳ ବସନ ଦେଇ ॥
ଗ୍ରାମ ମଧୁବନେ ଅଧିକାରୀ ଶ୍ରୀଦାମ ସଖା ।
ମେଘିଧେନୁ ତନୁ ଚିତ୍ରବର୍ଣ୍ଣ ନୀଳପତାକା ॥
ମଣିମାଳ ଆଭରଣ କୃଷ୍ଣ ସଙ୍ଗ ରକ୍ଷଣ ।
ବନଦେବୀ ମଧୁମତୀ ସଖୀ ମୋହିନୀ ଜାଣ ॥
ସର୍ବସିଦ୍ଧି ବଳବୁଦ୍ଧି ବେନି ଜନ ଆଦରେ ।
ସୁଖେ ଚରାଅ ଗୋଧନ ଶିଙ୍ଗାନାଦ ବାଦ୍ୟରେ ॥
କୃଷ୍ଣ ବୃନ୍ଦାବନପତି ସଙ୍ଗେ ସଖା ସୁବଳ ।
କାମଧେନୁ ତନୁ ତମାଳକୂଳ ପୀତଦୁକୂଳ ॥
କଉସ୍ତୁଭ ହାର ଉରେ ଧରି ଦୁଷ୍ଟ ଦଳନେ ।
ବୃନ୍ଦାଦେବୀ ସଖୀ ଲଳିତା ଏ ବେନ ବିଧାନେ ॥
ବାଇ ମୋହନ-ମୁରଲୀ ରଙ୍ଗେ ସୁରଭି ତୋଷ ।
ଯାହା ନାମେ ବଜାଇବ ସେହୁ ମିଳିବ ପାଶ ॥
କାମକାନନେ ଲବଙ୍ଗ ସଖା ସୁଭଦ୍ରସନେ ।
ନୀଳଗାବ ତନୁ ନୀଳଛବି ନୀଳ ବସନେ ॥
ମଲ୍ଲିମାଳ ଅଙ୍ଗେ ଆଭରଣ ଶୋଭା ଦିଶଇ ।
ନୃତ୍ୟରଙ୍ଗ ହାସରସେ କୃଷ୍ଣ ମନ ତୋଷଇ ॥
ପ୍ରୀତିକାମବତୀ ଅଧିଷ୍ଠାତ୍ରୀ ସୀମନ୍ତ ସଖୀ ।
ଭେରୀ ବାଦ୍ୟନାଦ କରି ସୁଖେ ସୁରଭି ରଖି ॥
ବନକୁମୁଦେ ସୁବାହୁ ସଂଗେ ପ୍ରଶସ୍ତ ସଖା ।
ଶ୍ୟାମ ଗାବ ବର୍ଣ୍ଣ ପାଣ୍ଡୁରକୁ ଛିଟ ପତାକା ॥
ହେମମାଳ ବିଭୂଷଣ ଶିଂଗା ବଂଶୀ ଧାରଣେ ।
କୃଷ୍ଣ ସଂଗେ ରଙ୍ଗ ରସ କରେ ମାଳବନ୍ଧାନେ ॥
ଦେବୀ କୁମୁଦ୍ୱତୀ ସଖୀ ଚନ୍ଦ୍ରରେଖା ଆଦ୍ୟ ।
କାଷ୍ଠ ତାଳ ବାଜନରେ ଧେନୁ ଅସାଧ୍ୟ ସାଧ୍ୟ ॥
ବସୁଦାମ ବକୁଳାରେ ସଖା ତନୁ ବିଳାସ ।
ଶ୍ୱେତ ଗାବବର୍ଣ୍ଣ [illegible] ନିବାସ ॥

ବଇଜନ୍ତୀ ମାଳା ଗଳେ ସେବା ଦର୍ପଣ ବାସ ।
ଦେବୀ ବହୁବତୀ ସଖୀ ଚନ୍ଦ୍ରମୁଖୀ ବିଶ୍ୱାସ ॥
ବଂଶନାଳ ବାଦ୍ୟବାଦନରେ ସୁରଭି ବଶ ।
ଦୃଷ୍ଟ ଡରି ପଳାଇବେ ଅରି ନ ପଶି ପାଶ ॥
ମିତ୍ର ସୁଦାମ ଖଦିର ବନେ ବୃଷଭ ସଖା ।
ଗାବ ଶ୍ୟାମଳୀ ଶ୍ୟାମଳା ତନୁ ନୀଳ ପତାକା ॥
ଗୁଞ୍ଜମାଳା ଆଭରଣ ଚିତ୍ରକମ ସେବକ ।
ଦେବୀ ଖଦେଶ୍ୱରୀ ଚନ୍ଦ୍ରରେଖା ସଖୀ ଭାବୁକ ॥
ମନମୋହନ ମଧୁରୀ ସ୍ୱରେ ସୁରଭି ବୋଧ ।
ନାମେ ମୁରଳୀ ବାଇଲେ ଯିବେ କୃଷ୍ଣ ସାନ୍ନିଧ ॥
ତାଳବନରେ ଅର୍ଜୁନ ଗତି ସଖା ଭରଥ ।
ଶୁଭ୍ର ସୁରଭି ଶୋଣିତ ତନୁ ବସନ ଶ୍ୱେତ ॥
ରତ୍ନହାର କଣ୍ଠରେ ମୟୂରପୁଚ୍ଛ ପ୍ରଚୂରେ ।
ତାଳବତୀ ସଖୀ ଅଳକା ଯେ ବଳ ବଚୂରେ ॥
ସୁଖେ ଗୋଧନ ରଖିଣ ତୁମ୍ଭେ କୃଷ୍ଣଙ୍କୁ ସେବ ।
ଦୂରେ ଥାଇଣ ସେବା ସେବିଲେ ପ୍ରାପତ ହେବ ॥
ମହାବନେ ମହାମଲ୍ଲ ସଖାମଲ୍ଲ ସଂଗରେ ।
ଗାବ ଅରୁଣବର୍ଣ୍ଣ ଗଉରାମ୍ବର ଅଙ୍ଗରେ ॥
ବନମାଳା ଉରେ ମୟୂରର ଗୁମରେ ସେବ ।
ମାହେଶ୍ୱରୀ ସଖୀ ମଦନାବତୀକ ଯେ ଭାବ ॥
ସରୁ ମାଦକ ନାଦରେ ଗାବ ଆୟତ୍ତ ହେବ ।
ଯେଉଁସ୍ଥାନେ ଯେ ଲୋଡ଼ିବ ସେହିସ୍ଥାନକୁ ଯିବ ॥
ସ୍ତୋକକୃଷ୍ଣ ହୋଇଲେ ଭଣ୍ଡିର କାନନପାଳ ।
ସଖା ଉଜ୍ଜ୍ୱଳ ଦର୍ପଣ ଗାବ କପିଳା ପଲ ॥
ତନୁ ଶ୍ୟାମଘନ ଶ୍ୱେତବାସ କଦମ୍ବମାଳ ।
ସେବା ତାମ୍ବୁଳ ଭଣ୍ଡିରେଶ୍ୱରୀ ଦେବ ମଂଗଳ ॥
ସଖୀ ବିନୋଦିନୀ ବେଣୁବାଦ୍ୟ ଗାବରକ୍ଷଣେ ।
ପୌର୍ଣ୍ଣମାସୀ ବନେ ବନେ ପେଶି ଏତେ ଲକ୍ଷଣେ ॥
ଲୋହବନରେ ସୁବଳ ଭଦ୍ରସୁତ ସଙ୍ଗର ।
ପୀତବର୍ଣ୍ଣ ଗାବ ତନୁ ବଶ୍ରାଣି ପିଙ୍ଗଳାମ୍ବର ॥
କୁନ୍ଦମାଳା ଗଳେ ଧରେ ସେବା ମୁରଳୀ ତାତ ।
ଦେବୀ ଲୋହବତୀ ସଖୀ ଶ୍ରୀପୁ ଆରାଧ୍ୟ [illegible] ॥
ବୀରକାହାଳି ନାଦେ ସୁରଭି ଶ୍ରବଣ ଡେରି ।
ବୀରଗାନେ ପଳାଇବେ ଶୁଣି ଶ୍ରବଣ କରି ॥

ମଧୁମଙ୍ଗଳ ହେଲେ ଶ୍ରୀବନେ ରକ୍ଷାପାଳନ ।
ସଖୀ କଙ୍କିଣୀ ଧବଳୀ ଗାବ ମେଘବରନ ॥
ଶ୍ୱେତବାସ ପଦ୍ମହାସ ମାଳାରତ୍ନ ସେବତ ।
ଦେଖ ଶ୍ରୀମତୀ ସଖୀ ବସ୍ତ୍ରାସଭାବେ ଉକତ ॥
ବୀଣାବାଦନେ ରଦନେ ତୃଣ ଧରନ୍ତି ଧେନୁ ।
କୋଟିଯୁଗ ମଣେ କ୍ଷଣେ କୃଷ୍ଣବିଚ୍ଛେଦ ବନୁ ॥
ଭଦ୍ରବନରେ ଶ୍ରୀଦାମ ସଖା ଅଷ୍ଟଧ ସଙ୍ଗ ।
ଗାବତନୁ ବସନାଦ ଛବ ଅରୁଣରଙ୍ଗ ॥
ଗଲେ ନାଗେଶ୍ୱର ମାଳ ଧ୍ୱଜପତାକାଧାରୀ ।
ଦେଖ ଭଦ୍ରାବତୀ ଚନ୍ଦ୍ରାବତୀ ସଙ୍ଗେ ବିହରି ॥
ରବା ବାଦନ ନାଦେ ଗୋଧନ କର ଆପୃତ୍ତ ।
ଏହୁ ଦ୍ୱାଦଶ ବନେ ଦ୍ୱାଦଶଗୋଷ୍ଠ ନିର୍ମିତ ॥
ଉପବନ ଚଉବିଂଶ ଉପସଖା ବରଗେ ।
ଏହି ରୂପରେ ହାର ବସନ ସୁହୃଦ ସଙ୍ଗ ॥
ପ୍ରସନ୍ନରେ ପୌର୍ଣ୍ଣମାସୀ ଶାଢ଼ୀ ବସନ ଦେଇ ।
ଜଣେ ଜଣେ ରଖି ଉପଦେଶ ବଚନ କହି ॥
ଜେଷ୍ଠାବନେ ସେବା ସେବ କୃଷ୍ଣ ହେବେ ପ୍ରାପତ ।
ବାଦ୍ୟନାଦେ ଯା କହିବ ହେବ ଶ୍ରବଣଗତ ॥
କାର୍ଯ୍ୟକାରଣେ ରହିଲେ ଯିବ ଶ୍ରୀକୃଷ୍ଣ ପାଶ ।
ଅନ୍ୟ ବେଳେ ଗୋଚରଣ ତେଜ ଗଲେଣ ଦୋଷ ॥
ସର୍ବେ ବିଶ୍ରାମ ଘାଟରେ ଆସି ହୋଇବ ଠୁଳ ।
ଏକମେଳ ହେବ ଏଥିଁ ଯିବାଆସିବା ବେଳ ॥
ଏହୁ ବସନ୍ତକୋକିଳ ଜଗିଥିବେ ଯେ ଘାଟ ।
ଆଗେ ପଛେ ଯେ ଆସିବେ ସଲଖିବେ ଏ ବାଟ ॥
ନାମ ଅନୁରୂପେ ବନସଖା ଗାବ ସଙ୍ଗତେ ।
କାନ୍ତିଧାର ବାସ ସେବା ଦେଖ ସଖୀ ସଙ୍ଗତେ ॥
ଏକାଦଶ ସଙ୍କେତରେ ଅନୁକ୍ରମରେ ଚିହ୍ନ ।
ବାଦ୍ୟ ପତାକା ବାର ସୁରଙ୍ଗ ଚଳେବେ ବନ ॥
ଶୁଣି କୁମାରେ ଆନନ୍ଦେ ବାନ୍ଧି ଯେଝା ବାଜଣା ।
ପଲ ପଲ ଚଳନ୍ତି ଗୋଧନ ନୂହ୍ଵ କଳଣା ॥
ପୌର୍ଣ୍ଣମାସୀ ଆଜ୍ଞାଦେଲେ ଯୂଥେଶ୍ୱରୀ ଚଳିଲେ ।
କୃଷ୍ଣ ସଙ୍ଗେ ମନ ରଖି ଯେଝା ବନେ ମିଳିଲେ ॥
ସର୍ବେ ଗୋପସୁତ ଯେ ଯାହାର ଚଳିଲେ ବାଣ୍ଟି ।
ଦେଖି ନାନ୍ଦୀମୁଖୀ ଚନ୍ଦ୍ରମୁଖୀ ସଣପୁ ତୁଟି ॥

କୃଷ୍ଣ ଏକାହୋଇ ବୃନ୍ଦାବନେ ମିଳିବା ବୃନ୍ଦେ ।
ଜେମା ସାନ୍ନିଧ୍ୟେ ଦୂତିକା ଯାଇ ଗୁପତେ କହି ॥
ପୌର୍ଣ୍ଣମାସୀ ବିଧାନରେ ସୂନାସ୍ତିକା ବନରେ ।
ପଥ ବୃନ୍ଦେଁଣ ଅଛନ୍ତି ଯମୁନାର କୂଳରେ ॥
ପୁଣି ଛନ୍ନ ଛନ୍ନ ମନ ଅତି ଉତ୍ସୁକ ହୋଇ ।
ତୁଳସୀଙ୍କି ପେଷି ଆଗେ ମାଳ ତାମ୍ବୂଳ ଦେଇ ॥
ମୁହିଁ ବାହାର ହୋଇଲି କହ ପ୍ରାଣନାଥଙ୍କୁ ।
ବସି ନବେଣି ନୟନ ଥିବେ ଗତି ପଥକୁ ॥
ଶୁଣି ହରଷେ ତୁଳସୀ ଚଳି କୃଷ୍ଣେ ମିଳିଲେ ।
ଜେମା ଚରିତ ଜଣାଇ ମାଳ ତାମ୍ବୂଳ ଦେଲେ ॥
କୃଷ୍ଣ ବଲ୍ଲଭୀ ସଙ୍କେତ ପାଇ ମୃଗାଙ୍କେ ତନୁ ।
ବୃନ୍ଦେ ବୋଲେ ମଧୁମତେ ବେଗେ ରହସି ଭାନୁ ॥
ଏମନ୍ତେଣ ସେ ବିଜୟ ଜେମା ସୂର୍ଯ୍ୟପୂଜନେ ।
ସେବାପର ସଖୀ ସଙ୍ଗେ ଧଙ୍ଗେ ଗତିବିଧାନେ ॥
ବେନିଜନ ମିଳନରେ ଦେହ ବୁଦ୍ଧି ପାଶୋରେ ।
ମନୋଭବ କରେ ଯୁଗଳ ଉଜ୍ଜ୍ୱଳ ରସରେ ॥
ଦେଖି ବିଳମ୍ବ ଜଟିଳା ଗମେ ଏ ଅବସରେ ।
ପଥେ ଜଗିଥିଲା ଧାତ୍ରୀ ଡାକ ଦେଲା ପାଶରେ ॥
ଶୁଣି ସଲକ୍ଷ ସୁନ୍ଦରୀଗଣ କୁସୁମ ତୋଳେ ।
କୃଷ୍ଣ ଆଗଙ୍କେ ଅନ୍ତର ଲତାଉହାଡ଼େ ଗଲେ ॥
ସଖୀମାନଙ୍କୁ ବୃନ୍ଦାଣ ଚଳ ଜଟିଳା ବୋଲେ ।
ନବକୁଳବଧୂ କାହିଁ ବନଗହନେ ବୁଲେ ॥
ବୋଲଇ ବିଶାଖା ମାଏ ଆଜ ଅର୍କସପ୍ତମୀ ।
ପୂଜା କରିବାକୁ ନ ପାଇଲୁ ବ୍ରାହ୍ମଣ ଭ୍ରମି ॥
ବିଶ୍ୱଶର୍ମା ବୋଇଲ ଏକ ଦ୍ୱିଜ ମଥୁରାବାସୀ ।
ତାଙ୍କୁ ନିମନ୍ତ୍ରଣ କରିବା ଯେ କଲୁଁ ବିଶ୍ୱାସୀ ॥
ମଧୁମଙ୍ଗଳ ଶିଖାଇ ତାଙ୍କୁ ବାଟୁଁ ଭାଞ୍ଜିଲେ ।
ବ୍ରହ୍ମଚୂରୀଙ୍କି ଦୂଷଣ ସ୍ତ ସାଗ୍ରତ ମୂର୍ଖମିଳ ॥
ଶୁଣି ବୁଢ଼ୀ ବୋଇଲ ଭଞ୍ଜାଇ ଯେ ବିପ୍ରବାଦରେ ।
ମୁହିଁ ଯାଇଁ ବେନି ଜନ ଆଣିବଇଁ ଆଦରେ ॥
ଏତେ କହି ସଖୀଗଣ ସଙ୍ଗେ ଘେନି ଜଟିଳା ।
ପଥୁଁ ବିଶ୍ୱଶର୍ମା ବାହୁଡାଇ ଆଣିବ ଗଲା ॥
ଲତାଉହାଡ଼େ ସମ୍ବାଦ ହରି ଶୁଣୁ ଯେ ଥିଲେ ।
ବିପ୍ରବେଶ ଚତୁର୍ଭାଳେ ଏକବେଦୁରେ ବସିଲେ ॥

ଆଗେ ବିଶାଖାକୁ କରି ବୁଢ଼ୀ ପ୍ରବେଶ ତହିଁ ।
ବିପ୍ରବର ତେଜ ଗୃହିଁ ଶିରେ କରଯୋଡ଼ିଇ ॥
କଣ୍ଠି ବିଚିତ୍ରବସନ କକ୍ଷେ ଯଜ୍ଞୋପବୀତ ।
ଶ୍ୟାମ ଚିକ୍କଣ ଲାବଣ୍ୟତନୁ କମଳନେତ୍ର ॥
ଛତ୍ର ଉତ୍ତରୀ ଦୋସଡ଼ା ଊର୍ଦ୍ଧ୍ୱ ପୁଣ୍ଡ୍ରଭାଳେ ।
ବାହୁମୂଳେ ହୃଦପୁରେ ବେଣୁ ଅଶ୍ୱତ୍ଥଦଳେ ॥
ହସ୍ତେ ଚମ୍ପାପାଖୀ କୁଶବୃନ୍ତ ପୁସ୍ତକ ଅଛି ।
ଶ୍ୟାମ ଗାୟନ କରନ୍ତେ ଶୁଣି ସ୍ତବଧ ପକ୍ଷୀ ॥
କର ପ୍ରସାରି କଲ୍ୟାଣ ବୃଦ୍ଧା ନମସ୍କାରକୁ ।
ବୋଲେ ଜଟିଳା କେବେହେଁ କରିବ ପ୍ରାଣୀପାତକୁ ॥
ମୋର କୁଳବଧୂ ସୂର୍ଯ୍ୟପୂଜା କରେ ଏ ବନେ ।
ତୁମ୍ଭେ ଆଚାର୍ଯ୍ୟ ହୋଇବ ମନତୋଷି ବିଧାନେ ॥
ହରି ବୋଲନ୍ତି ଆଜନ୍ମରୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
ଗାର୍ଗ ଋଷିଙ୍କଶିଷ୍ୟ ସକଳ ଶାସ୍ତ୍ରରେ ଶିକ୍ଷା ॥
ନାରୀବଦନ ଅବଲୋକନ ଯହିଁ ନିଷେଧ ।
ତହିଁ କେମନ୍ତେ କରିବା ଛୁଇଁ ସଂକଳ୍ପବିଧି ।
ବୋଲେ ଜଟିଳା ଗୋସାଇଁ ତୁମ୍ଭେ ସକଳ ଜାଣ ।
ସାନହେଉ ବଡ଼ହେଉ ସେବକ କରେ ବରଣ ॥
ଜାଣି ନ ଗଲେ ସୁକୃତ ତାର ହୁଏ ଏହାର ।
ଏହୁ ପୁରାଣ ବଚନ ତୁମ୍ଭେ ବିଚାର କର ॥
ପତିବ୍ରତା ସୂର୍ଯ୍ୟପୂଜା ତୁମ୍ଭେ ଅବଜ୍ଞା କର ।
ମଧୁମଙ୍ଗଳ ଏମନ୍ତେ ଆସି ମିଳେ ତ୍ୱରିତ ॥
ବୋଲେ ବିଶ୍ୱଶର୍ମା ତୁମ୍ଭଙ୍କୁ ଯେ କୃଷ୍ଣ ଖୋଜାଇ ।
ଚାଲ ଯିବା ବ୍ରାହ୍ମଣଙ୍କୁ ମିଷ୍ଟଅନ୍ନ ଭୁଞ୍ଜାଇ ॥
ବୋଲେ ବୃଦ୍ଧା ବେନି ଜଣ ବ୍ରହ୍ମା ଆଚାର୍ଯ୍ୟ ହୁଅ ।
ପୂଜା ବଢ଼ାଅ ଦକ୍ଷିଣା ଧନ ଦେବଇଁ ନିଅ ॥
ବିଶାଖାକୁ ସେନି ବହୁତ ଯେ ବିନୟ ହୋଇ ।
ସନମତ କରାଇଣ ସେନି ଆଇଲେ ଦୁଇ ॥
ଏମନ୍ତେଣ ସୂର୍ଯ୍ୟପୂଜାସ୍ଥଳେ ହୋଇଲେ ପ୍ରବେଶ ।
ବିପ୍ରବେଶ ଗୃହିଁ ମନେ ରାଧା ଅତି ହରଷ ॥
ବୃଦ୍ଧା ବୋଲେ ଆଜ ମୁହିଁ ଥାଇ ପୂଜାବଢ଼ାଇ ।
ପାଦ୍ୟ ପଞ୍ଚପାତ୍ରେ ବିଧି ସର୍ବଅଙ୍ଗ ଧୋଆଇ ॥
ବିପ୍ରଚରଣ ଧୋଇଣ କୁଶଆସନେ ବସି ।
ଜଟିଳାର ମୁଖ ଗୃହିଁ ହରି ମଧୁର ଭାଷି ॥

ଆମ୍ଭେ ଆଜନ୍ମରୁ ବ୍ରହ୍ମଗୃହ ନାରୀ ନ ଛୁଉଁ ।
କର ପ୍ରସାରୁ ଶ୍ରୀଫଳ କୁଶ ଅଲଗା ଦେଉଁ ॥
ଶୁଣି ସଖୀ ଜେମା କରାଞ୍ଜଳି କରି ଧରାଇ ।
କୁଶ ଜଳ ଫଳ ଦେଇ ସଂକଳ୍ପକୁ କରଇ ॥
ବିଧିବିଧାନରେ ପୂଜା ସର୍ବ ଆରାଧି ଅର୍ଘ୍ୟେ ।
ପୂଜା ବଢ଼ାଇଣ ଦ୍ୱିଜବର ବାହାର ଶୀଘ୍ରେ ॥
ବୁଢ଼ୀ ଉକଣ୍ଠ କରିଣ ବୋଲେ ସୁବେଦୀ ଦ୍ୱିଜ ।
ମୋର ବଧୂକୁ କଲ୍ୟାଣ କର ଲଭୁ ତନୁଜ ॥
ଦ୍ୱିଜ ବୋଲନ୍ତି ଏ ସର୍ବ ସୁଲକ୍ଷଣୀ ଅଙ୍ଗନା ।
ଗୃହିଁ ଜାଣିଲୁ କରପଲ୍ଲବ ଗର୍ଭବିହୀନା ॥
ସର୍ବ ଐଶ୍ୱର୍ଯ୍ୟ ହେବ ପୁତ୍ରବତୀ ନୋହିବ ।
ବୋଲେ ଜଟିଳା କେମନ୍ତେ କୁଳ ଉଦେ ହୋଇବ ॥
ଏଥି ପ୍ରତିକାର ବିଧି କହ ତୁମ୍ଭେ ଗୋସାଇଁ ।
ଆଜ ଚିନ୍ତାଉଦଧିରେ ମୋତେ ଦେଲ ଭସାଇ ॥
ଦ୍ୱିଜ ବୋଲନ୍ତି ସେ ଚିନ୍ତାମଣି ପ୍ରାପତ ଯାରେ ।
ସର୍ବ ମନୋରଥ ଫଳ ସିଦ୍ଧ ହୋଇବ ତାରେ ॥
ନନ୍ଦ ଯଶୋଦାବନ୍ତୀ କୃପା କଲେ ସେ ମଣିପାଇ ।
ବୃଦ୍ଧକାଳେ ପୁତ୍ର ପାଇଲେ ସେ ଜାଣ କି ନାହିଁ ॥
ବୁଢ଼ୀ ବୋଇଲେ ହେ ବିପ୍ର ମୋର ସେନିବା ସେବା ।
ନିତ୍ୟ ମଧ୍ୟାହ୍ନ ସମୟୁ ଜାଣି ଏଥି ଆସିବା ॥
ମୁନି ଦୁର୍ବାସା ଶ୍ରୀପୌର୍ଣ୍ଣମାସୀ ବେନି ଆଦେଶ ।
ବଧୂ ପୂଜିବ ତପନ ବେନିଦଶ ବରଷ ॥
ଆଜୁ ଆଚାର୍ଯ୍ୟ ଯେ ବ୍ରହ୍ମା ତୁମ୍ଭେ ହୋଇଲ ବେନି ।
ମନ ଖୁସି ହେଲି ଯେ ତୁମ୍ଭ ଶ୍ୟାମଗାୟନ ଶୁଣି ॥
ରାଣୀକର ହେମମୁଦ୍ର ବିପ୍ର ଦକ୍ଷିଣା ଦେଇ ।
ବୁଢ଼ୀ ନିଜ କର ମୁଦ୍ର ମଧୁମଙ୍ଗଳ ପାଇ ॥
ନଇବେଦ୍ୟ ଯେ ସାମଗ୍ରୀ ବନ୍ଧି ବାନ୍ଧି ଅଞ୍ଚଳେ ।
କୃଷ୍ଣ ବରଣ ବୋଲିଣ ଗଲେ ମନ ଚଞ୍ଚଳେ ॥
ବଧୂ ସେନିଣ ଜଟିଳା ପୁରେ ପ୍ରବେଶ ହେଲେ ।
ଶ୍ରୀ ନାତିଣି ଭୋଜନ ନିତ୍ୟ ବିଧାନ କଲେ ॥
ଯହୁଁ ଜଟିଳା ଥାଇଣ ଶ୍ୟାମ ବରଣ କଲା ।
ସେହିଦିନୁ ସଖୀଗଣ ମନ ନିଶ୍ଚିନ୍ତ ହେଲା ॥
କୃଷ୍ଣ ସୁବଳ ମଧୁମଙ୍ଗଳ ହାସ ରସରେ ।
ନାନ୍ଦୀମୁଖୀ ଇନ୍ଦୁମତୀ ଭେଟି ଯମୁନା ତୀରେ ॥

ହରି ବୋଲନ୍ତି ପଡ଼ିଣ ଥିଲୁ ଜଟିଳା ଆଗେ ।
ମଧୁମଙ୍ଗଳ ଉପାୟେ ବଞ୍ଚି ଅଇଲୁଁ ଭାଗ୍ୟେ ॥
କୋଟିଯୁଗ ଯୁଗଳରେ ପ୍ରେମ ନୋହିବ ପାର ।
କ୍ଷଣମାତ୍ର ଭୟେ କେତେ ପ୍ରୀତି ହୋଇବ ତାର ॥
ହେବା ମିଳନରେ ବସ୍ତୁ ତାର ବଢ଼ୁଛି ହୁଏ ।
ଧଣି ଆସିବେ ବନକୁ ଯେମନ୍ତେ କର ଉପାୟେ ॥
ଏତେ କହିଣ ପଣନ୍ତ ବେନି ଆଗେ ପ୍ରସାର ।
ମୋର ମାଗୁଣି ଯେମନ୍ତ ଆଣ ସେ ଅଭିସାର ॥
ବୋଲେ ବେନିବାଳୀ ବନମାଳି କହିଲ ଯାହା ।
ଦୁଇସଖୀ ନିଷ୍ଠେ ତୁମ୍ଭର କରିବୁ ତାହା ॥
ତୁମ୍ଭ ଗୋଧନ ଦ୍ୱାଦଶ ବନ ପୂରି ଚରିଲେ ।
ଜାଣି ଅଭିମନ୍ୟୁ ଦୂରଦେଶେ ଗୋଗୋଷ୍ଠ କଲେ ॥
ଶାଶୁ ଅନ୍ଧାରକାଣି ନଣନ୍ଦ ନିଦେ ଅଚେତ ।
ଆଜ ରଜନୀରେ ଭେଟାଇଲେ କି ଦେବ ଦତ୍ତ ॥
ହରି ବୋଲେ ମନୋରଥ ପୂର୍ତ୍ତି ପାରେ ଯେ କରି ।
ସେହୁ ଅତି ପ୍ରଶଂସିତ ଏହୁ ଚଉଦ ପୁରି ॥
ଜୀବଦାତାକୁ ଦେବାକୁ ସମ କି ଆନ ଅଛି ।
ଯାହା ମାଗିବ ତଥାପି ଦେବା ସତ୍ୟ କରୁଛି ॥
ବାଳୀ ବୋଲନ୍ତି ଯେ ତୁମ୍ଭ ବେନିଜନଙ୍କ ଲୀଳା ।
ସଖୀଭାବେ ଯେ ଭାବିବ ସେହୁ ହେବ ଉଜ୍ଜ୍ୱଳା ॥
ରାଜ୍ଞ ଦାମୋଦର ବ୍ରତ ଜଗତରେ ରହିବ ।
ଯେହୁ କାର୍ତ୍ତିକେ ପୂଜିବ ସେହୁ ଗୋପି ହୋଇବ ॥
ଶୁଣି ପ୍ରସନ୍ନବଦନେ ହରି ବୋଲନ୍ତି ହେଉ ।
ସନ୍ଧିବିଧାୟିନୀ ନାମ ତୁମ୍ଭ ପୁରାଣେ ରହୁ ॥
ଖେଳେ ବିଳମ୍ବ ନ କରି ଚଳ ସଜନୀ ପାଶେ ।
ଆଜି ରଜନୀ ଉପାୟ କରି ଆଣ ବିଶ୍ୱାସେ ॥
ବାଳୀ ବୋଲନ୍ତି ସଙ୍କେତସ୍ଥଳ ଯମୁନା କୂଳ ।
ଅଛି ମନୋହର କୁଞ୍ଜ କଳ୍ପ ପାଦପ ମୂଳ ॥
ଯିବା ଆସିବାକୁ ନିକଟ ସେ ନିଜନ ସ୍ଥାନ ।
ବୃନ୍ଦା କରିବ ମିଳନ ଜାଣ ସର୍ବ ବିଧାନ ॥
ଆମ୍ଭେ ଦେଖିଣ ରହିବୁଁ ଜଟି ଶାଶୁ ନଣନ୍ଦେ ।
ନିଶା ଶେଷେ ଯିବା ଯେଝାଆର ସଦନେ ନନ୍ଦ ॥
ଏତେ କହିଣ ଚଳିଲେ ବେନି ରାଧା ସନ୍ନିଧେ ।
ଅନ୍ତଃପୁରରେ ଭେଟିଲେ ରାଧା ସଜନୀ ମଧ୍ୟେ ॥

ବୋଲେ ଜେମାଦେଈ ବେନିଜନ ବଦନ ଚାହିଁ ।
ତୁମ୍ଭେ କେଣେ ଥିଲ କସ ଅବା ଦେଖିଲ କାହିଁ ॥
ବେନିଏ ବୋଲନ୍ତି ଯାଇଥିଲୁଁ ଯମୁନା ଜଳେ
କୃଷ୍ଣ ଦେଖିଲୁଁ ଗୋଧନ ରଖେ ଗୋପାଳ ମେଳେ ॥
ବନେ ଉପାଧି କରିଣ ଯେତେ ଦ୍ରବ୍ୟ ଦେଖଇ
ଚୋର ପ୍ରତିଅଙ୍ଗ ଶୋଭା କାମଭୟେ ଯୋଖଇ ॥
ଗୁଣି ଗୁଣ ଗୀତ ଗାନ୍ଧାରେ ଯେ ଗାୟନ କରେ ।
ନାନା ରତ୍ନାବଳୀ ହାରମାଳା ଗଳାରେ ଧରେ ॥
କାମ ସଂଗ୍ରାମରେ ନାମ ଆଶ୍ରେ କରି ରହିଛି ॥
ସଖା ସୁହୃଦ ସଙ୍ଗେ ଅନଙ୍ଗଦଣ୍ଡ ଦେଉଛି ॥
ଧଣି ପ୍ରବେଶ ହେଲେଣ ହେବ ଷଷ୍ଠମ ଘାତ ।
ଯେଣୁ ଲୁଟିଲେ ତା ସୁଧାକୁମ୍ଭ ତେଣୁ କୋପିତ ॥
ଆଜ ପାରିଲେ ପ୍ରାଣବାନ୍ଧବ ସାହା ହୁଅସି ।
ଯେବେ ନ ଯିବୁ କୁସୁମକାଣ୍ଡେ ହୋଇବ ଧ୍ୱଂସି ॥
ଜଳ ବିନୁ ମୀନ ତାପନାରେ କି ବଞ୍ଚଇ ।
ଶୁଣି ଶ୍ୟାମ ସୁହାଗିନୀ ନେତ୍ରୁ ନୀର ମୁଞ୍ଚଇ ॥
କୃଷ୍ଣ ବିରହ ଅନଳ ଅଙ୍ଗେ ଜଳୁ ଯେ ଥିଲା ।
ବେନି ବାଣୀ ଶୁଣି ସଜଳ ଘୃତ ହୋଇଲା ॥
ହେନୁ ହେନୁ ଅନୁରାଗ-ଲତା ବଢ଼ୁ ଯେ ଥିଲା ।
ପୂରି ହୃଦୟମଣ୍ଡଳ ବାହାରେଣ ମାଡ଼ିଲା ॥
ପୁଷ୍ପ ବିକଶନ୍ତେ ସୁବାସ କି ଲୁଚଣା ଯାଇ ।
ଲଜ୍ଜାବନ୍ଧ ଭାଙ୍ଗି ପ୍ରୀତିନଦୀ ପ୍ରଖରେ ବହି ॥
ମେରୁ ସମାନ ଧଇର୍ଯ୍ୟ ଧୂଳିପ୍ରାୟ ଉଡ଼ିଲା ।
ସିନ୍ଧୁ ସମାନ କୁଳମର୍ଯ୍ୟାଦା ଚଳୁଏ ହେଲା ॥
ଛନଛନ ମନ ହୋଇ ସଖୀଜନେ ପଚାରେ ।
କୃଷ୍ଣ ପାଶେ ଯିବା ଆଜ ଧଣିମନେ ବିଚାରେ ॥

ଶ୍ଳୋକଃ

ନିନ୍ଦନ୍ତୁ ପ୍ରିୟବାନ୍ଧବାଃ ଗୁରୁଜନାଃ ଗୃହ୍ଣନ୍ତୁ ମୁଞ୍ଚନ୍ତୁ ବା
ଦୁର୍ବାଦଂ ପରିଘୋଷୟନ୍ତୁ ପିଜନାଃ ବଂଶେ
କଳଙ୍କୋଽସ୍ତୁ ବା
ତାଦୃକ୍ ପ୍ରେମ ନବାନୁରାଗମଧୁନା ମତ୍ତଷ୍ୟ ମାନଂ ମୁଦା
ତତ୍ତଂ ନୈବ ନିବର୍ତ୍ତିତ କ୍ଷଣମପି ଶ୍ରୀକୃଷ୍ଣ-
ପାଦାମ୍ବୁଜାତ୍ ॥

### ଗୀତ

ତାର ସୁନଖ ସୁଖୀ ମୁହିଁ ଆନ ନ ରୁଚେ ମୋତେ ।
ଗୋପେ କରନ୍ତୁ ସେ ବାଛପଛେ ଯେ ଯେତେ ଯେତେ ॥
ଲୋକ ଅପବାଦ ଗୁରୁଜନ ଯେ ଯେତେ ଗଞ୍ଜୁ ।
କୃଷ୍ଣ ଦୁର୍ବାଦ ଲାଗିଣ ଗୋପେ ଘୋଷଣା ବାଜୁ ॥
କଣେ କଳଙ୍କ ସେ ରହ୍ୟ ମନେ ମୁହିଁ ତାହାର ।
ଶ୍ୟାମସୁନ୍ଦର ଲାଗିଣ କୁଳୁଁ ହେବ ବାହାର ॥
ଶତେତପ୍ର କଣ ଜଗ ରଖିଥିଲେ ସଦ୍ମରେ ।
ଅହର୍ନିଶି ନୃତ୍ୟ କରେ ମୋର ହୃଦପଦ୍ମରେ ॥
ଶୁଣି ବିଶାଖିକା ବୋଲେ ରାଣ ପ୍ରଳଳ ଦେଖି ।
ବଡ଼ ଭଜିଲେ କ ବଡ଼ା ନଧ ହୁଅଇ ରଖି ॥
ନବଘନରେ ସେ ଖିଡ ଖଞ୍ଚ ତାପ ଛେଦଇ ।
ପ୍ରେମ ତୃଷାଙ୍କୁର ହୋଇ ଲୋକମା ଗରୁଜଇ ॥
ରଜନୀକାଳେ ସଜନୀ ସେହ୍ନ ରସେ ଭାସିବୁ ।
ଆନେ ଗନ୍ତ ନାହିଁ ନାହିଁ ଅଙ୍ଗେ ଅଙ୍ଗେ ମିଶିବୁ ॥
କଥା ହୁଅନ୍ତେ ନା ସାଂପ୍ରକାଳେ ପ୍ରବେଶ ହୁଏ ।
ଆଳୀ ଦେଖନ୍ତି ନୃପଦୁହିତା ଅଟ୍ଟାଳୀ ବଜପ୍ୟେ ॥
ଧେନୁ ବ୍ରଜେ ଉପସ୍ଥିତ ସର୍ବ ଗୋପକୁମାରେ ।
ଏକମେଳରେ ଉତ୍ତର ଗୋଷ୍ଠ ଗହଗହରେ ॥
ପଛେ ଗୋକୁଳସୁନ୍ଦର ବନେ କୁମାର ମାଝେ ।
ତନୁ ଇନ୍ଦ୍ରନୀଳମଣି ପାଦେ ନୂପୁର ବାଜେ ॥
କ୍ଷୀଣକଟିତଟେ ଝୀନ ପୀତପାଟପଟନୀ ।
ନାଗେଶ୍ୱର ଓଡ଼ଆଣିକ ଯେ କୁମ୍ଭକାଞ୍ଚିଣୀ ॥
ଲତାଜାଲମାଳୀ ମଲ୍ଲୀକଳ ଗଙ୍ଗଶିଉଳ ।
ସୁରଙ୍ଗୀ ଥୋପି ଥୋପି କଟି ବେଢ଼ି ଓହ୍ଳାଳ ॥
ଉରେ ବନମାଳା କଉସ୍ତୁଭହାର ବିରାଜେ ।
ବ୍ୟାଘ୍ର ନଖପଦକ ଅଗସ୍ତି କୋରକ ସାଜେ ॥
ଶିରେ କେକପୁଚ୍ଛ ବଳୟ ଯେ ମୁଦ ଅଙ୍ଗୁଳି ।
ଗଳେ ଚମ୍ପକମାଳେକ କର୍ଣ୍ଣେ କାଂଶୁକକଳି ॥
ଜବାଧରେ ହାସ ଜାତ ତିଳପୁଷ୍ପ ନାସିକା ।
ମୋଡପରାଏ ତରଳ ଗୁରୁ ମଲ୍ଲିକଳିକା ॥
ପୂର୍ଣ୍ଣ ପ୍ରସନ୍ନବଦନ ଶ୍ରମଜଳକଣାରେ ।
ନେତ୍ର ମଲୋପ୍ରଳ ଅଳ ବଳ ଚ୍ଛୁରିଅନାରେ ॥
ଫୁଟି ମାଧବୀକୁସୁମ ମଲ୍ଲୀପନ୍ତି ସୁଧମେ ।
ଶିରେ ମୟୂରଚନ୍ଦ୍ରିକା ଚୂଡ଼ାଗର୍ଭ ମଧ୍ୟମେ ॥
ଗର୍ଭେ କେତକୀ ପାଖୁଡ଼ାବେଢ଼ା ଶୋଭେ ଚୂଳକୁ ।
ମହାମରକତମଣି ହେମ ଚୋପ ମେଳକୁ ॥
ବେଣୁ ଶୁଣି ଗୋପତରୁଣୀ ଉଚାଟେ ଧାଇଁଲେ ।
ନେତ୍ରଚକୋର ତୃଷିତେ ଚନ୍ଦ୍ରମୁଖ ଚୁହିଁଲେ ॥
ରାଧିଁ ଗବାକ୍ଷରେ ସଖୀ ସଙ୍ଗେ ମୁଖ ବିଲୋକ ।
ସଦା ମଧୁ ପାନେ ତରଳ ପାଟଳ ଅଧିକେ ॥
ନେତ୍ରସ୍ଥଳ ମୀନ ଲଭେ ଶ୍ୟାମଅଙ୍ଗ ଜୀବନ ।
ନଗ୍ନାରୀଙ୍କ ପ୍ରଶଂସି ବନ୍ଦୀ ଅନେକ ଭୁବନ ॥
ଅନ୍ତ ମନ୍ଦ ଉଦବେଗ ଜେମା କୃଷ୍ଣ ଲାଳସେ ।
ହାଇ ମାଡ଼ି କର ଭିଡ଼ ଅଙ୍ଗ ମୋଡ଼ ଅଳସେ ॥
ଗୋଧୂ କହିବି ବିକାର ବାଧା ଦେଖି ସଜନୀ ।
ଧୂପବଶରେ ଅଭିସାର କର ଆଜ ରଜନୀ ॥
ସଖୀ ବାଣୀ ସୁଧା ଜାଣି ଶ୍ରବଣକୁ ରୁଚଇ ।
କୃଷ୍ଣ ଭୋଜନ ନିମିତ୍ତ ନାନା ଦ୍ରବ୍ୟ ସଞ୍ଚଇ ॥
ନାଗରୀ ଗଲେ କୃଷ୍ଣଙ୍କୁ କହେ ଅଙ୍ଗୁଳି ଦେଖ ।
ଦେଖ ଅଟ୍ଟାଳି ବଜପ୍ୟେ ବୃଷଭାନୁନନ୍ଦନୀ ॥
ଶୁଣି ଗୃହେ ହରି ପୁର ଚନ୍ଦ୍ରପ୍ରଭା ପ୍ରକାଶେ ।
ପଦ୍ମ ଗନ୍ଧେ କି ଭ୍ରମର ଭ୍ରମେ ଗବାକ୍ଷ ପାଶେ ॥
ରହୁଡାଙ୍କ ଯୁଗଳେ ଜ୍ୟୋତିଜାଲି ଝଟକେ ।
କାମ କଇବର୍ତ୍ତ କୃଷ୍ଣନେତ୍ରମୀନ ଅଟକେ ॥
ମନମଗର ନ ପାରେ ଯାଇ ସେ ଜାଲେ ବନ୍ଧ ।
ପିତା ଦର୍ଶନ ସଙ୍କେତେ କରକମଳ ମୁଦ ॥
ନାନ୍ଦୀମୁଖୀ ବୋଲେ ଯାଧେ ହରି ଯୋଡ଼େଯାକର ।
ପଦ୍ମମୁଦ୍ରିତେ ମିଳନ ହେବା କହେ ବସ୍ତର ॥
ନନ୍ଦ ଦେଖି ବୋଲେ ବସୁନନ୍ଦ ବୃଦ୍ଧଗଣଙ୍କୁ ।
କୃଷ୍ଣ ନମସ୍କାର କରୁଅଛି ତୁମ୍ଭମାନଙ୍କୁ ॥
ବୃଦ୍ଧଗଣ ଦେଖି ଆନନ୍ଦରେ କଲ୍ୟାଣ କଲେ ।
ନନ୍ଦ କୋଳେ ଧରି ଧୂଳ ଝାଡ଼ି ଚୁମ୍ବନ ଦେଲେ ॥
ମାତାପାଦେ ଓଳଗନ୍ତେ କ୍ଷୀରଲୋତକ ବହେ ।
ଶିରକୁ ଆଘ୍ରାଣ କଣ ଅଙ୍ଗ ଆଉଁସି ସ୍ନେହେ ॥
ଗୋଷ୍ଠ ଗୋଧନ ମିଳାଇ ଦ୍ୱାର ମୁଗୁନଶୀଳେ ।
କ୍ଷଣେ ବିଶ୍ରମିଣ ଶ୍ରମ ନାଶି ପୁରେ ମିଳିଲେ ॥
ସ୍ନାନ ସୁବେଶ ଭୋଜନେ ମାଏ ଅନ୍ତ ଯଛନେ ।
ପୁଣି ଗୋଷ୍ଠକୁ ବଜପ୍ୟେ ସାୟଂକାଳ ଦୋହନେ ॥

ପ୍ରାତଃକାଳ ପ୍ରାପ୍ତେ ବାଳମାନେ ଗାଈ ଦୁହିଁଲେ ।
ଦୁଗ୍ଧଭାର ବୁହାଇଣ ନିଜପୁରେ ଅଇଲେ ॥
ପୁଣି ସୁବେଶ ହୋଇଣ ଅନ୍ନ ଭୋଜନେ ବିଜେ ।
ଷଡ଼ରସ ପ୍ରକାରେଣ ମିଷ୍ଟ ହରଷେ ଭୁଞ୍ଜି ॥
ଆଚମନ ଅନ୍ତେ ମୁଖ ମାର୍ଜି ଝିନବସନେ ।
କରେ ତାମ୍ବୁଳ ମନୋହର ବସି ଦିବ୍ୟଆସନେ ॥
ସଙ୍ଗକୁମରଙ୍କୁ ଘେନି ଗୋପସଭାରେ ବିଜେ ।
ରାମକୃଷ୍ଣ କୋଳେ ଧରି ନନ୍ଦ ସଭାର ମଧ୍ୟେ ॥
ଗୁଣୀଗଣ ନୃତ୍ୟଗୀତରସ ପୁରାଣ ବାଣୀ ।
ବୃଦ୍ଧମାନେ କହେ କେତେ ପୁରାତନ କାହାଣୀ ॥
ନାନାଦେଶର ପ୍ରସଙ୍ଗମାନ ଜଣାନ୍ତି ଚର ।
ଏମନ୍ତେଣ ଜଣେ କହେ କଂସ ସଭା ଖବର ॥
ବୋଲେ ମଥୁରାକଟକୁ ଏଇକ୍ଷଣି ଅଇଲି ।
ବସୁଦେବ ସଙ୍ଗେ କଥା ସବୁ ହୋଇ ଜାଣିଲି ॥
ମଲ୍ଲମାନେ ମଲେ ଗୋପେ କୃଷ୍ଣେ କୋପ ବର୍ଦ୍ଧିତ ।
ପେଶି ଅଛଇ ପ୍ରଲମ୍ବ ନାମେ ଏକ ଦଇତ ॥
ଆକାଶରେ ଶିର ଲାଗେ ଜନ୍ତ୍ରେ କରି ଚରଣ ।
ଅତି ଭୟଙ୍କର ଦେଖି ଲୋକ ଲଭେ ମରଣ ॥
ଗୋପେ ଘୋଷଣ ଦିଅ ମୂରୁଁ ନୁହ ବାହାର ।
ଯୋଗେପଡ଼ିବ ଯେ ଆଗେ ନିଶ୍ଚେ ହେବ ଆହାର ॥
ନନ୍ଦ ଶୁଣି ଭୟ ପାଇ ମନେ ଦୋସାଧି ଘାଇ ।
ରାତେ ବାହାରନୋହିବ କେହୁ ଢେଙ୍ଗୁରା ଦେଇ ॥
ସନ୍ଧ୍ୟେ ଗୋପପୁରେ ଏକଆରେ ଲୋକ ଜାଣିଲେ ।
ନେଲା ନେଲାରେ ପ୍ରଲମ୍ବାଭୟେ ତ୍ରାସ ପାଇଲେ ॥
କେହୁ ବୋଲେ ଗୋବର୍ଦ୍ଧନେ ବସ କରି ବଢ଼ାଇ ।
କେହୁ ବୋଲେ ପଳାଇଲା ଥିଲା ମୋତେ ଗୋଡ଼ାଇ ॥
କେହୁ ବୋଲେ ଉପବନ ଅନ୍ଧକାରେ ଲୁଚିଛି ।
କେହୁ ବୋଲଇ କୃଷ୍ଣଙ୍କ ଭୟ କରି ଘୁଞ୍ଚିଛି ॥
କେହୁ ବୋଲଇ ସେ ତାହା ପୁର ନାଶ କରିବ ।
ରାମକୃଷ୍ଣଙ୍କ ଭେଟିଲେ ଧନ ପ୍ରାଣ ହାରିବ ॥
କେହୁ ବୋଲନ୍ତି ବାଳକ ଏହୁ କରିବେ ନାଶ ।
କେହୁ ବୋଲେ କଂସ ଏତେମାନଙ୍କ କେକଲେ ନାଶ ॥
କେହୁବୋଲେ ଦଶବର୍ଷ ମେଳାହୋଇ ଧରିବା ।
କେହୁ ବୋଲଇ ଦେଖିଲେ ତାଟକାରେ ମରିବା ॥

କେହୁ ବୋଲଇ ଦାଣ୍ଡରେ ଶୁଣ ବାଳକ ଘୋଷଣ ।
ରାତେ ବାହାର ନୋହିବ ଥିବ ଯେଝା ସଦନ ॥
ଦ୍ୱାରେ କବାଟ ଦେଇଣ ଯେଝାପୁରେ ରହିଲେ ।
ଚଳପ୍ରଚଳ ନୋହିଣ ନିଃଶବଦ ହୋଇଲେ ॥
ଗାର୍ଗବଚନ ପୂର୍ବରୁ ଶୁଣି ନିର୍ଭୟ ନନ୍ଦ ।
ଗୋପ ମନ୍ଦ ଯେ ଚିନ୍ତିବ ନିଶ୍ଚେ ନାଶିବ କନ୍ଦ ॥
ଏମନ୍ତେଣ ଯେ ଗୋକୁଳସଭା ବେଗେ ମଉଳି ।
ନନ୍ଦନନ୍ଦନଙ୍କୁ ଘେନି ନିଜ ସଦନେ ମିଳି ॥
ବେନି ମାଏ ଆସିଘେନି ଗଲେ ଯେଯାହା ଧୃତ ।
ନିଦ୍ରା ଆଳସ୍ୟ ଘୂର୍ମିତ ହରି କମଳ ନେତ୍ର ॥
ଟଳଟଳ ହୋଇ ଢଳିପଡ଼େ ଧରନ୍ତି ମାଏ ।
ମୁଖ ସୁବାସଜଳେ ପଖାଳି ନିଦ୍ରା ଯାଆଏ ॥
ଗୋଚାରଣେ ଅଣକତ ଅତି ଅଣକତରେ ।
ତନୁ ନ ଚଳଇ ଶ୍ରମଭରେ ନିଦ୍ରା ନେତ୍ରରେ ॥
ମୋରଦୁଃଖକୁ କାରଣ ତୋର ପରେଶ୍ରମା ପେଟେ ।
ଏତେ ଅବସ୍ଥା ମୁଁ ଦୀନ ଦୁଃଖୀ ଦେଖିବି କେତେ ॥
ପାଦେ ନ ମାଡ଼େ କଠାଉ କହେ ଛତା ନ ବହେ ।
ସଙ୍ଗକୁମାରେ ଧରନ୍ତେ ଧର୍ମକାହାଣୀ କହେ ॥
ଖଣ୍ଡି କଣ୍ଟକ ଖରା ବରଷା ଚରେ ଗୋମାତା ।
କେହ୍ନେ କଠାଉ ମାଡ଼ଣ ଶିରେ ଧରିବା ଛତା ॥
ଏଡ଼େ ଧର୍ମପାଳ ହୋଇ ଦୁଃଖେ ଗଞ୍ଜାଉ ତନୁ ।
ଗର୍ଭଧାରୀ ଯେହ୍ନେ ତା ଲୁହ ରହେ କି ନୟନୁ ॥
ଏତେ କହି ସରଶିଖରଣୀ ବହଳ ଦୁଧ ।
ଚମ୍ପା ଚାଉଳ ଗୋଟିକା ବାଡ଼ି ଯତ୍ନରେ ସଧ ॥
ଅତି ନଳତ କରିଣ ମାତା ସନ୍ନେ ଖୁଆଇ ।
ଆଧାରର ଘାସ ଦେଇ କଞ୍ଚ ଦୁଧ ପିଆଇ ॥
ଆଚମନ କରାଇଣ ମୁଖ ପଣନ୍ତେ ମାର୍ଜି ।
ଦିବ୍ୟ ମନ୍ଦିରେଣ ଗଜଦନ୍ତ ପଲଙ୍କ ସାଜି ॥
ନେତ୍ରଛୁଲି ଅପସର ଜାଙ୍ଘପାଖୁ ଡ଼ାପାଡ଼ି ।
ପଦ୍ମଫେନ ପ୍ରାୟେ ଶଯ୍ୟାଘରେ ଯାଇ ପହୁଡ଼ ॥
ଜଳ ତଇଳ ମିଶାଇ ମାଏ ସେବକେ ଦେଇ ।
କୃଷ୍ଣ ଚରଣେ ଘଷିବ ବ୍ୟଥା ଯେମନ୍ତେ ଯାଇ ॥
ନିଃଶବଦ ହୋଇ ସେବ ନିଦ ଯିବ ଯେମନ୍ତେ ।
ଯେଝା ସଦନେ ଚଳିବ କୃଷ୍ଣ ନିଦ୍ରାର ଅନ୍ତେ ॥

ପୁରଜନ କଳରବ ମନ୍ଦ ନିଷେଧ କରି ।
ପୁନି ଶୟନ କରାଇ ଗଲେ ବ୍ରଜଈଶ୍ୱରୀ ॥
କୃଷ୍ଣ ଛଦ୍ମରେ ଶୟନ ରାତ୍ରି ସଙ୍ଗମେ ମନ ।
ଛନଛନ ମନ ନିଦ୍ରା ନ ଲାଗଇ ନୟନ ॥
ମଧୁମଙ୍ଗଳ ସୁବଳ ବେନି ଜଗି ଶୋଇଲେ ।
ଦ୍ୱାରକବାଟ ଦେଇଣ ଦାସେ ଖଟ୍ଟାରେ ଗଲେ ॥
ପୁରଜନ ନିଃଶବଦ ଜାଣି ଉଠିଲେ ହରି ।
ପୂର୍ବଦ୍ୱାର କଳି ପଶ୍ଚିମ ଦ୍ୱାରେଣ ବାହାରି ॥
ରାଧାମୁଖଚନ୍ଦ୍ର ଶୋଭା ନେତ୍ରେ ହୁଏ ପ୍ରକାଶ ।
ମହାଅନ୍ଧକାରେ ଗମନେ ନ ଥାଇ ତ୍ରାସ ॥
ମନୋରଥ ମନମଥ କରି ସାରଥି କଲେ ।
ରତିରଙ୍ଗ ସଙ୍କେତ କୁଞ୍ଜସଦନେ ମିଳେ ॥
ବାହୁପାଶ ମୋକ୍ଷକରଣ ନାରୀଜ ବଚନେ ।
ଦନ୍ତ ଆୟୁଧ ପ୍ରଣୟସନ୍ଧ୍ୟା କରେ ବଚନେ ॥
ଏମନ୍ତେଣ କୁଞ୍ଜେ କୁଞ୍ଜେ ପଶି ବଳି ଉଦ୍ଦେଶି ।
ନବପଲ୍ଲବେ କୁସୁମଶଯ୍ୟା ରଚିଲ ବସି ॥
ଏଥୁଅନ୍ତେ ଶ୍ରୀ ବୃଷଭାନୁଜେମା ଚରିତ ।
ନିଶି ଅଭିସାର ଲାଗି ଅତି ଚଞ୍ଚଳ ଚିତ୍ତ ॥
ବୃନ୍ଦା ଖଞ୍ଜଣୀ କୁସୁମ ଗନ୍ଧମାଳ ଯେନାଇ ।
ରାଧା ପ୍ରସନ୍ନବଦନ ବନଦେବୀ ଅନାଇ ॥
ଦରଶନ ଇନ୍ଦୀବର ବେନି ଶ୍ରୀକରେ ଦେଲେ ।
ଅଭିସାର କରି ବେଗେ କୃଷ୍ଣ ବିଜୟ କଲେ ॥
ବନ ନିର୍ଜନ ହୋଇଲା ଅନ୍ଧକାର ବିମିଶି ।
ପ୍ରଦୋଷରେ ଶେଷେ ଅଭିସାର କରି ସ୍ୱଚ୍ଛନ୍ଦ ॥
ଫୁଲକୁଳ ପ୍ରଫୁଲ୍ଲିତ ଭୃଙ୍ଗ ସଙ୍ଗ ନ ପାଇ ।
ଅଶ୍ରୁଜଳ ଝରଝର ମକରନ୍ଦ ପକାଇ ॥
ପଥ ନ ଚଳି ପଥିକ ସ୍ଥାନେ ସ୍ଥାନେ ରହିଲେ ।
ହରି ଅଦୃଶ୍ୟ ସମୀର ଶୀତଗନ୍ଧ ବହିଲେ ॥
କୁଳବତୀ ବ୍ରୀଡ଼ା ଯେନେ ହେବା ଅନ୍ତର ହେଲେ ।
କାନ୍ତ କୋଳରେ କାମିନୀରନ୍ଧ ଶୋଭା ପାଇଲେ ॥
ମାର ବିଶେଷରେ ଶର କରେ ବିରହୀ ପରି ।
କୃଷ୍ଣ ସଙ୍କେତ ନିକୁଞ୍ଜ ନାମ ସୁମରେ ଚୋରି ॥
କୁଞ୍ଜେ କୁସୁମ ଶେଯାଇ ତୋ ପ୍ରତୀକ୍ଷା ଆଶାରେ ।
ଚଳ ବିଳମ୍ବ ନ କରି ପ୍ରିୟେ ପତି ପାଶରେ ॥

ତୁମ୍ଭ ଅଭିସାର ହେତୁ ଗୋପେ ଫୁଙ୍କମ୍ବା ଭୟେ ।
କେହି ବାହାର ନୁହନ୍ତି ଭଗବତୀ ଉପାୟେ ॥
ଅନୁରୂପା ସଖୀ ଜଣେ ରଖି ଶୟନେ ଚଳ ।
ସଖୀଜନଙ୍କ ସଙ୍ଗେ ଯମୁନା କୂଳରେ ମିଳ ॥
ନିତ୍ୟ ଚଳେ ଚଳେ ଯିବ ଧୀର ମଉନମତେ ।
ଆଗେ ପଛେ ଥିବେ ସଖୀ ମଧ୍ୟେ ଚଳ ଗୁପତେ ॥
ବୃନ୍ଦା ଉପଦେଶ ପାଇ ରାଈ ହରଷ ଚିତ୍ତେ ।
ଶାଶୁ ନଣନ୍ଦ ଶୋଇଲେ ଗୃହ ଚଉରୁ ଅନ୍ତେ ॥
ବେଢ଼ୁଁ ବେଳ ଆନୁ ଆନ ରାଧା ଅଙ୍ଗ ବିକାର ।
କୃଷ୍ଣମେଷ ଯୋଗ୍ୟ ବେଶ ସଦା ଶୋଭାଳଙ୍କାର ॥
ସଖୀ ପ୍ରଦୋଷ ସମୟେ ରାଧା ମଧ୍ୟେ ବସାଇ ।
ଅଙ୍ଗେ ଲେପି ଗନ୍ଧ ମୃଗମଦ ଚୂଆ ମିଶାଇ ॥
କୃଷ୍ଣକୁମର ଚିକୁର ଶିରେ ବେଣୀ ବାନ୍ଧିଲେ ।
କଳାପାଟ ଝୁମ୍ପା ଖଞ୍ଜା ଇନ୍ଦୀବର ମଣ୍ଡିଲେ ॥
କୃଷ୍ଣବେଣୀ ହେମଗିରି ଶିଖେଁ ବନ୍ଧୁ କି ଅଛି ।
ଜାଣି ନିତମ୍ବ ଶଇଳଖଣ୍ଡ ବଲ୍ଲଭ ଇଚ୍ଛି ॥
କାମକନକ ରଥରେ ନୀଳ ପତକା ଜାଣି ।
ହେମ ମନ୍ଦିରେ ଶୋହୁଛି କିବା କାଳୀ ନାଗୁଣୀ ॥
ଦେଖନ୍ତେଣ ଯେ ଅନଙ୍ଗଶର ଅଙ୍ଗେ ଘାରଇ ।
ନବମେଘ ନବଶୁଣ୍ଡ ଧରି ମାର ବହଇ ॥
ଭାଲେ ମୃଗମଦ ଚିହ୍ନ ନେତ୍ର କଜ୍ଜଳେ ରଞ୍ଜି ।
ଭ୍ରୂରୂପ ନେତ୍ରଚିହ୍ନ ମିତ୍ର ମନକୁ ରଞ୍ଜି ॥
ସାଙ୍ଗୋପାଙ୍ଗରେ ଅପାଙ୍ଗ ବାଣ ଆକର୍ଣ୍ଣେ ଟାଣି ।
ଶ୍ୟାମନାଗର ସଂଗ୍ରାମେ ସଜ ତରୁଣୀମଣି ॥
କର୍ଣ୍ଣେ ତାଟଙ୍କେ ଚିହ୍ନ କସ୍ତୁରୀ ମକରୀ ଗଣ୍ଡେ ।
ଚିବୁକରେ ମୃଗମଦ ବିନ୍ଦୁ ବଦନ ମଣ୍ଡେ ॥
ତିଳପୁଷ୍ପ ନାସେ ମରକତମଣି ବସଣି ।
ଦନ୍ତ ମାଣିକ୍ୟ ଅଧର ତାମ୍ବୁଳରେ ରସାଣି ॥
ଗଳେ ନୀଳମଣି ହାର ବାହେ ମର୍କତ ତାଡ଼ ।
କରେ ମର୍କତ ବଳୟ କାଚଚୂଡ଼ି ନିବାଡ଼ ॥
ନୀଳକଞ୍ଚୁକର ସୂତର ହେମଅଙ୍ଗେ ଆଚ୍ଛାଦେ ।
ଶ୍ୟାମ ଅନୁରାଗ ଫୁଟି କି ବାହାରେ ଆଚ୍ଛାଦେ ॥
ପଦେ ସୁନୀଳ ନୂପୁର ଗୁରୁଯାବକ ଲମ୍ବି ।
ବେଶ ସାରି ସହଚରୀ ଗୃହୁଁ ହୋଇଲେ ମୋହି ॥

ଶ୍ୟାମ ମୋହନ ମନ୍ଦାର ମାଳା ଶ୍ରୀକରେ ଦେଲେ ।
ହୁଳହୁଳି ଦେଇ ଶୁଭେ ଜୟ ଆଳତି କଲେ ॥
ରତ୍ନ ଅନୁରୂପା ତୁଳସୀଙ୍କୁ ରଖି ଶୟନେ ।
ପୁରୁଁ ବାହାର ସଜନୀମେଳେ ବନଗମନେ ॥
ମଧୁମାସ କୃଷ୍ଣସପ୍ତମୀ ନିଶି ଅନ୍ଧାରେ ।
ଝାଲି ଖଣ୍ଡ କଣ୍ଟକରେ ଗମନ କଷ୍ଟ କଷ୍ଟରେ ॥
ବୃନ୍ଦା ଆଗେଣ କଡ଼ାଇ ପଛେ ଗମେ ସଜନୀ ।
ମଧ୍ୟେ ଅଷ୍ଟସଖୀ ଘେନି ବିଜେ ଗଜଗମନୀ ॥
ରସ ସରସବଚନେ ନେମା ଈଷିତ ହାସେ ।
ସତେ ସୁଧାନିଧି ଉଦେ ମୁଖଶୋଭା ବିକଶେ ॥
ଲୋକ ଅବଲୋକ ଶଙ୍କା ଭୟେ ହୁଏ ମଉନ ।
ପାଦ ନଖପନ୍ତି ଉଜ୍ଜଳରେ ପଥ ଶୋଧନ ॥
ଅନୁରାଗ ପ୍ରେମଜଳେ ଚଳେ ହଂସଗମନୀ ।
ଦେଖି ସଙ୍କୁଚି ଅଇଲା ପଦ୍ମାକାର ଅବନୀ ॥
ବୃନ୍ଦାଦେବୀ ଉପଦେଶ ମନ୍ତ୍ରପାଦୁକା ବଳେ ।
ନନ୍ଦୀଶ୍ୱର କଳ୍ପତରୁ ତଳ କୁଞ୍ଜରେ ମିଳେ ॥
ଚନ୍ଦ୍ର ଉଦେହେଲ ପ୍ରାୟେ ବନଶୋଭା ପ୍ରକାଶେ ।
ମକରନ୍ଦ ଉଦଗାର ପୁଷ୍ପବାସ ବିକଶେ ॥
ଚୂଆ ଚନ୍ଦନ ସୁଗନ୍ଧ ମୃଗମଦ ଆମୋଦେ ।
କୃଷ୍ଣ ଭୃଙ୍ଗମତ୍ତ ଯହିଁ ଅଙ୍ଗ ପଦ୍ମ ସୁଗନ୍ଧେ ॥
ପୂର୍ଣ୍ଣଚନ୍ଦ୍ର ଉଦେ ଦେଖି ଯେହ୍ନେ ଚକୋର ପକ୍ଷୀ ।
ପୂରେ ପ୍ରବେଶ ଅମୂଲ୍ୟନିଧି ଦରିଦ୍ର ଦେଖି ॥
ତୃଷା ସନ୍ନିଧେ ବହିଲା କିବା ନଦୀ ଜାହ୍ନବୀ ।
ହରି ତେସନ ଆନନ୍ଦ ପ୍ରାଣବଲ୍ଲଭା ଲଭି ॥
ବୃନ୍ଦା ପ୍ରବେଶ ହୋଇଣ ଆଗେ ସବୁ ଜଣାଇ ।
ଅତି ଦୁଃଖେ ରାଇ ଆଣିବାର କହେ ମଣାଇ ॥
ତୋର ଭାବେ ଯେତେଦୁଃଖ ସବୁ ସୁଖ ମଣିଲେ ।
କୁଳବଧୂ ଏତେ ଦୁର୍ଗମେ କି ଆସେ ଆଣିଲେ ॥
ଶୁଣି ଆନନ୍ଦରେ ହରି ଖଣ୍ଡେ ପାଛୋଟି ଆସି ।
ଯହିଁ କୋଳାଗତ କରି କାମସାଗରେ ଭାସି ॥
ରସେ ଢଳଢଳ ତନୁ ନେତ୍ର ଜଳେ ପୂରିତ ।
ବୋଲୁଁ ବୋଲୁଁ ବଢ଼ାଉଛି ପ୍ରେମଲୀଳା ଚରିତ ॥
ମତି ତଟ ବୁଡ଼ି ଉପୁଡ଼ିଲା ଧୈର ପାଦପ ।
ମିଶି ବହିଲା କି ସରସ୍ୱତୀ ଯମୁନା ଆପ ॥

ଦେହ ବୁଦ୍ଧି ହଜାଇଲେ ବେନି ଅବଲମ୍ବନେ ।
କାମ ଅନୁକୂଳ ହୋଇ ବେନି କଲା ପାଳନେ ॥
ଭୁଜେ ଭୁଜେଣ ବନ୍ଧନ ପଡ଼ି ଫେଡ଼ି ନ ଜାଣେ ।
ଗଣ୍ଡ ନିବିଡ଼ ଚୁମ୍ବନ ମୁଖଗନ୍ଧ ଆଘ୍ରାଣେ ॥
ଏକ ଜୀବନେ ଜୀବନ ଶକ୍ତି ଦୁହେଁ ମିଶିଲେ ।
ମନୋଭବ ଅନୁଭବେ ବେନି ରସେ ରମିଲେ ॥
ସଖୀଗଣ ମଧ୍ୟେ ବିଜୟେ କିଶୋର କିଶୋରୀ ।
ଦେଖି ସଭିର ହରଷ ସର୍ବ ଦୁଃଖ ବିସୋରି ॥
କୃଷ୍ଣ ନୟନ କଟାକ୍ଷବାଣ ମରମେ ଭେଦି ।
ନେତ୍ର ଅଞ୍ଚଳ ଚିତ୍ର ଚଞ୍ଚଳ ତରଳ ହୃଦି ॥
ବୃନ୍ଦା ନିଜ ସଖୀଗଣ ଘେନି ସଭା ଆରାଧେ ।
ପୁଷ୍ପ ଚନ୍ଦନ ଅଗୁରୁ ଧୂପ ଫଳ ବିବିଧେ ॥
ମଧୁ ତାମ୍ବୂଳ ଶୀତଳ ଜଳ ବ୍ୟଞ୍ଜନ ଆଦି ।
ଯେତେବେଳେ ଯେ ସାମଗ୍ରୀ ଲୋଡ଼ା ସର୍ବ ସମ୍ପାଦି ॥
ଚନ୍ଦ୍ର ଦୀପ ହେଲା ଦିହୁଡ଼ି ଏ ଜଳେ ଉଜ୍ଜ୍ୱଳ ।
ନନ୍ଦୀଶ୍ୱର ବନଭୂମି ଜଳ ଦିଶେ ମଞ୍ଜୁଳ ॥
ପୁଷ୍ପ ଟକଣି ସୁଗନ୍ଧ ମକରନ୍ଦ ବରଷେ ।
ତରୁ ଦ୍ରବ ମଧୁଧାର ସ୍ରବ ଅତି ହରଷେ ॥
ଜଳ ଯମୁନା ନିର୍ମଳ ଅତି ଶୀତ ସୁଗନ୍ଧେ ।
ତଟ ତରଙ୍ଗ ଲଙ୍ଘିଣ କରେ ଦର୍ଶନ ପାବେ ॥
ଦିଶେ ଦିଶେ ଦିଶେ ଦିବସ ପ୍ରକାଶ ପ୍ରକାର ।
କରେ କୋକିଳ ମଧୁର ଧ୍ୱନି ଭୃଙ୍ଗ ଝଙ୍କାର ॥
ନିଦ୍ରା ତେଜି ଖଗ ମୃଗ ସେବେ ଆନନ୍ଦ ଚିତ୍ତେ ।
ପୁଚ୍ଛ ପ୍ରସାରି ମୟୂର ନୃତ୍ୟକରେ ଅଗ୍ରତେ ॥
ଶୁକ ଶାରୀ ବସନ୍ତରେ ନିତାନ୍ତେ ଗାୟନ କରେ ।
ରାଧାମାଧବ ଚରିତେ ସର୍ବେ ଶ୍ରବଣ ଭେଦରେ ॥
ନିଧୁବନ ପୂର୍ଣ୍ଣବିଧୁ ଉଦେ ପରମ ଶୋଭା ।
ଚନ୍ଦ୍ରଗୁଣ ପ୍ରଭା ନିଧନ ସଙ୍ଗେ ସକଳ ସଭା ॥
ଦେଖି ପ୍ରମୋଦ ହୃଦକୁମୁଦ ଚନ୍ଦ୍ରଚକୋର ।
ଚିତା ରାଧା ଅନୁରାଧା ଜ୍ୟେଷ୍ଠା ଧନିଷ୍ଠା ଆର ॥
ଆହ୍ଲାଦେ ସୁଖୀ ଖଗ ମୃଗ ଲତା ସ୍ଥାବର ।
ଚନ୍ଦ୍ର ଉଦେ ଭାବରୁ ବିଶେଷ ଗୁଣ ଆଦର ॥
ସଦା ପୂର୍ଣ୍ଣ ଅକଳଙ୍କ ଶୋଭା ଦିବା ରଜନୀ ।
ବିରହିଣୀ ନାଶୀ ସୁଖପ୍ରମୋଦିନୀ ପଦ୍ମିନୀ ॥

ତେଣୁ ଗଗନ ଚନ୍ଦ୍ରମା କ୍ଷୀଣ ଲାଜେ ନ ଆସି ।
ରାଧାକୃଷ୍ଣ ସେବା ସେବ ଜାଣି ପ୍ରିୟାଙ୍କୁ ଟେକି ॥
ଏହିରୂପେ ଶୁକ ଶାରୀ ପଦ ପ୍ରବନ୍ଧେ ଗାଏ ।
ରାଧାକୃଷ୍ଣ ସଖା ସଖୀ ଶୁଣି ଆନନ୍ଦ ପାଏ ॥
ମଣିମଣ୍ଡପେ ଶ୍ୟାମ ସମୀପେ ହେମବରଣୀ ।
ନବଘନମୂଳେ ତଡ଼ିତ୍‌ଲତା ସ୍ଥକିତ ଜାଣି ॥
ସଖୀ ଚଉପାଶେ ବେଢ଼ି ସେବେ ହାସରସରେ ।
ତଗଣମାନ ପହିଲ ନାନା ପରିହାସରେ ॥
ସଖୀ ଦେଖ ଭୃଙ୍ଗ ବାସନ୍ତ ଏ ଫଳ ଚୁମ୍ବଇ ।
ଆଜ ଭ୍ରମ ହୋଇ ପଦ୍ମିନୀର କୋଳ ରମଇ ॥
କେହୁ ବୋଲଇ କୋକିଳ ରସାଳରେ ପଡ଼ିଲା ।
ସ୍ୱାଦ ସଉରଭ କପିତ୍ଥକୁ କମ୍ପା ଏଡ଼ିଲା ॥
କେହୁ ବୋଲେ ଶୁକ ପୁଙ୍ଗଫଳେ ମନ ରସଇ ॥
ଏବେ ତ କେଉଁ ଭାଗ୍ୟେ ଦାଡ଼ିମ୍ବର ପାଶେ ଆସଇ ॥
କେହୁ ବୋଲେ କୃଷ୍ଣସାର ମୃଗ ତୃଷାରେ ଧାଏ ।
ତୃଷାଭରେଣ ଆରତ ହୋଇ ଜଳ ଅର୍ଥେ ଭ୍ରମେ ॥
ଯୋଗେ ଭାଗୀରଥୀ ଗଙ୍ଗାଜଳେ ଅଛଇଁ ପଶି ।
ପ୍ରେମ ପ୍ରଖର ସ୍ରୋତ ନ ପୁଣ ଆସଇ ଭାସି ॥
କେହୁ ବୋଲେ ଆତଯାତ ଯେହୁ କରେ ପିତଳ ।
ହେମ ପାଇଲେ ମଣଇ ସେହୁ ପିତଳ ତୁଲ୍ୟ ॥
କେହୁ ବୋଲଇ ଭାସ୍କରଚଣ୍ଡି ଯେହୁ ଘେନଇ ।
ଘନସାରକୁ ପାଇଲେ ସେହି ସୁନା ମଣଇ ॥
କେହୁ ବୋଲନ୍ତି ମୁକ୍ତା ନାମ ଲୋକେ ପ୍ରଚୁର ।
ଗଜମସ୍ତକୁ ଶାମୁକୁ ଜାତ ବେନି ପ୍ରକାର ॥
ଗୁଣ ଚିହ୍ନିଣ ସାଧବ ଉତ୍ତମକୁ ଘେନନ୍ତି ।
ଅବିବେକ ଲୋକ ହୀରକୁ ପାଷାଣ ମଣନ୍ତି ॥
ସଖୀ ପହିଲରେ ବୃନ୍ଦା କୃଷ୍ଣ ଇଙ୍ଗିତେ ରାଧେ ।
ଶ୍ୟାମ ରଙ୍ଗରେ ମିଶିଲେ ଆନରଙ୍ଗ ନ ମିଶେ ॥
ନବଘନ ଦେଖି ଶିଖୀ ନୃତ୍ୟ କରଇ ଯେଣୁ ।
ପୁଚ୍ଛ ଚନ୍ଦ୍ରକା ଚୂଳରେ ହରି ଘେନନ୍ତି ତେଣୁ ॥
ଭୃଙ୍ଗ ଅଙ୍ଗ ପଦ୍ମରାଗରେ ନସ ଧୂମର ବହ୍ନି ।
ରାଈ ପଦ୍ମିନୀ କୁଚକୁଙ୍କୁମେ ଶରଧା ବହ୍ନି ॥
ପିକ ବାଣୀ ଶୁଣି ରାଧା ବଚନରେ ଶରଧା ।
କର୍ଣ୍ଣେ ଶୁଣିଲେ ହରିବ କାମ ବିଷମ ବାଧା ॥

ନାନାରତ୍ନେ ହେମପଦକ ଏ ହୃଦ ଭଙ୍ଗାରେ ।
ରାଈ ନାମାକ୍ଷର ରତ୍ନ ବନ୍ଧେ ଚଉ ପାଖରେ ॥
ଏହି ରସିକନାଗର ସର୍ବରସ ଭୋକ୍ତା ।
ରସ ପ୍ରିୟସୀରେ ରସବନ୍ତ ରସ ନିହିଲା ॥
କାମେ ମୋହିତ ହୋଇଣ ଅନୋନ୍ୟ ପ୍ରୀତି କରଇ ।
ରାଧା ସଙ୍ଗେ କାମ ମୋହନମୂରତି ପଟଇ ॥
ନାରୀଶିରୋମଣି ରାଈ ଶ୍ୟାମ ପୁରୁଷହୀର ।
ତିନିଭୁବନେ ନ ଥିବ ବେନି ସମାନ ଆଉ ॥
ସଖୀଗଣ ପ୍ରହିଲକ ବୃନ୍ଦା ପ୍ରଭୃତି ବଚନେ ।
ସଭା ସମାଧାନ ରାଧାକୃଷ୍ଣ ପ୍ରସନ୍ନମାନେ ॥
ରାଈମୁଖଚନ୍ଦ୍ରେ କୃଷ୍ଣ ଚକ୍ଷୁ ଚକୋର ଭ୍ରମେ ।
ଶ୍ୟାମ ମୁଖପଦ୍ମ ରାଈ ନେତ୍ରଭ୍ରମର ଚୁମ୍ବେ ।
ବେନି ଜନଙ୍କ ଲୟନେ ବେନି ସମ୍ମୁଖ ପଡ଼େ ।
ପ୍ରେମଲାଳସରେ ଆସି ନ ପାରନ୍ତି ବାହୁଡ଼ି ॥
ନୃତ୍ୟ ନିମିତ୍ତେ ଏମନ୍ତେ ରଙ୍ଗସ୍ଥଳେ ପ୍ରବେଶେ ।
ସଖୀ ନାନା ଯନ୍ତ୍ର ବାଇ ଗାଏ ଝଙ୍କାରରସେ ॥
ପ୍ରିୟାମନ ମୋହିବାରେ ମଧ୍ୟେ ମୋହନ ନାଚଇ ।
ସର୍ବେ ଭ୍ରମନ୍ତେ ମଣନ୍ତି ହରି ସୋଳ ଆଗରେ ॥
ପାଦ ପ୍ରହରର ସଞ୍ଚରର ଅଗ୍ରେ ଶୀଘ୍ର ଧୂଳିବା ।
ତାଳମାନ ଅଂଗଭଂଗ ନାନାଗତେ ଖେଳିବା ॥
ବାଜେ ନୂପୁର କଙ୍କିଣୀ ଧ୍ୱନି ନୃତ୍ୟ ନିକଟରେ ।
ହସ୍ତ ହସ୍ତକ ମସ୍ତକ ଶତ୍ତ୍ ଆକାଶପଥେ ॥
ପଞ୍ଚସ୍ୱର ଗୀତେ ଇଷିତେ ଅଧର ଭଙ୍ଗିମା ।
ନେତ୍ର ଅପାଙ୍ଗ ବଞ୍ଚଣ ଚଳେ ଭ୍ରୂଭଙ୍ଗିମା ॥
ନାଚେ ଶିଖୀଚୂଳ ନାସେ ମୋତି ପଦ୍ମ କୁଣ୍ଡଳେ ।
ନାଚେ ଘନସ୍ତନୀ ମନରେ କି ହୃଦମଣ୍ଡଳେ ॥
ନାଚେ ପୁଷ୍ପ ଲତା ତରୁ ତୃଣ ମୃଗ ବିହଙ୍ଗ ।
ନାଚେ ଖେଚର କରେ ନଦୀ ମୋହିତ ରଙ୍ଗ ॥
ଗୃହୁରୁଗୃହିଣୀ ଗୃହୁଭି ଠାଣିମାନ ରହିଲା ।
ରସସାଗରେ ଭସାଇ ପ୍ରିୟା ମନ ମୋହିଲା ॥
ବିକଶିତ ପଦ୍ମ ମଧୁକର ମେଳ ମୁଦିତ ।
ନାଟେ ଲୟନେ ଲୟନେ ନେତ୍ର ଭ୍ରମି ଘୂରିତ ॥
ଗଣ୍ଡ ମୁକୁରେ ତାଟଙ୍କଚନ୍ଦ୍ର ଖେଳେ ଝଟକେ ।
ପ୍ରିୟା ଅନୁରାଗେ ନାଗର ଏ ଚୁମ୍ବେ ଛଟକେ ॥

କଏ ଭ୍ରମର ଭ୍ରମିଣ ଲୋଭେ ଚୁମ୍ବେ ପୁଷ୍ପକେ ।
ବାଳୀ ପଦ୍ମଗନ୍ଧ କୃଷ୍ଣ ଅଙ୍ଗ ଉଦ୍ରେକେ ॥
ଅନ୍ତେ ପ୍ରେମ ଜରଜର ବାହାରେଣ ବାମତା ।
ମୁଖ ଆଡେ କରି ଏ କ ଉର୍ଦ୍ଧ୍ୱଁ ବୋଲେ ବନିତା ॥
କାହା ଉରେ କରଜ କ୍ଷତ କରେ ଅଚେତେ ।
ଚମକଣ ଯେ ଚତୁରୀ କଥା ରଙ୍ଗେ ଗୁପତେ ॥
କାହା ଚିବୁକ ଧରଣ କରେ କର ବାରଇ ।
ଯିବା ବେଗରେ କା ଉରପର ବାସ ହରଇ ॥
ମାଳା ଦେଇ ଏ ବରେ କଲ କାମଦୀକ୍ଷାକୁ ।
ଆଜ କାହା ମନ ଅଛୁ କାମକଳା ଶିକ୍ଷାକୁ ॥
ଦେଖି କୃଷ୍ଣ ନୃତ୍ୟରସ ବଶ କାମିନୀକୁଳ ।
ଲଜ୍ଜାବତୀ ଦୂର କରି ନୃତ୍ୟ ଶିଖେ ସକଳ ॥
କେହୁ ପ୍ରେମଶ୍ରାନ୍ତ ଭୟେ କୃଷ୍ଣ କରଇ କୋଳ ।
କେହୁ ଛଦ୍ମନେ କହଣ ଚୁମ୍ବି ଶ୍ରବଣ ମୂଳ ॥
କେହୁ ଅଞ୍ଚଳେ ସ୍ୱେଦକଣିକା ବଦନୁ ପୋଛେ ।
କେହୁ କର୍ପୂର ଚନ୍ଦନ ପୁଷ୍ପବାଞ୍ଛଣୀ ବାଞ୍ଛେ ॥
କେହୁ ଆଲଟ ଚାମର କେହୁ ପଙ୍ଖା ଢାଳଇ ।
କେହୁ ଧୂପପାନ କେହୁ ଦର୍ପଣକୁ ଧରଇ ॥
କାନ୍ତ ନୃତ୍ୟରତ ତଦଭାବେ ଯେ ରସମୟୀ ।
ନୃତ୍ୟ କରନ୍ତି ରସିକବର ମନକୁ ମୋହି ॥
ପ୍ରିୟା ସ୍ୱରେଣ ଗାୟନ କରି ଯନ୍ତ୍ର ବଜାଇ ।
ମଦନମୋହନ ଶ୍ରବଣ ଆନଠାକୁ ନ ଯାଇ ॥
ରାସରସରେ ରସିକଗୁରୁ ରଙ୍କ ନଚାଏ ।
ଅଙ୍ଗଭଙ୍ଗ ତରଙ୍ଗରେ ତାଳମାନ ବଜାଏ ॥
ଗୁଣଗାନ୍ଧର୍ବିକେ ସଙ୍ଗୀତ ସାହିତ୍ୟପଟିମା ।
ନୃତ୍ୟ କରନ୍ତି ରସିକବର ଭାବକୁ ଘେନି ॥
ବୃନ୍ଦାଚରଣ ଲୁଳିବା ଅଙ୍ଗଭଙ୍ଗ ତରଙ୍ଗେ ।
ଚକ୍ଷୁ ଘୂର୍ଣ୍ଣାଣୀ ଚତୁରୀ ହାସ ଅଧରରଙ୍ଗେ ॥
ନାନାମତେଣ ମସ୍ତକ ମୁଖପଦ୍ମ ଫେରାଏ ।
ରସସାଗରେ ଧୈର୍ଯ୍ୟଧନ କୃଷ୍ଣ ଭସାଏ ॥
ମନ ଚେତା ବୁଦ୍ଧି ସର୍ବ କୃଷ୍ଣ ହାତରେ ଦେଇ ।
ପ୍ରିୟା ପରମାନନ୍ଦକୁ ହୃଦୟପୂର୍ଣ୍ଣ ଥାଇ ॥
ହାବଭାବେ ଆଲିଙ୍ଗନ ରଙ୍ଗ ଅଙ୍ଗ ଅଙ୍ଗରେ ।
ନାନା ନୃତ୍ୟ କଉତୁକ ସଖୀଗଣ ସଙ୍ଗରେ ॥

ପୁଣ ବେଣୁ ଜନ ଯନ୍ତ୍ର ବାଇ କରେ ଗାୟନ ।
ସଖୀଗଣଙ୍କୁ ନଚାଇ ଦେଖେ ମୁଖ ନୟନ ॥
ନାନା ନାଟକରେ ନାଟ ପଣବନ୍ଧେ ଉଲୁଟେ ।
ଶୂନ୍ୟେ ଦେଖନ୍ତି ଶଙ୍କର ସଙ୍ଗ ନନ୍ଦଭ୍ରୁକୁଟେ ॥
ରାଗ ଶଙ୍କରାଭରଣ ଯେ ସକଳ ଈଶ୍ୱର ।
ଶୋଭିଲେ ସର୍ବ ଐଶ୍ୱର୍ଯ୍ୟ ଦେଇ ଭାରୁକ ହର ॥
ପୁଣ ନାଗର ନାଗରୀ ପଣବନ୍ଧ ନର୍ତ୍ତନ ।
ସଖୀ ତାଳଅନ୍ତେ ମାନ ନୃତ୍ୟଦେଇ ଯତନ ॥
ସଖୀବୃନ୍ଦ କରେ କରବନ୍ଧ ମଣ୍ଡଳ ହୋଇ ।
ମଧ୍ୟେ କେଶୋରୀ କିଶୋର ନୃତ୍ୟ ଅମୃତମୟୀ ॥
ପୁଣ ବେଣୁ ସଖୀ କନ୍ଧେ କରି ମଧ୍ୟେ ନାଗର ।
ରାସରସରେ ଅନେକ ରୂପ ଲୀଳାସାଗର ॥
ରାଧାକୃଷ୍ଣ ରାସ ଦେଖି ସର୍ବେ ଆନନ୍ଦଭରେ ।
ତରୁ ପ୍ରଫୁଲ୍ଲକଳିକା ପୁଷ୍ପ ବରଷେ ଶିରେ ॥
ଗୋପୀ ବେନି ମଧ୍ୟେ ଶ୍ୟାମ ବେନି ମଧ୍ୟେ ଗୋପିନୀ ।
ରାସମଣ୍ଡଳରେ ଯେତେ କୃଷ୍ଣ ତେତେ ତରୁଣୀ ॥
କ୍ରୀଡ଼ାଗୂର୍ଯ୍ୟ ଅଗୋଚର ଦୃଷ୍ଟାନ୍ତରେ ଆଭାସେ ।
କୃଷ୍ଣଚନ୍ଦ୍ର ପ୍ରତିବିମ୍ବ ଗୋପୀଘଟେ ପ୍ରକାଶେ ॥
କାର୍ଯ୍ୟ କାରଣରେ କୃଷ୍ଣରୂପ ଗୁଣ ବହନ୍ତି ।
କେହୁ ରମଣ କେହୁ ରମଣୀ ଜାଣି ନୁହନ୍ତି ॥
ଗୋପୀ କୃଷ୍ଣଭିନ୍ନ ନୁହନ୍ତି ଏ ଏକଇ ତନୁ ।
ସବୁ ଶାସ୍ତ୍ରରେ ବଖାଣି ଜାଣି ଏ ଅନୁମାନୁ ॥
ରାଧା ଅନୁରାଧା ମଧ୍ୟେ କୃଷ୍ଣଚନ୍ଦ୍ର ବିରାଜେ ।
ଅଂଶେ ଅଂଶେ ବାହୁ ଦେଇ ରାସମଣ୍ଡଳୀ ସାଜେ ॥
ଶୂନ୍ୟେ ବିଦ୍ୟାଧରୀ ଅପସରା ଗୃହେଁ ମୋହିତ ।
ବୃନ୍ଦାବନେ ଗୁଳ୍ମଲତା ହେବୁଁ ମନେ ବାଞ୍ଛିତ ॥
ରାସରସ ବହୁରୂପ ପ୍ରେମସାଗରେ ମଜ୍ଜି ।
ପୁଣି ମନସିଜ ରସରାଜ ବେଶକୁ ସାଜି ॥
କଳକୁଣ୍ଠଣୀ ଯନ୍ତ୍ରରେ କମନୀୟ ମକର ।
ଅଙ୍ଗ କନକ ନେତ୍ର ମାଣିକ୍ୟ କଣ୍ଠି ମାଳାର ॥
ମାର୍ଦ୍ଧବାଲେ ହର୍ଷିତ ଶୃଙ୍ଗ ଦଶନ ହୀରା ।
ପୁଷ୍ପ ରାଗରେ ରସନା ହସେ ବଦନ ତୋରା ॥
ଚଉ ଚରଣ ମର୍କତ ନଖ ମୋତି ବିରାଜେ ।
ପୁଚ୍ଛ ଗରୁଡ଼ ଭଙ୍ଗିରେ ଅଷ୍ଟରତନ ସାଜେ ॥

ଖଗପୁଚ୍ଛ ପଟ୍ଟଲିପ୍ତ ଗଳେ ଚମ୍ପମାଳାରେ ।
ଦିବ୍ୟ କନକ ମଣ୍ଡପାସନ ଧୃପୁଷ୍ପସାରେ ॥
ହରିଚନ୍ଦନ ପଲଙ୍କରେ ଉପର ଭୂଷଣ ।
ପୀତାମ୍ବାଳରେ ମୁକ୍ତାଧାର ଦର୍ପଣ ॥
ଖଞ୍ଜା ରତନ ଝଲକିପାଟୀ ମାଳଅମ୍ବରେ ।
ଚଉକଣେ ଲମ୍ବେ କୁରୁବେଳ ଗୁହ୍ନ ଗୁମ୍ଫର ॥
ଝମ୍ପାପୁଷ୍ପ ଚମ୍ପା ଥୋପା ଥୋପା କୁନ୍ଦକଳରେ ।
ମଧ୍ୟେ କେତକୀ ପାଖଡ଼ା ମଣ୍ଡି ଧାଡ଼ିମାଳରେ ॥
ମୂଳ କେଶର କୁସୁମ ରକ୍ତପଦ୍ମ ଶେବେଳ ।
ବନ୍ଧୁଚନ୍ଦ୍ର ଉଦେ କି ଏ ନବଜଳଦ କୋଳ ॥
ମୀନକେତନ ପତାକା ଧ୍ୱଜ କଳସ ଛନ୍ଦେ ।
ମନମଥ ମନ ମଣ୍ଡି ଉଡେ ଏ ବନ୍ଧ ବକ୍ତ୍ରେ ॥
ଚନ୍ଦ୍ରଚନ୍ଦ୍ରାତପ ଖଞ୍ଜି ଚନ୍ଦ୍ରକାନ୍ତି ସୁନ୍ଦରେ ।
ଧ୍ରୁବବାଡ଼ ପୀଢ଼ ହେମାସନ ତୁଳ ସମ୍ଭାରେ ॥
ତହିଁପରେ ବିଜେ ମଦନମୋହନ ମୁରାରୀ ।
ବାମଜାନୁ ପରେ କୋଳେ ଧରି ଏ ପ୍ରିୟବନ୍ଧୀ ॥
କାମଗଜ ହରବିଜେ କରେ ବୀରବେଶରେ ।
ବାମେ କୁସୁମ କୋଦଣ୍ଡ କାଣ୍ଡ ଦକ୍ଷିଣ କରେ ॥
ପାଦସରୋଜ ମଞ୍ଜୀର ଅନର୍ଗଳ ତୋଡ଼ରେ ।
ସିଂହକଟିତଟେ ପୀତପଟ ମେଖଳା ସାର ॥
ବାମେ କେତକୀର ଛୁରୀ ବୀରନେତ ଉଡ଼ଇ ।
ଦେଖି କୁଳବତୀ ଯଥରେ ଚମକ ପଡ଼ଇ ॥
ବାହେ ବାହୁଟି ସ୍ତ୍ରୀପଟଣୀ ଅଙ୍ଗୁଳିରେ ମୁଦ୍ରିକା ।
ସର୍ବାଙ୍ଗରେ ଚଉସମ ଲମ୍ବେ ନବମାଳିକା ॥
ପଦ୍ମ ପଦକ କୌସ୍ତୁଭହାର ହେମମେଢ଼ରେ ।
ମଧ୍ୟେ ହୀରାର ନାୟକ ନାନାରତ୍ନ ବେଢ଼ରେ ॥
ଚନ୍ଦ୍ର ଆଦି ଗ୍ରହ ତାରାଗଣ ଏକମେଳ କି ।
ହରି ହୃଦୟୁ ନାଭିମଣ୍ଡଳେ ଜନ୍ମ ନେଲେ କି ॥
ବିମ୍ବାଧରେ ମନ୍ଦମୃଦୁ ହସି ତାମ୍ବୁଳ ଭୁଞ୍ଜେ ।
କର୍ଣ୍ଣେ ମକରକୁଣ୍ଡଳ ଗଣ୍ଡଦେଶେ ବିରାଜେ ॥
ଭାଲେ କସ୍ତୁରୀତିଳକ ଭଞ୍ଜ ଭଞ୍ଜ ଅଳକା ।
ହେମପଟିରେ ଖଞ୍ଜିଣି ମୋତିପନ୍ତି ଝଲକା ॥
ରତ୍ନକଷଟି ମୁକୁଟ ତାକୁ କୁସୁମ ଗଭା ।
ଶିଖ ଶିଖେ ଶିଖିପୁଚ୍ଛ ଗର୍ଭେ କେତକୀ ଶୋଭା ॥

ପୁଷ୍ପକେଶର ଭ୍ରମର ଝମ୍ପା ଧନୁ ମଣ୍ଡିତ ।
ଭୃଙ୍ଗ ଗୁଞ୍ଜ ଟଙ୍କାରେ କନ୍ଦର୍ପ ଦର୍ପ ଖଣ୍ଡିତ ॥
ଫରହର ଉଡେ ନିଭୁବନେ ଜୟପତାକା ।
ସାକ୍ଷାତରେ ମନମଥରେ ଏ ମନ୍ମଥ ଏକା ॥
ମନଗମନ ମକର ଯାନ ସମ୍ଭାବାକାରେ ।
ରାଧାକୃଷ୍ଣ ପଣ୍ଡି ବିଜେ ଶୁଣ କେ କହି ପାର ॥
ମୂର୍ତ୍ତିମନ୍ତେ ନବମଦନ ଏ ରତି କୋଳରେ ।
ହେମମକର ଉପରେ କଳ୍ପତରୁ ମୂଳରେ ॥
ବୃନ୍ଦା କାମବିଜେ-ପୂଜା କରି କଲେ ଆଳତି ।
ବୃଷ୍ଟି ହେଲା ପୁଷ୍ପ ଯାତି ଜାତି ମଲ୍ଲୀ ମାଳତୀ ॥
ଯେତେ ସେବା ଧରି ପଟଆଣି କାମିନୀକୁଳ ।
ଶୋଭାଦେଖି ଅସମ୍ଭାଳ ସଖୀ ମଦନେ ଭୋଳ ॥
କେହୁ ବାମା ଅଙ୍ଗଭଙ୍ଗିମାରେ ରହେ ଆଳସ୍ୟେ ।
ବାହୁ ତୋଳନ୍ତେ ଶରସନ୍ଧି କୁଚେ ଲମ୍ବେ ॥
ଦେଖି ଚମକ ଚକ୍ଷୁ ରହେ ପଲକହୀନେ ।
କାହା ମରମେ ଭେଦନ୍ତେ ମୋହେ ଅବଶ ଲମ୍ବେ ॥
ବେଗେ ବଣ୍ଟନେ କୁସୁମକାଣ୍ଡ ସମ୍ମୁଖ ହୁଏ ।
ମୃତ୍ୟୁସଞ୍ଜୀବନୀ ଦେଲ କିଏ ଚେତନା ପାଏ ॥
କୃଷ୍ଣ ଅଧର ତାମ୍ବୁଳ ପ୍ରେମଚିହ୍ନକୁ ବଣ୍ଟି ।
ପାଶ ସଖୀ ଦେଖି କର୍ଣ୍ଣେ କହେ ଇଙ୍ଗିତରେ କାହ୍ନ ॥
ଯେତେ ହରିଦ୍ରା ସଦନେ ନିଧିପ୍ରବେଶ ଘୁଞ୍ଚି ।
ଶଠ ମିତ୍ର ହରି ନେଲ କିଏ ଛଦ୍ମ ବନ୍ଧି ॥
କେଉଁ ବାଳା ଗଳାମାଳା ହୁଏ ସୁମନବାଣ ।
କାହା ଉପରେ ପରାଗ ଧୂଳି ବରଷେ ପୁଣ ॥
କାହା ପରେ ପଡ଼େ ଅବିରତେ ଅବିରଗୁଣ୍ଡି ।
କାହିଁ ମକରନ୍ଦ ପାଣିର ସଳିଳ ନଉଡ଼ ॥
ଫଗୁଗୁଣ୍ଡି ପଡ଼ି ଜଡ଼ ଅଙ୍ଗ ଧରିଙ୍ଗ ଶୋଭା ।
କୁଚଶମ୍ଭୁ ପୁଷ୍ପଶରଘାତେ ଶ୍ରୋଣୀକ ବାହ୍ୟ ॥
ଚନ୍ଦ୍ର ଚନ୍ଦନକଳେ ଭୂଷିତ କାହାର ତନୁ ।
କାହା ଶିରେ ପୁଷ୍ପ ଜଉଡ଼ଇ କୁସୁମଧନୁ ॥
ଚନ୍ଦ୍ରକାରକ ଶର କାହାର କୁଚେ ହାବୁଡ଼ି ।
ଭାଙ୍ଗି ତ୍ରୁଟିଣୀ କଞ୍ଚୁଳିବାସ ଖଳେ ପଡ଼ି ॥
କର କମ୍ପିବାର ବାସ ଉରେ ଧରି ନପାରେ ।
ମନୋଭବ ଭୟେ କି ଏ ଶମ୍ଭୁହାଟଅମ୍ବରେ ॥

କାହା କବରୀ ଫିଟନ୍ତେ କରେ ସାଞ୍ଜୋଇ ବାଳୀ ।
ଏହି ସମୟେ ତାର ଉରଜୁଁ ବସନ ଟଳି ॥
କେଶ ଛନ୍ଦ କରେ ବନ୍ଧ ବାସ ନ ପାରେ ରଖି ।
ପିଠି ଦେଇଣ ରହନ୍ତି ପୁଷ୍ପସର ଉପେଖି ॥
କେଉଁ ନାଗରୀ ନାଗର ସଙ୍ଗେ ସଂଗ୍ରାମ ସଜ ।
ଭ୍ରୂକୋଦଣ୍ଡ ଅଞ୍ଜନ ଗୁଣ ନେତ୍ରନୀରଜ ॥
ଟାଣି ଆକର୍ଣ୍ଣ ଯେ ପର୍ଯ୍ୟନ୍ତ କଟାକ୍ଷ ସନ୍ଧି ।
ପ୍ରକ୍ତଶର କରି ହରି ତାର ହୃଦକୁ ବିନ୍ଧି ॥
କେହୁ କେଶବାସ ଅସମ୍ଭାଳେ ସଖୀ ଉହାଡ଼େ ।
କେହୁ ଶର ପଡ଼ନ୍ତେଣ କରକମଳେ ଆଡ଼େ ॥
କେହୁ ଅଶକ୍ତେ ଶରଘାତେ ଲତା ଅନ୍ତରେ ।
କେହୁ ଲୁଚିଣ ରହଇ ନାରୀଗଣ ଭିତରେ ॥
ମନଭେଦୀ ସର୍ବଜାଣେ କୃଷ୍ଣ କୁସୁମବାଣ ।
ଯହିଁ ଥିଲେ ତହିଁମିଳେ ଭେଦେ ମର୍ମ ଖୋଜିଣ ॥
ଶରପଥ ଆତଯାତ ବାଟେ ଅସ୍ଥିର ଧୀରୁ ।
ତନୁ ଜରଜର କମ୍ପଭର ରମ୍ଭାରମ୍ଭୋରୁ ॥
ଅଷ୍ଟଦଳେ ପ୍ରେମପୁଷ୍ଟା ଅଷ୍ଟସଖୀ ଅଛନ୍ତି ।
ରାଈ ରତିପ୍ରିୟ ବଳି ଯେନା ତହିଁ ମିଳନ୍ତି ॥
ପୂର୍ବେ ଲଳିତାର ସମୀପରେ ମିଳିଲେ ଯାଇ ।
ବାଳୀ ପୂଜା କରି ପୁଷ୍ପାଞ୍ଜଳି ତାମ୍ବୁଳ ଦେଇ ॥
ବୋଲେ ଲଳିତା ମକର ଶ୍ରବଣରେ ଜଣାଅ ।
ଏହି ମରମେ ତରୁଣୀ ଲତା ଧୀରେ ହଣାଅ ॥
ବୃନ୍ଦାବନ ଚନ୍ଦ୍ର ଆହ୍ଲାଦେ ଏ ବନଜୀବ ।
ଏବେ ବିପରୀତ ହେଉଅଛି କି ଅସମ୍ଭବ ॥
ମନସିଜ ଦ୍ୱିଜରାଜ ରଜନୀରେ ବିହରି ।
ଯାନ ଚଢ଼ି ଧନୁ ଧରିବାକୁ ନୁହନ୍ତି ହରି ॥
ଶମ୍ଭୁ ପ୍ରାୟେ କି ମଣୁଛ ବାଳା ଉରଜ ବେନି ।
ଖଣ୍ଡଚନ୍ଦ୍ର ପ୍ରାୟେ ମଣି ଭାଲ ପନ୍ନଗ ବେଣୀ ॥
କଣ୍ଠେ ଗରଳ ନୁହଇ ଏହୁ ମର୍କତ ହାର ।
ଭସ୍ମ ନୁହେ ଅଙ୍ଗ ଲେପନ ଏ ଚନ୍ଦନ ସାର ॥
ନୁହେ ତ୍ରିଶୂଳ ତ୍ରିବଳି ନୁହେ ଡମ୍ବରୁ କଟି ।
ପଶୁ ଶୋଭାଙ୍ଗେ ବନ୍ଧିଲେ ପଶୁପତି ନୁହେଟି ॥
ଧନୁ ନ ସନ୍ଧ ଶରକୁ ମଦନ ରଙ୍ଗର ଭ୍ରମେ ।
ନବ ଅବୋଧ ଅବଳା ସହିପାରୁ କି ଆମ୍ଭେ ॥

ଶୁଣି ଲଳିତା ତହୁଁ ତୋଷରେ ଉପମା ବାଣୀ ।
ତହୁଁ ଐଶାନ୍ୟେ ବିଶାଖାପାଶେ ପ୍ରବେଶ ପୁଣି ॥
ଦେଖି ପାଦେ ଅର୍ଘ୍ୟ ଦେଇ ପୂଜା କରେ ଦମ୍ପତି ।
ନିଜ ସେବା ସେହ ତୋଡି ରଇ ଗୋବିନ୍ଦେ ମତି ॥
ରସ ଶୁଶ୍ରୂଷା ବଚନେ ଲୋଚନର କଟାକ୍ଷେ ।
କରେ ଇଙ୍ଗିତ ଲକ୍ଷିତେ ଦୃଷ୍ଟାନ୍ତରେ ପ୍ରତ୍ୟକ୍ଷେ ॥
ନବକାମଦେବ ନଗରବନେ ବାସବ ଗୃହିଁ ।
ତେଣୁ ସହସ୍ରେକଯୋନି ନିଜ ତନୁରେ ବହି ॥
ବ୍ରହ୍ମା ବିଷ୍ଣୁ ଶିବ ଆଦି ପ୍ରିୟା ଅର୍ଦ୍ଧାଙ୍ଗେ ଧରି ।
ଖଗ ମୃଗ ନ ମଣି ମାନି ତ ରମଣୀକରି ॥
ପ୍ରିୟବକ୍ଷ ରତି ଆଶ୍ରେ ତେଜେ କନ୍ଦର୍ପଚାପ ।
ତୁମ୍ଭ ପ୍ରିୟବକ୍ଷ ପ୍ରୀତି ଆମ୍ଭଠାରେ କି କୋପ ॥
ବନେ ଏକାନ୍ତେ ବସନ୍ତେ ନିଶି ନବକାମିନୀ ।
ରୂପ ଲାବଣ୍ୟସାଗରେ ଭାସି ମୂର୍ଚ୍ଛିତ ଜାଣି ॥
ଖଣ୍ଡଖଣ୍ଡ କରୁଅଛି ଅନ୍ତେ ମକରଧ୍ୱଜ ।
ମାରି ଧନୁର୍ଦ୍ଧର ହୋଇ ମୂର୍ଚ୍ଛିତରେ ନାରାଜ ॥
ଅଶକତେ ଭାସିଗଲା କୁଳୁଁ ଉଦ୍ଧରି ନିଅ ।
ମୋହିଜନଙ୍କୁ ବିମ୍ବାଅଧରୁ ଅମୃତ ଦିଅ ।
ବହୁରୂପେ ବିଶାଖିକା ବାଣୀ ଶୁଣି ଚଳିଲେ ।
ତହିଁ ଉତ୍ତରୁ ଚମ୍ପକଲତା ପାଶେ ମିଳିଲେ ॥
ପୂଜା କରି ବାଳା ଚମ୍ପାମାଳା ଗଳାରେ ଦେଲେ ।
ସେହି ଭ୍ରମର ଉପମା ବିନୟରେ କହିଲେ ॥
ନଦୀ ଶାରି ମନୋହର ଯେଉଁ ତରୁ ଲତାରେ ।
ବଡ଼ ପ୍ରଥମେ ଉପାଡ଼ି କି ଏ ସଖୀ ଲତାରେ ॥
କାମ ସମଗ୍ର ବିଜୟେ ତୁହି ଦୁଃଖ ମୋଚନ ।
ଅଷ୍ଟଚରଣ ଚତୁର୍ଭୁଜ ଖଞ୍ଜଲୋଚନ ॥
ରାଧା କୃଷ୍ଣଚନ୍ଦ୍ର ସଙ୍ଗ ନବ ମକରେ ଗୃହିଁ ।
ତେଣୁ ଶୀତେ କମ୍ପେ ତନୁ ଜାଡ଼ ବଚନ ବହି ॥
ଗନ୍ଧ ତୁଷାର ବରଷେ ପୁଷ୍ପଧନୁ ଗଗନ ।
କଲୁଁ ମକରେ ଲାବଣ୍ୟ ଜଳେ ପ୍ରୟାଗ ସ୍ନାନ ।
ଧେନ କୁଚକୁମ୍ଭ ଦାନ କୃଷ୍ଣ ସୁର୍ଦ୍ଧିଜରାଜ ।
ତନୁ ଦକ୍ଷିଣାକୁ ଦେବୁଁ ଫଳ ଲଭିବୁଁ ଆଜ ॥
ନେତ୍ରପଦ୍ମେ ସୁଖୀ ଦେଖି ଉଦେ ଅରୁଣାଧର ।
ଶୀତ ଖାତରୁ ମୁକତ ହେବୁଁ ଲାଗିଲେ କର ॥

ସୁଧା ଅଧରୁ ହବିଷ୍ୟ ପାନ କରିବୁଁ ତୃଷ୍ଣି ।
ରସ ଉତ୍ସବରେ ଉଜାଗର ହୋଇବୁଁ ରାତ୍ର ॥
ଶୁଣି ପ୍ରସନ୍ନ ମକର ସ୍ନାନ ବ୍ରତ ଶ୍ରୀକୃଷ୍ଣ ।
ନେହେ ସୁଦେବୀ ସଜନୀ ଦେଖି ପରମତୁଷ୍ଟ ॥
ରତ୍ନଖଟରେ ସୁବାସ ନୀରେ ପାଦ ପଖାଳି ।
ନାନା ସୁଗନ୍ଧେ ପୂଜିଣ ଦେଇ ପୁଷ୍ପଅଞ୍ଜଳି ॥
କରଯୁଗଳ ଯୋଡ଼ିଣ ସ୍ତୁତି ବଚନ ଭଣେ ।
ଜୟ ମଦନମୋହନ ରସ ରାଧାରମଣେ ॥
ଜୟ କୁସୁମକୋଦଣ୍ଡକାଣ୍ଡ ମକରଧ୍ୱଜ ।
ଜୟ ପୀତାମ୍ବର ବେଣୁଧର ଗୋକୁଳରାଜ ॥
ଜୟ ବୃନ୍ଦାବନଚନ୍ଦ୍ର ନେତ୍ରସୁଖଦାୟକ ।
ଜୟ ରସିକଶେଖର ରଙ୍ଗଭୂମି ନାୟକ ॥
ମୃଦୁମଧୁର ମୂରତି ପୂର୍ଣ୍ଣଚନ୍ଦ୍ର ବଦନ ।
ଶୋଭାସମୁଦ୍ର କୁଣ୍ଡଳେ କୋଟି କୋଟି ମଦନ ॥
ଦେଖି ପାଷାଣ ତରଳ ନଦୀ ସ୍ତକିତେ ରହେ ।
କୃଷ୍ଣ ଧଇର୍ଯ୍ୟ ପାରେ କି ରଖି ଯୁବତୀ ଦେହେ ॥
ଯେଉଁ ମକର ଖେଳାଇ ଆମ୍ଭ ହୃଦେ ନରୁଅ ।
ମନମୋହନ ପାଶେ ଓଠାରି ପଚ୍ଛ ଯୁଞ୍ଜାଅ ॥
ଏତେ କହି ଅଧୋମୁଖେ ମହୀ ଚରଣେ ଘଷି ।
ତହୁଁ ପଶ୍ଚିମର ରଙ୍ଗଦେବୀ ପାରୁଶେ ଆସି ॥
ରଙ୍ଗେ ପୂଜା କରି ରଙ୍ଗ ଗୁଞ୍ଜମାଳାଭରଣେ ।
ବୋଲେ ରଙ୍ଗଭୂମି ଭ୍ରମ ନବବାଳା ମାରଣେ ॥
କାମକାଣ୍ଡ ଭେଦନ୍ତେଣ ଅଙ୍ଗେ ବ୍ୟଥା ନ ଦେନୁ ।
ତୁମ୍ଭ ଲୋଚନ ଗୃହାଣି ଶର ମନ୍ଥଇ ତନୁ ॥
ବାହୁପାଶ ବନ୍ଧନକୁ ମନ କରି ଚାପଇ ।
ତୀକ୍ଷ୍ଣ ନଖାଙ୍କୁଶ କୃଷ୍ଣ କୁଚକୁମ୍ଭ କମ୍ପଇ ॥
ତୁମ୍ଭ ବିମ୍ବାଧର ମଧୁ ମଦ ବୃନ୍ଦାନ୍ତେ ଲାଗେ ।
ଗୁଣ ଗାନ କଲେ କି ହେବ ତା ଚେତନା ଜାଗେ ॥
ଏଣୁ ନିଜ ଦେହେ ଆୟତ୍ତ ଯେ ନାହିଁ ଆମ୍ଭର ।
ପରିରମ୍ଭ କରି ନିଲ୍ଲଜ୍ଜେ ବାହୁ ତନୁ ତୁମ୍ଭର ॥
ମନମୀନ ଲାବଣ୍ୟ ସରୋବରରେ ଭାସଇ ।
ମୁଖପଦ୍ମ ମକରନ୍ଦ ନେତ୍ର ଅଳି ଚୁମ୍ବଇ ॥
କୁଚ ବେନି ଚକ୍ରବାକ ଏଥୁ ତଟାଂଗ ଇଚ୍ଛି ।
କଟକାଇ କରିବାକୁ କେହୁ ଅସାଧ ଅଛି ॥

ରଂଗଦେବୀ ଅଂଗନବେଦ ବିନୟ ବାଗରେ ।
ଶୁଣି ନଇଗଲେ ଚଳି ମିଳେ ଶଶୀ ଆଗରେ ॥
ନିଉଜ୍ଜ୍ୱଳ କରି ବାଳୀ ପୂଜି ପୁଷ୍ପଚନ୍ଦନେ ।
ଖଦି ପକାଇ କହଇ ସ୍ତୁତିଶତ ବଚନେ ॥
ହେମାଞ୍ଚଳେ ନୀଳାଞ୍ଚଳେ ଘନେ ବିଦ୍ୟୁନ୍ନିଶ୍ଚଳ ।
ଦେଖି ଯମୁନାଗଙ୍ଗ ସ୍ତକିତ ପାଷାଣ ଜଳ ॥
ଲୌହ ପୁଷ୍ପରୁ କୋମଳପୁଷ୍ପ ଲୌହରୁ ତୀକ୍ଷ୍ଣ ।
ପଞ୍ଚଶର ବୋଲି ଏକେ ଏକେ ଏ ଲକ୍ଷ ଲକ୍ଷ ॥
ଜୀବ ଅଜୀବ ପ୍ରାୟେ ନିର୍ଜୀବ ତରୁପଲ୍ଲବେ ।
ନିଭଲୋକଙ୍କୁ ଦୁର୍ଲ୍ଲଭ ଭୂବଲୋକେ ସୁଲଭେ ॥
ଲୋଚନକୁ ଅଗୋଚର ବଚନକୁ ରସେ ।
କୁଳବଧୂବ୍ରତହତ ଯେବା ଧଇର୍ଯ୍ୟ ଧ୍ୱଂସେ ॥
ଧନୁର୍ଦ୍ଧର କୁଜନକୁ ଦଳ ସୁଜନ ପାଳେ ।
ବୃନ୍ଦାବନ ଧନୁର୍ଦ୍ଧର ନବଅବଳାଦଳେ ॥
ଏଣୁ ମହାଭୂ ଧଇର୍ଯ୍ୟଲଜ୍ଜା ଘେନ ପଳାଇ ।
ଉରଭଂଗୀ ବାଳା ମନ ଜଳ ନିତ୍ୟ ବଳାଇ ॥
ଶତୀ ସନମାନ ବଚନ ଯେ ପାଇ ଚଳିଲେ ।
ଦକ୍ଷିଣରେ ତୁଂଗବିଦ୍ୟା ସଖୀ ପାଶେ ମିଳିଲେ ॥
ରାଧାମାଧବ ଆଗମ ଦେଖି ସାନନ୍ଦବାଳା ।
ବେନି ପୂଜା କରି ଦେଲେ ପଦ୍ମ କଦମ୍ବମାଳା ॥
ପରିବାଦିନୀ ବାଦନ ମେଘ ମହ୍ଲାର ରାଗେ ।
କୃଷ୍ଣ ଚଞ୍ଚଳ ଚାତୁର୍ଯ୍ୟ ଶ୍ଳେଷ ରୂପକ ବାଗେ ॥
ବୃନ୍ଦାବନ ପୁରନ୍ଦର ବିଜେ ଉଚିତ ବନେ ।
ପୁଷ୍ପଧନୁ ଧରିଣୀ ଅବଳା ଦର୍ପଭଞ୍ଜନେ ॥
ଦଶଦିଗେ ଶୋଭି ଶ୍ୟାମଘନ ନବ ଉଚ୍ଛନ୍ନ ।
କାନ୍ତ କାନ୍ତା ଏ ଉଚିତ ଧନୁଘୋଷ ଗର୍ଜନ ॥
କେକୀ ପିଞ୍ଛ ଆର୍ଦ୍ରାବଳୀ ହାର ବକମାଳିକା ।
ଶରକୁସୁମ ନିକର ବରଷାରେ କରକା ॥
କାମଦାବାନଳ ନାଶି ନେତ୍ରଚାତକ ତୋଷ ।
ଅଂଗ ଅବମର୍ଷରଣେ ଜାତ ବିବିଧ ରସ ॥
ରୋମତୃଣାଙ୍କୁର ପିକବାଣୀ ଜାଡ଼ି କହିଲେ ।
କୁଚ କେକୀ ନାଦେ କଙ୍କିଣୀ ଡାହୁକ ଡାକିଲେ ॥
କୁଳବଧୂ କୁଳଲଜ୍ଜି ପ୍ରେମନଦୀ ବହିଲେ ।
ଧୀର ମହତତରୁ ଉପୁଡ଼ି ଯୁଖେ ମାତିଲେ ॥

ମଧୁମାସରେ ଅକାଳ ବୃଷ୍ଟି ଚଇତମତା ।
ରତି କ୍ରୀଡ଼ାରସେ ମତ୍ତ ବ୍ରୀଡ଼ା ଦୂରେଣଗତା ॥
ଯୁବା ଯୁବତୀଯୂଥ ବିଅର୍ଥେ କର ଅନର୍ଥ ।
ମନମଥ ମନ୍ମଥର ତୁମ୍ଭେ ଯେ ମନୋରଥ ॥
ବେନି ଜନେ ଆଶ୍ରେ କରିଥିବୁଁ ସନ୍ନିଧାନରେ ।
ଆମ୍ଭମାନଙ୍କୁ ସୁଦୟା ଥିବ ସାବଧାନରେ ॥
ଶୁଣି ସରସ ବଚନ କୃଷ୍ଣ ହରଷେ ଚଳି ।
ଅଗ୍ନିକୋଣେ ଚନ୍ଦ୍ରରେଖା ପୂରଡ଼ରେଣ ମିଳି ॥
ଦେଖି ଷଡ଼ଅର୍ଘ୍ୟେ ପାଦପୂଜା କରିଣ ବାଳା ।
ଗୃହୁଁ ଚନ୍ଦ୍ରକାନ୍ତ ମଣିମାଳା ଲମ୍ବାଇ ଗଳା ॥
ଧରି ଦର୍ପଣ ଗ୍ରୁମୁରେ ହାସରସେଣ ଭଣେ ।
ପ୍ରିୟା କୁଚକୁଙ୍କୁମରେ ତନୁ ଗଉର ଦିଶେ ॥
କଞ୍ଜକେଶରେ କି ମତ୍ତଭୃଙ୍ଗ ଅଙ୍ଗ ଘଷିଲା ।
କିବା କାମହେମ ଶ୍ୟାମକଷଟିରେ କଷିଲା ॥
ଶୁଦ୍ଧଜାମ୍ବୁନଦ ଚିହ୍ନ ଷଷ୍ଟି ସହସ୍ର ବାନ ।
ଷଷ୍ଟିଦଣ୍ଡ ରସେ ପରିପୂର୍ଣ୍ଣ ଅମୂଲ୍ୟ ଧନ ॥
ଦେବେ ହେମଗିରି ଆଶ୍ରେ କରି ବଇରି ସାଧି ।
ତୁମ୍ଭେ କାମ ସାଧ ରାଧା କୁଚଗିରି ଆରାଧି ॥
ତେଣୁ ସକଳ ସାଧିବ ରତିସଂଗ୍ରାମେ ଜିତା ।
ଏବେ ତୁମ୍ଭ ପରିଜନେ କାମ କରେ ଅହନ୍ତା ॥
ଶର ଭେଦ ଆମ୍ଭ ଅନ୍ତ ରହି ନୁହେ ବାହାର ।
ମନେ ବିବେକ ଧରି ଆସୁତ କଲ ବାହାର ॥
ତୁମ୍ଭ ଯୋଗୁଁ ନାରି ଗଲୁଁ ଆମ୍ଭେ ସକଳ ନାରୀ ।
ରଖ ମଦନକଦନାନଳୁଁ ଉପାୟ କରି ॥
ତନୁ ତନୁ ମିଳନରେ ବସନ୍ତ ଅତନୁ ଘୂଞ୍ଚେ ।
ଯେହୁ ବିଯୋଗୀ ତାର ତହୁଁ କେବେହେଁ ନ ମୁଞ୍ଚେ ॥
ଅଷ୍ଟଦିଗେ ପ୍ରେମଶ୍ରେଷ୍ଠ ସଖୀ ଉଲୁସି ରସେ ।
ରତିରସେ ମିଳି ମତ୍ତ ଅତି ତନୁଆଳସ୍ୟେ ॥
ଅଧୋଉର୍ଦ୍ଧ୍ୱେ ଯାନ ତୋଳି ମଧ୍ୟେ ଧନିଷ୍ଠାଗ୍ରତେ ।
କୁଚକୁମ୍ଭେ ନଖରେଖା ନବଚନ୍ଦ୍ର ବିହିତେ ॥
ତେଣି ଚତୁସ୍ତି ପୁଷ୍ପଚନ୍ଦନେ କଲା ଅର୍ଚ୍ଚନ ।
କହେ ଇଙ୍ଗିତେ ଉଚିତ ନଭଚର କଚନ ॥
ରାଧା ସନ୍ନିଧି ଜ୍ୟେଷ୍ଠାକୁ ପେଶି ଅତି ଆରତ ।
ଆହେ ଗୋକୁଳଚନ୍ଦ୍ରମା ଏହା ତ ଅନୁଚିତ ॥

ଜ୍ୟେଷ୍ଠ ସଙ୍ଗେ ଆଗେ ଭୋଗ ହେଲେ କନିଷ୍ଠ ଯୋଗ୍ୟ ।
ଲୋକସମାଗ୍ରର ଲୋକ କରି ଅବିଧି ମାଗ ॥
ଶୁଣି ହୃତ ମଣି ଜ୍ୟେଷ୍ଠାପାଶେ ମିଳିଲେ ଯାଇ ।
ଦେଖି ମୂକଜ ବାଳୀ ତାରାବଳୀ ହାରକୁ ଦେଇ ॥
ବୋଲେ ଚତୁରବର ଚତୁଷ୍ଟି ବଚନେ ଜଣି ।
ସପତାଙ୍କ ଯୋଗେ ଧନିଷ୍ଠା ମକର ବଖାଣି ॥
ଦେଖ ପ୍ରତ୍ୟକ୍ଷେ ଧନିଷ୍ଠା କୁମ୍ଭେ ଶଶୀ ଶୋଭିତା ।
ତନ୍ତ୍ର ତୃଣ ଲତା ଶରଣ ଦନ୍ତିଶେ ଅଯାନ୍ତା ॥
ଅନୁକୂଳେ ମୂର୍ଦ୍ଧ୍ନିକୁମ୍ଭେ ଗୃହୀଁ ଚଳେ ଉତ୍ତରେ ।
ଏମନ୍ତେ କାଳ ଭ୍ରମଣ ଘଡ଼ିକର ଭିତରେ ॥
ଯହିଁ ମନ ତହିଁ ଯାନ ବୃନ୍ଦାଦେବୀ ନିର୍ମାଣ ।
ଲକ୍ଷ ଲକ୍ଷ ହୁଏ ପୁଷ୍ପପଞ୍ଚଅକ୍ଷୟ ବାଣ ॥
ସର୍ବ ଯୁବତୀ ମିଳି ଶିରେ କୁସୁମ ଢାଳନ୍ତି ।
ଆଜୁଁ ମଦନଗୋପାଳ ନାମ ହେଉ ବୋଲନ୍ତି ॥
କେହୁ ବୋଲେ ଏହୁ ବନପତିଙ୍କ ଶୁକନଖ ।
ହରିଣାକ୍ଷୀ ବକ୍ଷ ବିଦାରିଣ ଶୋଣିତ ଦେଖ ॥
କ୍ଷୀଣକଟି ଗୃହୀଁ ଗଜଗତି ସ୍ତନକଠେ ରହି ।
ଏକ ଆରକୁ କହନ୍ତି ଏଥି କେଶରୀ ନାହିଁ ॥
ପ୍ରତ୍ୟକ୍ଷରେ ଏହି ବନ ଦେଖି କଲୁଁ ଆଶ୍ରୟ ।
ସିଂହ ପରିଜନ ହୋଇ କାମଶୃଗାଳେ ଭୟ ॥
ଆମ୍ଭେ ତୁମ୍ଭ ବଳଭୋଗ ଆନେ ନୋହୁ ନା ଯୋଗ୍ୟ ।
ନିଭୃତ କୁଞ୍ଜରେଭରି କର ଇଚ୍ଛାରେ ଭୋଗ ॥
ରତିଉଧୂକେ ସକଳେ କହି ସରସ ବାଣୀ ।
ଲକ୍ଷ୍ମୀକାନ୍ତ ଦତ୍ତ କରି ଶୁଦ୍ଧ ତରୁଣୀମଣି ॥
କାମଅନଳେ ହେମବରଣୀ ଦଗଧ ହୋଇ ।
ଗ୍ରୁଢ଼ କୁଟିଳ ଉଜ୍ଜ୍ୱଳରସ କାମକୁ ବହି ॥
ଏମନ୍ତେଣ କଉତୁକ ବହୁରୂପ ପ୍ରବନ୍ଧେ ।
ଅକଥିତ ସରସ୍ୱତୀ ଅଗୋଚର ବିବୁଧେ ॥
କ୍ରୀଡ଼ା ଆଶ୍ଚର୍ଯ୍ୟ ଯମୁନାକୂଳେ ନିକୁଞ୍ଜବନେ ।
କାନ୍ତକୋଳେ ରାଧା ସଖୀ ମୁଖ ଦେଖେ ନୟନେ ॥
କୃଷ୍ଣ· ନୀଳବନେ ରାଧିକା ରୂପଶୋଭା କନକ ।
ଏଣୁ ମାଧୁର୍ଯ୍ୟରସରେ ସୁଖ ବଢ଼େ ଅନେକ ॥
ଏମନ୍ତେଣ କୃଷ୍ଣ ଯାନ ତେଜି ପ୍ରିୟାକୁ ଘେନି ।
ହେମମଣ୍ଡପରେ ସିଂହାସନେ ବିଜୟେ ବେନି ॥

ସେବା ଆନବାରଣ ପଟ୍ଟଆର ନାଟଶିବୃନ୍ଦ ।
କାମରାଜାଧିରାଜ ସମ୍ପତ୍ତି ବୃନ୍ଦାବନେନ୍ଦ୍ର ॥
ପୁଷ୍ପ ଚନ୍ଦ୍ରାତପ ପଥୋପାସାର କୁସୁମମାଳ ।
ପୁଷ୍ପବଞ୍ଜଣୀ ଗୃମର ଛନସଗନ୍ଧ ଚଉଳ ।
ଅନୁକ୍ଷଣ ହୁଏ ଚଉଦିଗେ କୁସୁମ ବୃଷ୍ଟି ।
ଅଗ୍ରଧୂପ ଧୂଆଁ ଗନ୍ଧ ଦଶଦିଗେ ପ୍ରକଟି ॥
କୃଷ୍ଣ ପୁଷ୍ପଧନୁଶର ବୃନ୍ଦା କରେଣ ଦେଲେ ।
ସାରବେଶ ଶ୍ରୀଅଙ୍ଗୁ ଲଜ୍ଜିତା ଉଲାଗି କଲେ ॥
ଗୃହ୍ନିଁ ରମଣୀ ବଦନ ହାସ ମୁଖଅମ୍ବୁଜ ।
ସର୍ବଅଙ୍ଗ ଶୂନ୍ୟ ପୀତାମ୍ବର କେବଳ ମାଝେ ॥
ରାଧାଅଙ୍ଗ ଶୋଭା ସଜ୍ଜରତ୍ନ ଭୂଷିତ ହୋଇ ।
ଏଣୁ ସାକ୍ଷାତ ମନ୍ମଥ ମନମଥକୁ ମୋହି ॥
ବୃନ୍ଦା ସମ୍ଭାର ନାନା ଉପାଧି ଅଶନାଦିକ ।
ରୁଚି ରୁଚିର ସ୍ୱାଦୁ ମଧୁର ମଧୁମାଦକ ॥
ସୁବାସିତ ପୁଷ୍ପରସସାର କନକପାତ୍ରେ ।
ଭୂଳା ଧରି ଢୋଳ ଗୁଣି ସଞ୍ଚ ଅନେକ ଯନ୍ତ୍ରେ ॥
ଏହୁ ମଦନବର୍ଦ୍ଧନ ମଧୁ ନାମ ଏହାର ।
ପାନେ ପ୍ରମତ୍ତ ଉଦ୍ଧତ ରତି ରଣବିହାର ॥
ବୃନ୍ଦା ଜଣାଇ ଶ୍ରୀମୁଖରେ ମଧୁପାତ୍ର ଧରିଲେ ।
କୃଷ୍ଣ କିଛି ପାନ କରି ତହୁଁ ରାଇଙ୍କି ଦେଲେ ॥
ଚେଲାଞ୍ଚଳ ଉହାଡ଼େଣ ରଙ୍କ ପାଇ କେତେଠାଟି ।
ଯେତେ ପାତ୍ରେ ଥିଲା ଶେଷ ସଖୀ ପାଇଲେ ବାଣ୍ଟି ॥
କହୁଁ କହୁଁଣ ଅରୁଣବର୍ଣ୍ଣ ନେତ୍ରସରୋଜ ।
ମତ୍ତ ବାତୁଳ ସ୍ମରନ୍ତେ ଏକ ଆରେକ ସଜ ॥
ଟହଟହ ହସ କେଶବାସ ଅସମ୍ଭାଳରେ ।
ଟଳଟଳ ଚଳ ବିଚଳିତ ହାରମାଳରେ ॥
ଖନଖନ କଥା ପୁନଃ ପୁନଃ କଳରବରେ ।
କାହ୍ନୁ କାହ୍ନୁ ଚିହ୍ନା କୁଞ୍ଜେ ଛଳ ଭଲକ୍ଷବରେ ॥
ନେଲ ନେଲ ମନ ଦେଲ ମନ ମନମୋଜରେ ।
ହର ହର ସ୍ମରଭୟ ହର କୁଞ୍ଜ କୁଞ୍ଜରେ ॥
ଚଳ ଚଳ କାନ୍ତ ଅବଲମ୍ବ କାହ୍ନିଁକ ବିଳମ୍ବ ।
ଦେଖ ଦେଖ ଗାଦେ ଅନଙ୍ଗ ସର୍ବାଙ୍ଗେ ପ୍ରଳମ୍ବ ॥
ପଦେ ପଦ ନଖେ ନଖ ମିଶି ମୁକୁଟମଣି ।
ଏହୁ ଏହୁ ପ୍ରାଣନାଥ ଦେଖ ହୃଦମ୍ବ ହାଣି ॥

କେହୁ ଅସନ ଧରିଣ ସ୍ମରଶାସ୍ତ୍ରକୁ ପଢ଼େ ।
ଏକ ଆରେକରେ ବଖାଣନ୍ତି କନ୍ଦଳ ବଢ଼େ ॥
ଶିବ ସମାଧି ଭାଙ୍ଗିବାପାଇଁ ମଦନ ଗଲା ।
ରୁଦ୍ରାନେତ୍ରଣ ସେ ମଦନାନଳେ ଦହନ ହେଲା ॥
ରତିପ୍ରିୟା ଧରାମୃତ ପାନେ ଅକ୍ଷୟ ଯେଣୁ ।
ଠାବେ ଠାବେ ରହେ ତେଣୁ ଭସ୍ମ ହୋଇଲେ ତନୁ ॥
ସର୍ବଜନ ମନେ କାମିନୀର ନୟନମୀନ ।
ତେଣୁ ନାମ ତାର ମନସିଜ ମୀନକେତନ ॥
ଆଉ ଜନେ ଥାଇ ବୋଲେ ଅଛି ଅନେକ ସ୍ଥାନେ ।
କାମୀ କାମିନୀଙ୍କ ମୁଖ କୁଚଜଘନାଶନେ ॥
କେହୁ ବୋଲଇ ନନ୍ଦାଶର ରମ୍ୟବନ ସଦନେ ।
କେହୁ ବୋଲଇ ସୁଗନ୍ଧ ପୁଷ୍ପଚନ୍ଦ୍ର ଚନ୍ଦନେ ॥
କେହୁ ବୋଲଇ ବସନ୍ତଭୃଙ୍ଗ ପିକବଚନେ ।
କେହୁ ବୋଲଇ ମାଦକ ମଧୁ ଅମୃତାଶନେ ॥
କେହୁ ବୋଲେ ଭବଭୟେ କାମଶ୍ୟାମେ ଶରଣ ।
ଯେନ୍ତ ଥୋଇଣ ଭ୍ରୂଲତାରୂପ ନୟନବାଣ ॥
ଖଳନେଳିକ ନୁହେ ଭଲ ନବନାଗ ମାରନ୍ତେ ।
ଦେଖ ମଗର ଚଢ଼ିଣ କହୁଅଛି ଶ୍ରବଣେ ॥
ପୁଣି ଏକଜଣ-ଭାଷି ତହୁଁ ସଖୀଗଣରେ ।
ପଡ଼ିଛନ୍ତି ନିଜ ପ୍ରିୟବଶ ରତିରଣରେ ॥
ହେମବର୍ଣ୍ଣରୂପେ ମହାଯୋଗୀ ଯୋଗକୁ ଭାଙ୍ଗି ।
କଣ୍ଠରେ ମତ୍ତ ମୋହି ରତିରଣରେ ସାଜି ॥
ବାହୁପାଶ ନଖକୁଚ ଦନ୍ତକ୍ଷତ ଆୟୁଧେ ।
ହାସଚୁମ୍ବନ ହୁଙ୍କାର ନାଦ ତର୍ଜନ ଯୁଦ୍ଧେ ॥
ତନୁ ତନୁ ଜଡ଼ି ଗଡ଼ାଗଡ଼ି ମାଲବନ୍ଧାଣେ ।
ଚଉଷଠିବନ୍ଧେ ରଣେ ନେତ୍ର ଶରସନ୍ଧାନେ ॥
ମହାଦେବଙ୍କୁ ଜିଣି ଜଗତେ ଅଜିତକାମ ।
ବ୍ରହ୍ମା ଆଦି ଦେବ ଦର୍ପ ଦଳି ଦର୍ପକ-ନାମ ॥
ପୁଣି ଆନେସରି କହୁଅଛି ଏକଇ ବାମା ।
ସତ୍ୟ ତହୁଁ ଅଧିକେ ସେ ଭାଙ୍ଗେ ହରଗାରିମା ॥
ତ୍ରିପୁରମଣୀ ବଶରେ ଶିବ ଉଲଗ ହେଲେ ।
ତାରାବଳୀ ଅମ୍ବରକୁ ଉର୍ଦ୍ଧ୍ୱେ ଫିଙ୍ଗିଣ ଦେଲେ ॥
ତେଣୁ ଗଗନ ନାମ ଅମ୍ବର ତାରାବଳୀରେ ।
ହରଦିଗମ୍ବର ରତି ସୁଖ ସାର ସଂସାରେ ॥

ପୁଣ ଆଗସର ତହିଁ ଏକ ସଜନୀ ବୋଲେ ।
ଭଗବତୀ ରତି ଦେଖି ଶିବ ସୁରତିଭୋଳେ ॥
ଅପସ୍ମାରେ ହର ମହାବୀର୍ଯ୍ୟ ସ୍ଖଳିତ ହୁଏ ।
ପାରଦ ନାମ ବସ୍ତୁ କେବେ ବିନାଶ ନୁହେ ॥
ଏହିମତେ କାମ ଜନମନେ ରସବାଢୁଲେ ।
ବୃନ୍ଦାଦି ପେଖି କୁଞ୍ଜ ସଦନେ ପ୍ରବେଶ କଲେ ॥
ପୂର୍ବେ ଶବାଚଲେ ଚନ୍ଦ୍ରରେଖା ଦକ୍ଷିଣ କୁଞ୍ଜେ ।
ଚମ୍ପକଲତା ନୈଋତେ ରଙ୍ଗଦେବୀ ବାୟବେ ॥
ପଶ୍ଚିମରେ ତୁଙ୍ଗବିଦ୍ୟା ବାମେ ସୁଦେବୀ ଶୋହେ ।
ଲଳିତା ଉତ୍ତରେ ଯେ ଈଶାନେ ବିଶାଖା ରହେ ॥
ମଧ୍ୟେ ଶ୍ରୀକୁଞ୍ଜ କୁସୁମଶେଯେ ରାଧା ନାଗର ।
ଅଙ୍ଗେ ଅଙ୍ଗ ମିଶି ରହେ ଯେହ୍ନେ ଗଙ୍ଗାସାଗର ॥
ଦିବ୍ୟମର୍କତାଦି ଜାମ୍ବୁନଦ ମଣି ଏବେ କି ?
ଏକସଙ୍ଗ ହୋଇ ବସ୍ତୁ ଅବସିଦ୍ଧ ଭେଦ କି ?
କାମଅନଳ ଶୀତଳ କରି ପ୍ରେମଜଳରେ ।
ରସସାଗର ଉଚ୍ଛୁଳିଲ ପୂରି ସବୁଆଲରେ ॥
କୁଞ୍ଜେ କୁଞ୍ଜେ କୃଷ୍ଣ ସଖୀ ସଙ୍ଗେ ରତିରଙ୍ଗ ।
ଚନ୍ଦ୍ରେ ଅନେକ କନକପଦ୍ମ ଏକଇ ଭୃଙ୍ଗ ॥
କୃଷ୍ଣ ଅଦ୍ଭୁତ ଚରିତ ଏକ ବହୁତ ମୂର୍ତ୍ତି ।
ଜଣେ ଜଣେ ଜାଣନ୍ତି ସେ ହରି ମୋହରେ ପ୍ରୀତି ॥
ସଖୀମାନେ ଅପମାନେ ଢଗ ମେଲିବା ଦେଖି ।
ଏକ ଆରକୁ ଲୁଚାଇ ବଞ୍ଚେ ସକଳ ସଖୀ ॥
ମଧ୍ୟ ନିଭୃତ କୁଞ୍ଜରେ ରାଧାକୃଷ୍ଣ ସୁରତେ ।
ମୂର୍ତ୍ତିମନ୍ତେଣ ଶୃଙ୍ଗାର ରସପ୍ରବନ୍ଧ ଯେତେ ॥
ରତ୍ନପଲଙ୍କ ହଂସତୂଳ ତୂଳି ନେତ ମୂରୁଳି ।
ସୁବାସିତ ଫୁଲଦଳ ମିଶି କର୍ପୂରଧୂଳି ॥
ପୁଷ୍ପଗବାକ୍ଷରେ ଧୀରେ ଧୀରେ ମଳୟାନିଳ ।
ଚିତ୍ରବୃନ୍ତର ଆଳଟ ଯନ୍ତ୍ର ବାତ ଶୀତଳ ॥
ଚନ୍ଦ୍ରଜ୍ୟୋତି ଚନ୍ଦ୍ରାତପ ଚନ୍ଦ୍ରଶାଳବନ୍ଧରେ ।
ବୃନ୍ଦା ଯତନେ ଶକୁଞ୍ଜ ମଣ୍ଡି ନାନା ଛନ୍ଦରେ ॥
ନବନାଗର ନାଗରୀ ତହିଁ ରତିରସରେ ।
ନାନା ରସକଳା ବର୍ଦ୍ଧି ତହିଁ ପ୍ରୀତିବଶରେ ॥
ରତିଶ୍ରାନ୍ତେ ବୃନ୍ଦା ଶୀତ ଉପଚାର ବିଧାନେ ।
ଏହି ସମୟରେ ଶୀତକର ଉଦେ ଗଗନେ ॥

ସ୍ନିଗ୍ଧଚନ୍ଦନ ବିଞ୍ଚଣୀ ଚମ୍ପାଲତା ହସ୍ତରେ ।
ମନ୍ଦସୁଗନ୍ଧ ଶୀତ ମରୁତ ଆତପାତରେ ॥
ହେମରତ୍ନ ମଣିମୟ ଝରି ସୁଦେବୀ ସେବେ ।
ମୁଖ ପଖାଳି ଶ୍ରମ ବିନାଶି ପ୍ରିୟାନୁଭବେ ॥
ବେନି ବଦନେ ତାମ୍ବୁଲ ଲଗି ଲଳିତା କରେ ।
ଗନ୍ଧଚନ୍ଦନ କର୍ପୂର ଅଙ୍ଗେ ବିଶାଖା ବୋଳେ ॥
ସୁବାସିତ ପୁଷ୍ପମାଳା ହୃଦେ ଚିତ୍ରା ଲମ୍ବାଏ ।
ରୂପମଞ୍ଜରୀ ଗୁଣମଞ୍ଜରୀ ପାଦସମ୍ବାହେ ॥
ଚନ୍ଦ୍ରରେଖା ଚନ୍ଦ୍ରକାନ୍ତ ମଣିଦର୍ପଣ ଧରେ ।
ଘନସାର ଚନ୍ଦ୍ରଧୂଳି ରଙ୍ଗଦେବୀର କରେ ॥
ତୁଙ୍ଗବିଦ୍ୟା ଯନ୍ତ୍ର ବୀଣାନାଦେ ତନୁଦ୍ରବାଇ ।
ବୃନ୍ଦା ନିଜଗଣ ଘେନି ନାନା ସେବା ସେବଇ ॥
ପ୍ରେମପ୍ରଣୟରେ ସହଚରୀ ସେବୀ ସଙ୍ଗରେ ।
ବନ ଭ୍ରମଣ କରନ୍ତି ନାନା କ୍ରୀଡ଼ାରଙ୍ଗରେ ॥
ନଦୀଜଳ ପାରି ହୋଇ ପୁଳିନରେ ପ୍ରବେଶ ।
ବନପରିମଳ ମହାଶୋଭା ଦେଖି ହରଷ ॥
କାମରାଜନ ଗୋଟେ ସ୍ଥାନ ଅଜୟ ଗଡ଼ ।
ଘନଗହନ ସ୍ଥାବର ଲତା ନିବିଡ଼ ବାଡ଼ ॥
ଚଉପାଶେ ବେଢ଼ିଅଛି ଜଳ ଯମୁନା ନଦୀ ।
ହର ପୁରନ୍ଦର ଦେବବର ନ ପାରେ ଭେଦି ॥
ସଦା ବସନ୍ତ ସେ ସେନାପତି ସାଜି ସଇନ ।
ଉଚ୍ଛୁଳଇ ବୀରବର ବୀର ନିଶାଣ ଧ୍ୱନ ॥
ପୁଷ୍ପ ଆୟୁଧ କେଶରଛନ୍ଦ ଝଙ୍କାବାତେ ।
ଗୁରୁ ମାଝଳ ପଟଳ ଶରନୋଣୀ ଶୋଭତେ ॥
ଫୁଲ ଚମ୍ପକ ବକୁଳ ଚନ୍ଦ କିଂଶୁକ କାନ୍ତି ।
ଆଡ଼ଫଳ ଏ ତଗର ମୁଦଗର ଯୋବତୀ ॥
ନବମାଳିକାଦି ଶିରୀଷନ ଶୋଭା ଅଗସ୍ତି ।
ଗଦା ଖଡଗ ଲାଙ୍ଗଳ ମୋଦ କୁନ୍ଦ ମାଳତୀ ॥
କୁନ୍ତକରନ୍ତ କେତକୀ କର ଘଷଣେ ଧୂଳି ।
ଅଛି ବହୁତ ଜାତି ଏରୂପେ ବୁଝିବା କଳ ॥
ଚଉପାଶେ ଠଣା ପଡ଼ିହାରି ଅଳିନିକର ।
କାମରାଜା ଜାଗ୍ରତରେ ନିରନ୍ତର ଝଙ୍କାର ॥
କେକୀ କଣ୍ଠଆଳ ଗଡ଼ବୁଲ୍ ପାଲଟେଣ୍ଟୁଆ ।
ଖଗ ମୃଗ ରଥୀ ପଦାତି ଡାହୁକ ଡାକୁଆ ॥

ପିକ ପାରାବତ କପୋତ ଆଦି ଏ ଅମାତ୍ୟ ।
ଶୁକ ପୌରାଣିକ ଧର୍ମବକ ସାକ୍ଷୀ ପଣ୍ଡିତ ॥
କଣ୍ଡାକାରଣ୍ଡବ କୁମ୍ଭାଟିଆ କାମଦେବଙ୍କ ।
ଲେଙ୍କା ପଡ଼ିହାରି ଖଣ୍ଡିଆ ଆସ୍ଥାନପାଳକ ॥
ହଂସ ଚକ୍ରବାକ ସାରସାଦି ସାମନ୍ତ ପାତ୍ର ।
ଧୀର ପବନ ମଳୟ ମନ୍ତ୍ରୀ ସୁସାଧୁ ମିତ୍ର ॥
ଏହି ଅନୁରୂପେ ଶୋଭା ଯେହ୍ନ ଅନଙ୍ଗରାଏ ।
ଯେହ୍ନ ପୂଜନ ଅକ୍ଷୟ ଗଡ଼େ ଶୁଭେ ରାଜଏ ॥
ଦୂରୁଁ ଦେଖିଲେଣ ଯୁବାଜନ ବଳ ତୁଟଇ ।
ନିକଟକୁ ଗଲେ ବିବେକ ଧନକୁ ଲୁଟଇ ॥
ନବକିଶୋରୀ କିଶୋର ସଖୀଗଣ ସଙ୍ଗରେ ।
ସେହି ବନରେ ପ୍ରବେଶ ହୋଇଲେ କେଳିରଙ୍ଗରେ ॥
ନବକାମରଜା ରାଣୀ ବିଜେ ଜାଣି କାନନେ ।
ଦ୍ୱିଜନିକର ମଙ୍ଗଳଧ୍ୱନି ଶୁଭ ବିଧାନେ ॥
ତରୁ ପ୍ରଣତ ଫଳରେ ଲତାପୁଷ୍ପ ବରଷେ ।
ରାଧାକୃଷ୍ଣ ପଦ୍ମପାଦ ପାଇ ସର୍ବେ ହରଷେ ॥
ଅଛି ଘଟନ ସୁପଞ୍ଚ ପୁଣ୍ଡରୀକ ମଣ୍ଡପ ।
ତହିଁ ପୀଠରେ ସଜାଇଅଛି କୁସୁମତଳ୍ପ ॥
ପ୍ରିୟା ସୁବେଶ କରିବା ଅର୍ଥେ ବିଜୟେ ତହିଁ ।
ଯେଝା ସେବା ଯେହ୍ନ କାମିନୀଏ ଅଛନ୍ତି ରହି ॥
କାନ୍ତ ଅଧୀନ ହୋଇଣ ରସବତୀ ଭାଷଇ ।
ମୋହର ବେଶ କର ପ୍ରାଣନାଥ କୋଳେ ବସାଇ ॥
ଶୁଣି ସାକାଙ୍କ୍ଷ ପୁଣ୍ଡରୀକାକ୍ଷ ସାନନ୍ଦଭରେ ।
ଜାନୁପରେ ପ୍ରିୟା ବସାଇଣ ସୁବେଶ କରେ ॥
ସ୍ୱଚ୍ଛଚିକ୍କଣ ଚିକୁରକେଶ ସାଞ୍ଜୋଇ ଜୁଡ଼ା ।
ଜାତିପୁଷ୍ପଗର୍ଭ ମଣ୍ଡି ଖଞ୍ଜି କେତକୀବେଢ଼ା ॥
ମୋତି ସୀମନ୍ତିନୀ ଚନ୍ଦ୍ରଛୁମ୍ପି ତହିଁ ବିଭାଗେ ।
ଗଙ୍ଗା ସରସ୍ୱତୀ କି ପ୍ରକଟ କାଳନ୍ଦୀ ସଙ୍ଗେ ॥
ଚୂର୍ଣ୍ଣକୁନ୍ତଳରେ ଖଞ୍ଜି ମୋତିଝରା ଝଲକା ।
ମୁଖପଦ୍ମ ଚନ୍ଦ୍ର ବେଢ଼ି ତାରାବଳୀ ଅଳକା ॥
ଭାଲ ଇନ୍ଦୁରେ ସିନ୍ଦୂରବିନ୍ଦୁ ସୁନ୍ଦର ଦିଶେ ।
ଶଶୀଶରଣ ଅରୁଣ ପଶି ତପନ ତ୍ରାସେ ॥
ଏଣୁ ବିଶେଷରେ ଆହ୍ଲାଦ ଏ ଶୀତକର ।
ନେତ୍ର ଇନ୍ଦୀବର ପ୍ରୀତି କାମ ଚାପଶର ॥

ଖେଳାଖଞ୍ଜନଲୋଚନେ ଦେଲ ଅଞ୍ଜନ ରଞ୍ଜି ।
କିବା ଭ୍ରୂଲତା କୋଦଣ୍ଡେ ଗୁଣ ଚଢ଼ାଇ ମାଜି ॥
ଗଜମୋତି ନାକଚଣା ତିଳଫୁଲ ନାସାରେ ।
ବାମପୃଷ୍ଠେ ହେମରତ୍ନ ପଦ୍ମରାଗ କେଶରେ ॥
ମଲ୍ଲିକଳି ଫିଳଡ଼ାଟଙ୍କ ଏ ଇନ୍ଦ୍ରହାଟକେ ।
କଣଲୟ କର୍ଣ୍ଣାଗ୍ରଧୃ କମନୀୟ ଝଟକେ ॥
ଗଣ୍ଡେ ମକର କସ୍ତୁରୀବିନ୍ଦୁ ଚିବୁକେ ଲଗ୍ନ ।
ମୁଖପଦ୍ମଗନ୍ଧେ କୃଷ୍ଣଭୃଙ୍ଗ ରୂପେ କି ରତ୍ନ ॥
ଚନ୍ଦ୍ର ନିନ୍ଦି ଦେବେ ଯେ କରନ୍ତି ଅମୃତପାନ ।
ରାଧାମୁଖ ସୁଧାଂଶୁ ମାଧବ ଶୁଦ୍ଧ ଆପ୍ୟାନ ॥
କମ୍ବୁକଣ୍ଠ ହେମରତ୍ନସରି ମାଳାନାୟକ ।
ଲମ୍ବେ ମୋତିହାର ହେମମାଳା ନାନା ପଦକ ॥
ମୃଗମଦ ପତ୍ରାବଳୀ କୁଚକୁମ୍ଭରେ ଲଗ୍ନ ।
କାମ ରତିରସେ ଅନୁକୂଳ ମଙ୍ଗଳ ଏହି ॥
ହେମଗିରିଶିଖର ପ୍ରାୟେ ଏବେ ଉପମା ଶୋହେ ।
ନଖଚିହ୍ନ ଚନ୍ଦ୍ର ଯେହ୍ନ କାମ ଲୁବଣ ରହେ ॥
ବାହୁମୃଣାଳରେ ତାଡ଼ ବଳ ମୁଦି କଙ୍କଣ ।
ଚନ୍ଦ୍ରଧର୍ମ ଘନ ଶ୍ରୀକରେ ସର୍ବାଙ୍ଗେ ଲେପନ ॥
କ୍ଷୀଣକଟୀ ଆଞ୍ଚ ପିନ୍ଧେ ଉଞ୍ଚ ହିନପଟଣୀ ॥
ଚରଣାପନେ ଖଞ୍ଜି ମେଖଳସାର କିଙ୍କିଣୀ ॥
ମଞ୍ଜୁସରୋଜ ଚରଣଯୁଗେ ମଞ୍ଜୀର ଖଞ୍ଜି ।
ମତ୍ତକଳହଂସ ଗଗନକୁ ସୁସ୍ୱର ବାଜି ॥
ପାଦେ ଅଙ୍ଗୁଷ୍ଠି ଝୁଣ୍ଟିଆ ଦେଇ ଯାବକ ଲଗ୍ନ ।
ବେଶ ବଢ଼ାଇ ସୁରତେ ଲୋଭ ଶୋଭକୁ ଲକ୍ଷି ॥
ପାଣିମିଲନେ କୁସୁମମାଳାକାର ପରାଏ ।
ସ୍ନେହଭରେଣ ତାମ୍ବୂଳ ବିମ୍ବାଅଧରେ ଦିଏ ॥
ବୃନ୍ଦା ଅନେକ ଅଶନ ସଜ୍ଜ କନକପାତ୍ରେ ।
ଦିବ୍ୟ ପକ୍ୱଫଳ ରସମିଶା ବିବିଧ ଯତ୍ନେ ॥
ଆମ୍ବ ପଣସ ଜାମ୍ବୁ ଜମ୍ବିଲ କମଳା ରମ୍ଭା ।
ବର ଦ୍ରାକ୍ଷା ଖଜୁରୀ କ୍ଷୀର କେଉଠ ଟଭା ॥
କେଲ ବକୁଳ ଇରଞ୍ଚ କରମଙ୍ଗା ନାରଙ୍ଗ ।
ବହୁପ୍ରକାରେ ଯେ ବନଫଳ ମନୋହର ଯୋଗ୍ୟ ॥
ଗଙ୍ଗାବାଣ ପ୍ରୟୁଃପେଟୀ ଶ୍ୱେତ ସରସ ଇକ୍ଷୁ ।
ଅଦା ନଡ଼ିଆପାଚ ଚଳୁଡ଼ ଜମ୍ବିଲ କନ୍ଦୁ ॥

କନ୍ଦା କନ୍ଦମୂଳ ନାନା ଫଳରସେ ପ୍ରଧାନ ।
ଚର୍ବ୍ୟ ପେୟ ଲେହ୍ୟ ଆଦି ପ୍ରକାର ସୁଭୋଜନ ॥
ଘନସାର ଜାଈଫଳ ଅଳାଇଚ ଲବଙ୍ଗ ।
ଚୂର୍ଣ୍ଣ ମରିଚମିଶ୍ରିତ ଯେତୁ ଯହିଁକି ଯୋଗ୍ୟ ॥
ହେମବର୍ଣ୍ଣ ସାଗପାନ ବଡ଼ା ଯେ ବିଧି ବାନ୍ଧି ।
ବୃନ୍ଦା ଯତନେ ରନ୍ଧି ପୂଜନବନେ ଉପାଧି ॥
ପୂର୍ବୁଁ ଆଣିଥିଲେ ରାଈ ପକ୍ୱଅନ୍ନ ସମ୍ପାଦି ।
ସ୍ୱାଦୁ ଷଡ଼ରସ ଘୃତପକ୍ୱ ଅନେକ ବିଧି ॥
କ୍ଷୀରବହୁଳ ରସାଳ ଦଧି ତହିଁମିଶ୍ରିତା ।
ଖଣ୍ଡ କର୍ପୂର ସଂଯୋଗେ ଶିଖରଣି ବୋଲିତା ॥
ସର ଗୋଷ୍ଟିକା ଅଧାମ ଚମ୍ପା ଦଧି ତଗର ।
ସର ବହୁଳସର ପାପୁଡ଼ ଲବଣିସର ॥
ଛେନାଲଡ଼ୁ ଦୁଧଲଡ଼ୁ ଦଧିଲଡ଼ୁ ପାୟସ ।
ଖଣ୍ଡକର୍ପୂର ମରିଚ ପାକେ ନଡ଼ିଆ ରସ ॥
ପୟଃ ପାଳୁଅ ମରିଚ ସାଚ ଶାକର ମିଶି ।
ମାଷତଣ୍ଡୁଳ ଲଡ଼ୁ କୃଷ୍ଣ ମନକୁ ତୋଷି ॥
ନାରିକେଳ ରସସାର ସାଚ ନବାତ ପାକେ ।
ସର କର୍ପୂର ମରିଚ ମିଶି ଅମୃତାଧିକେ ॥
ଖଇ ଘୃତେ ପୟଃତାଳ ନେଇ ନଡ଼ିଆପାଢ଼ି ।
ଖଣ୍ଡକର୍ପୂର ମରିଚ ଜଡ଼ ପୀରତି ଅତି ॥
ଘୃତପୂର ସରପୂର ଝିଲି ଅମୃତକେଳି ।
ହଂସକେଳି ପାରିଜାତ କୃଷ୍ଣ ମନକୁ ହରି ॥
ଏହିରୂପେଣ ଅନେକ ପକ୍ୱଘୃତ ଅଶନ ।
କୃଷ୍ଣ ଭୋଜନ ନିମିତ୍ତ ବିଜେ ହେମ ଆସନ ॥
ହେମଝାରିରେ ସୁବାସ ଜଳ ଦକ୍ଷିଣ ପାଶେ ।
ହେମପାତ୍ରେ ହେମଗାତ୍ରୀ ହରଷରେ ପରଶେ ॥
ପ୍ରିୟା ଅନୁଭବେ ହାସ କଉତୁକେ ଭୋଜନ ।
ସ୍ୱାଦ ଷଡ଼ରସେ ପ୍ରଶଂସନ୍ତି ଧନ୍ୟ ଏ ଧନ୍ୟ ॥
ସର୍ବ ଦ୍ରବ୍ୟରୁ ଯେ ଅଧେ ଅଧେ ରହଇ ଶେଷ ।
ପୂର୍ଣ୍ଣ ଅମୃତ ଭୋଜନେ କୃଷ୍ଣଚନ୍ଦ୍ର ହରଷ ॥
ବାସଜଳେ ଆଚମନ-ମୁଖ ମାର୍ଜ ବସନେ ।
ଶତପଦାନ୍ତରେ ତୁଳ ଅପସର ଆସନେ ॥
ସୁପୃଷ୍ଠେ ବସି ତହିଁ କର୍ପୂର ବିଡ଼ିଆ ମଣୋହି ।
ଏଥିଅନନ୍ତରେ ସକଳ ସଖୀ ସଙ୍ଗରେ ରାଈ ॥

ବୃନ୍ଦାଉପାଧି ସାମଗ୍ରୀ ଯେତେ କ୍ରମେ ପରଶେ ।
ବସି ଭୋଜନ କରନ୍ତି ସର୍ବେ ମନହରଷେ ॥
କୃଷ୍ଣ ଅବଶେଷ ରାଈ ପାନ କେବଳ କରେ ।
ଷଡ଼ରସରେ ସକଳ ସଖୀ ଉଦର ଭରେ ॥
ଆଚମନ ବଢ଼ାଇଣ ଚଳେ କୃଷ୍ଣ ନିକଟେ ।
ସେବାପର ସଖୀ ଯେଝା ସେବା ନେଇଣ ଖଟେ ॥
କୃଷ୍ଣ କୋଳ କରି ନେଇ ପ୍ରିୟା କୋଳେ ବସାଇ ।
ସଖୀ ଲେପନ୍ତି ଚନ୍ଦନରେ କର୍ପୂର ମିଶାଇ ॥
କ୍ଷଣେ ବିଶ୍ରାମିଣ ତହିଁ ବନଶୋଭା ଦେଖନ୍ତି ।
ଚନ୍ଦ୍ର ଦୀପ ହୁଳା ଧରି ଚଉପାଶେ ସୁବସି ॥
ଜଳ ମଧ୍ୟେ ଝଲଝଲ ଦିଶେ ଜ୍ୱଳନଜାଳ ।
କୃଷ୍ଣ ବୋଲେ ପ୍ରିୟେ ଦେଖ ଜଳେ ଜ୍ୱଳେ ଅନଳ ।
ବୋଲେ ଲଳିତା ଶ୍ରୀନାଥ କୁମ୍ଭଲବଣ୍ୟେ ଗୃହିଁ ।
ସୂର୍ଯ୍ୟତନୟା ହୃଦରେ କାମ ଅନଳ ଦହି ॥
ଏଣୁ କୂଳ ଲଙ୍ଘି ଆମ୍ଭ ପ୍ରାୟ ସ୍ଥକତେ ରହେ ।
ନେତ୍ର ଇନ୍ଦୀବର ନିରେକ୍ଷିଣ କମ୍ପିତକାୟେ ॥
ବୋଲେ ବିଶାଖା ଶ୍ରୀ କାନ୍ତ ସଙ୍ଗଲବଧୂ ଧୁଞ୍ଝ ।
କାମଅଗ୍ନି ଜଳୁଅଛି ଯମଭରେସ ଲୁନ୍ତ ॥
ଟାକ ବିଚ୍ଛେଦ ସମୟ ଏହିରୂପେ ଦହିବ ।
ଏହିରୂପେ ଝଲକଲେ ହୃଦେ କେତୁ ସହିବ ॥
ଚିତ୍ରା କହେ ଗୃହିଁ ଚଳୁଥିଙ୍କ ଶତ୍ରୁ ଚମକେ ।
ଚନ୍ଦ୍ରହାସ ଖଡ଼ଗକୁ ଧରି କାମ ଝମକେ ॥
କହେ ଚମ୍ପକଲତା ଯମୁନା ଅନୁରାଗରେ ।
ନବ ପ୍ରେମଲତାବଲ୍ଲୀ ପୂରେ ହୃଦବାଗରେ ॥
ବୋଲି ସୁଦେବୀ କାଳିନ୍ଦୀ ସପତ୍ନୀ ଆମ୍ଭର ।
ଅନ୍ୟେ ମାନେ ଅଗ୍ନି ଜାଳେ ସଙ୍ଗ ଦେଖି ତୁମ୍ଭର ॥
ରଙ୍ଗଦେବୀ ଭାଷେ ତାର ପାଶେ ବିହାର ଜାଣି ।
ମୂର୍ତ୍ତିମନ୍ତେ ଧୂଳ ଧରି ସେବେ ଭାନୁଦୁହିଣୀ ॥
ତୁଙ୍ଗବିଦ୍ୟା କହେ ନଦୀ ବୀଣାବାଦନେ ମଣି ।
ବେଦପାଠେ ଚନ୍ଦ ଚନ୍ଦବାଜା ତୁମ୍ଭି ଏ ଜାଣି ॥
ଜ୍ୟୋତିର୍ମୟ ଗୁଣ ଜ୍ୟୋତି ଝଟକଇ ସଂସାରେ ।
ସାର ମାର ସେ ମଧୁରଧ୍ୱନି ଭୃଙ୍ଗ ଝଙ୍କାରେ ।
ଚନ୍ଦ୍ରରେଖା କହଇ ଶ୍ୟାମଘନେ ହେମବରଣୀ ।
ଦେଖି ପଳାଇ ଯମୁନା ପଶି ସଉଦାମିନୀ ॥

ଲାଗେ ଚଞ୍ଚଳ ତରଙ୍ଗ ରଙ୍ଗେ ଜ୍ୟୋତି ପ୍ରକାଶେ ।
ଅଷ୍ଟସଜନୀ ଛଳବା ବାଣୀ ଶୁଣି ହରଷେ ॥
ବୃନ୍ଦା କହେ ଘୋର ପୁଳିନରେ ଦେଖ ଦମ୍ପତି ।
ହାସ କଳରବ ହୁଳହୁଳି କରେ ଆଳତି ॥
ରାଧା ବୋଲନ୍ତି ହେ ବନ୍ଧୁ କର ଅନୁସନ୍ଧାନ ।
ଏହୁ କପଟନାୟକ ଅନୁରାଗ ବିଧାନ ॥
ସମୀପରେ ଥିଲେ ପ୍ରୀତି ଯେସନ୍ତେ ବିକଶୁଥାଇ ।
କିନ୍ତୁ ଅନ୍ତର ହୋଇଲେ ସେହି ସଙ୍ଗତେ ଯାଇ ॥
ପ୍ରିୟା ଇଙ୍ଗିତବଚନେ ପୁଣି ଛଳେ ମାଧବ ।
ରାଧେ ପଦ୍ମିନୀକୋଳରେ ଭୃଙ୍ଗ ଭୁଜଙ୍ଗଧବ ॥
ସୂର୍ଯ୍ୟଭକତା ବୋଲିଣ ସର୍ବେ ଭୁବନେ କହେ ।
ତେଣୁ କୁମୁଦିନୀ ହାସ୍ୟ କରେ ଦେଖ ହେ ପ୍ରିୟେ ॥
ନାଥ ପଦ୍ମିନୀର ପ୍ରିୟ ଭୃଙ୍ଗ ସୁଖଦାୟକ ।
ଶଠପ୍ରୀତି ବନ୍ଧୁ ମଧୁ ପାନ କରେ ନାୟକ ॥
ଉନମତ୍ତେ ନିଦ୍ରାଗତ ରହେ ପଦ୍ମିନୀ କୋଳେ ।
ସଖୀ ଉନ୍ନିଦ୍ର କୁମୁଦ ଜାଗି ଏ ନିଶାକାଳେ ॥
ପ୍ରାଣପ୍ରିୟେ ଦେଖ ପୁଷ୍ପବନ୍ତୀ ନଦୀ ଯମୁନା ।
କୂଳ ଲେଉଟି ସିନ୍ଧୁସଙ୍ଗ ଇଚ୍ଛି ଶୀଘ୍ର ଗମନା ॥
ନାଥ ପତି ହୃଦେ ବହେ ଯେଣୁ ବଡ଼ବାନଳ ।
ପୁଷ୍ପବନ୍ତୀ ତେଣୁ ଶୀଘ୍ର ଚଳି କରେ ଶୀତଳ ॥
ରାଧେ ଦେଖ ଏ ଲବଙ୍ଗଲତା ପୁନ୍ନାଗ ଗଛ ।
ନବକୁମାରୀ ଆଗେ ଉତ୍ତମ ପୁରୁଷ ଇଚ୍ଛେ ॥
ଆହେ ପ୍ରାଣନାଥ ପତିବ୍ରତା ଏହାକୁ କହି ।
ସ୍ୱୟମ୍ବର ବରି ଅନ୍ୟ ପୁରୁଷକୁ ନ ଛୁଇଁ ॥
ପ୍ରିୟେ ସୁନାର ବିଟପୀ ଶୋଭି ସୁବର୍ଣ୍ଣ ଫୁଲେ ।
ଫଳ ଫଳିଲେ ଅଯୋଗ୍ୟ ଭୋଗ୍ୟ ନୁହେ ଶଇଲେ ॥
ରାଣୀ କହେ ବିଟପୀରେ ଯେଣୁ ନୀରସ ହେଲେ ।
ଏଣୁ ବିଟପୀ ହୋଇଲେ ଆଶ୍ରେ ପଥିକ କଲେ ॥
ରାଧେ ଦେଖ ଦେଖ ବନମଲ୍ଲୀ ଶିମୁଳି ସଙ୍ଗ ।
ଏବେ ପ୍ରେମାଙ୍କୁରେ ତମାଳରେ ସମର୍ପେ ଅଙ୍ଗ ॥
ଶୁଣି କାନ୍ତେ ରସବନ୍ତ ପ୍ରୀତିବଚନ ଭାଷେ ।
ଯେସନ୍ତେ ପଦ୍ମିନୀ ତରୁଣୀ ବଞ୍ଚେ ନିଜନିବାସେ ॥
ପୁଷ୍ପ ସମ୍ପୁଟରେ ନିଜ କାନ୍ତ ସଂଗେ ବିହାରେ ।
ଯେହୁ ଯାହାର ସେ ଯୋଗ ମିଳେ କାଳବେଳରେ ॥

ତହିଁ ଦେଖେ ନାଗେଶ୍ୱର ଫୁଲେ ଅଳି ବସିଛି ।
କୃଷ୍ଣ ବୋଲେ ପ୍ରିୟେ କେମନ୍ତେ ଏ ଶୋଭା ଦିଶୁଛି ॥
ରାଣୀ କହଇ ବିଟପକାନ୍ତ ପଦ୍ମିନୀ ମୁଞ୍ଚି ।
ଯେଉଁ ପ୍ରକାରେ ଗଣିକା ରସେ ରଜନୀ ବଞ୍ଚି ॥
ପୁଣି କହେ ହରି ଅଗସ୍ତି ଏ ପୁଷ୍ପ ସଜନୀ ।
ଚନ୍ଦ୍ର ସମୟେ ଉଦୟେ ପାଏ ଶୋଭି ରଜନୀ ॥
ରାଣୀ କହେ ଚନ୍ଦ୍ରାବଳୀ ପ୍ରୀତି ଅନ୍ତେ ବିକଶେ ।
ଦେଖ ଏହି କୁସୁମକୁ ସେହି ପ୍ରାୟୁ ଆଶ୍ରସେ ॥
ଭୃଙ୍ଗ ଆତପାତ ଧ୍ୱନି ଏହୁ ଧୃଷ୍ଟ ବଚନ ।
ନିଜ ସ୍ୱରୂପ ଦେଖିଣ ତେଣୁ ପ୍ରସନ୍ନ ମନ ॥
ଶୁଣି କମ୍ପମାନ ହୋଇ କୋଳେ ଲଗାଇ ରାଣୀ ।
ଧରି ଚଟୁଳ ଚିବୁକ ଧୃଷ୍ଟବଚନ କହି ॥
ସଖୀ ଜନମଦରିଦ୍ର ଯେସନ୍ତେ ପାଇ ରତନ ।
ଲୋକେ ଲୁଚାଇଣ ସଞ୍ଚିଥାଇ କରି ଯତନ ॥
ପଦ୍ମପାଦପାଣି ପଦ୍ମୋଦରୀ ପଦ୍ମଯୌବନୀ ।
ପଦ୍ମଧାରିଣୀ ସୁପଦ୍ମା ପଦ୍ମନାଭ ଭାବିନୀ ॥
ଶ୍ୟାମା ନବୀନା ସୁମନା ଶ୍ୟାମେ ଅନୁରାଗିଣୀ ।
ଶ୍ୟାମବସନୀ ଭୂଷଣୀ ଶ୍ୟାମ ସଉଭାଗିଣୀ ॥
ଶ୍ୟାମବିନୋଦିନୀ ଶ୍ୟାମ ନାମ ଗୁଣବାଦିନୀ ।
ଶ୍ୟାମରଞ୍ଜିନୀ ଶ୍ୟାମମୋହିନୀ ଶ୍ୟାମମୋହନୀ ॥
ମହାଭାବ ସ୍ୱରୂପିଣୀ ବିଶ୍ୱଆହ୍ଲାଦିନୀ ।
ହରିହୃଦୟବାସିନୀ ଗୋକୁଳ ପୁରବନ୍ଦିନୀ ॥
ମନ୍ମଥମଣ୍ଡିନୀ ଦୁଃଖଖଣ୍ଡିନୀ ସୁଖଦାୟିନୀ ।
ଜୟ ଜୟ ରାଧେ ପୁରେ ଚଳ ଥାଉ ରଜନୀ ॥
ଶୁକ ଭଣେ ଜୟ ନବଘନ ଶ୍ୟାମସୁନ୍ଦର ।
ନବଚକୋରୀ ଚନ୍ଦ୍ରାମୃତକ ତୃଷାକୁ ହର ॥
ନବଆଭୀରୀନାରୀ ନାଗରୀ ସୁଖ ସଦନ ।
ମୃଦୁମଧୁରମୁରଲୀ ଅଭିନବମଦନ ॥
ଜୟ ଆଜାନୁପ୍ରଲମ୍ବ ଭୁଜ କରୀକରଭ ।
ରାଧା ପଦ୍ମିନୀ ଆବୃତ୍ତ ଶୋଭି ଅତି ଦୁର୍ଲ୍ଲଭ ॥
ନବଚନ୍ଦ୍ର ମାଳମଣି ତନୁ ଶୋଭିକନ୍ଦର ।
କୁଳବାଳା ସତୀପତ୍ୟାଧି ମନ୍ଥନେ ମନ୍ଦର ॥
ଜୟ ରାଧାପ୍ରାଣବନ୍ଧୁ ତୃଷ୍ଣାବର୍ଦ୍ଧନ ।
ନିଶି ଶେଷ ହେଲା ଚଳ ବେଗେ ନିଜ ସଦନ ॥

ରତି ଆଗମେ ରଜନୀ କାନ୍ତ ସଙ୍ଗ ତେଜଇ ।
ଚନ୍ଦ୍ରକିରଣ ମଳିନ ତାରା ଛବି ଲଭଇ ॥
ରାଧାକୃଷ୍ଣ ଶୁଣି ଚେତ ନିଦ୍ରାଳସ୍ୟ ନୟନେ ।
ବେନି ଏକଅଙ୍ଗ ନିବିଡ଼ରେ ସୁଖଶୟନେ ॥
ବହୁ ପକ୍ଷୀ କୋଳାହଳ ଶୁଣି ସଖୀ କାତର ।
ବେଗେ ଶଯ୍ୟା ତେଜି ମିଳେ କୁଞ୍ଜଗୃହ ଭିତର ॥
ପୁଷ୍ପାବଳୀ ଲତାଜାଲି ଗବାକ୍ଷରେ ନିରୋପ ।
ସୁଖ ବଢ଼େ ରାଧାକୃଷ୍ଣ ଦେଖି କୁସୁମ ତଳ୍ପେ ॥
ମୁଖେ ମୁଖ ଲଗାଇଣ ପାଦ ପାଦରେ ଛନ୍ଦ ।
ଭୁଜେ ଭୁଜେଣ ବନ୍ଧନ ଊରୁ ଊରୁରେ ଲନ୍ଦ ॥
ନବଘନ କୋଳେ ସ୍ଥିରତ କି ସଉଦାମିନୀ ।
ନବନାଗର ଅଙ୍ଗରେ ଶୋଭି ନବକାମିନୀ ॥
ଭାଗ୍ୟବଳେ ସେହ୍ନ ଚିନ୍ତାମଣି ଲଭଇ ଯେବେ ।
ଆଉ ରତନେ ଆଦର ତାର ନ ରହେ ତେବେ ॥
ଯେତେବେଳଯାଏ ନୋହିଥିଲି ଅମୃତ ପାନ ।
ସେତେବେଳଯାଏ ରୁଚ ହୋଇଥିଲି ଅଶନ ॥
ବୃନ୍ଦା କହେ ବ୍ରଜଚନ୍ଦ୍ର ନଭଚନ୍ଦ୍ର ଏ ଏକ ।
ପୁରେ ପୁରେ ପଶି ଭୋଗ୍ୟକରେ କନ୍ୟା ଅନେକ ॥
ରାଜା ସଂଯୋଗେଣ ପୂର୍ଣ୍ଣୋତ୍ତମ ଅବଦ୍ଧମାସ ।
ନାମ ବହଇ ମାଧବ ରାଧା ସବୁ ବିଶେଷ ॥
ବୃଷଭାନୁ ତନୁଜାର ବିନୁ କାହ୍ନୁ ନ ଶୋହେ ।
ଯେସନେ ଚନ୍ଦ୍ରମା ରଜନୀ ବିନା ଶୋଭା ନ ପାଏ ॥
ନାନାରସେ ଛଳ ହାସକଉତୁକ ଇଙ୍ଗିତେ ।
ରାଇ ପକ୍ଷେ ସଖୀ କୃଷ୍ଣେ ରସବଚନାନ୍ତେ ॥
ନିଭୃତରେ ରାଧାକୃଷ୍ଣ ବେନି ରତିରସରେ ।
କୁଞ୍ଜେ କୁଞ୍ଜେ କୃଷ୍ଣ ବହୁରୂପେ ସଖୀ ସଙ୍ଗରେ ॥
ନବସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଯୁବା ଧୀର ଲଳିତ ।
କାମକ୍ରୀଡ଼ା ଚରିତରେ ଚିତ୍ତ ଅନୁରତ ॥
ସର୍ବଗୁଣେ ପରିପୂର୍ଣ୍ଣ ଗୋପଚତୁର୍ବୃନ୍ଦ ।
କୃଷ୍ଣ ରାଈ ସଙ୍ଗ ପାଇ ଏକେ ଏକେ ସାନନ୍ଦ ॥
ଏମନ୍ତରେଣ ରଜନୀ ନବଘଡ଼ିର ଶେଷେ ।
ରାଧାକୃଷ୍ଣ ତେଜି ପୁଷ୍ପଶେଯେ ନିଦ୍ରା ଆଳସ୍ୟେ ॥
ଅଷ୍ଟଦିଗ କୋଣେ ସଖୀଗଣ ପାହାର ଜଗେ ।
ସନ୍ନିଧିରେଣ ମଞ୍ଜରୀଗଣ ସେବ ସଂଯୋଗେ ॥

ଏମନ୍ତେଣ ନିଦ୍ରା ମହାନିଶା ଛଦଣ୍ଡ ଗଲା ।
ବୃନ୍ଦା ତରୁପ୍ରତଟରେ ଯନ୍ତ୍ରେ ନିଶାନ୍ତ ହେଲା ॥
ରାଧାକୃଷ୍ଣ ଜାଗ୍ରତକୁ ସାରିଶୁକ ଜଣାଇ ।
ପଦ୍ୟାବଳୀ ପଢ଼ି ମହୁଦରେ ନିଦ୍ରା ଭଞ୍ଜାଇ ॥
ସାରି ଭାଷେ ଜୟ ଜୟ ବୃଷଭାନୁକୁମାରୀ ।
ଜୟ ଗାନ୍ଧର୍ବିକେ ନବ ଗୋରଚନା ଗଉରୀ ॥
ବୃନ୍ଦାବନେଶ୍ୱରୀ ଗୁଣମୟୀ କୃଷ୍ଣବଲ୍ଲଭେ ।
ପତିବ୍ରତା ପ୍ରିୟବର୍ଗ ସର୍ବ ମଧ୍ୟେ ଦୁର୍ଲ୍ଲଭେ ॥
ଜାତି ପଦ୍ମିନୀ ପଦ୍ମଆସନୀ ପଦ୍ମବାସିନୀ ।
ପଦ୍ମବଦନୀ ପଦ୍ମନୟନୀ ପଦ୍ମଦାମିନୀ ॥
ଏମନ୍ତେଣ ନିଦ୍ରା ତେଜି ପୁଷ୍ପପଲଙ୍କେ ବସି ।
ହାଇ ଘନ ଘନ ବାହାତୋଳି ତନୁ ଆଳସି ॥
କୃଷ୍ଣ ବେନି ଚାରୁଶେ ଅଳତା ଚିହ୍ନକୁ ଦେଖି ।
ନେତ୍ରଅନ୍ତେ ଠାରିଠାରି ଏକ ଆରକ ସଖୀ ॥
ମନ୍ଦ ମନ୍ଦହାସେ ବାସେ ଆଚ୍ଛାଦିଣ ବଦନ ।
ହା ହା କେବଣ ଅବସ୍ଥା ନ କରଇ ମଦନ ॥
ଜାଣି ସଲଜ୍ଜେ ରାଧିକା ମୁଖ ତଳକୁ କରି ।
ଦେଖି ନାଗର ରସିକ ହସେ ମଧୁର କରି ॥
ଯେଝାସେବା ଘେନି ସଖୀମାନେ ଅଛନ୍ତିପାଶେ ।
ଛାଡ଼ି ନ ବଞ୍ଚଇ ବେନି ମନ ପ୍ରେମଲାଳସେ ॥
ବୃକ୍ଷେ କକ୍‌ଖଟି ବାନରୀ ଡାକେ ଜଟିଳା ଆସେ
ଶୁଣି ସଙ୍କୁଚିତେ ସଚକିତେ ସକଳେ ଧାସେ ॥
ହାରମାଳା ଗନ୍ଧପାଣ ଆଦି ଘେନି ଯେଝାରେ ।
ବେନି କର ଧରାଧରି ମିଳି କୁଞ୍ଜ ବାହାରେ ॥
ପଥଜନ ବଞ୍ଚି ନିଜ ପୁରେ ପ୍ରବେଶ ହେଲେ ।
ନିଜ ନିଜ ପଲଙ୍କରେ ଯାଇ ଶୟନ କଲେ ॥
ଏମନ୍ତେଣ ପ୍ରାତଃକାଳେ ପୌର୍ଣ୍ଣମାସୀ ଆଗମ ।
ଦେଖି ନନ୍ଦରାଣୀ ବିନୟରେ ପାଦେ ପ୍ରଣାମ ॥
ଦେବୀ ଆଶୀର୍ବାଦ କରି ସର୍ବଶୁଭକୁ ପୁଚ୍ଛି ।
ପରିଜନେ ପ୍ରତିପାଳୁଛୁ ମା ଏକଇ ବଞ୍ଛି ॥
ମା କେବାଳନ୍ତି ସର୍ବଶୁଭ ଏକା ତାହାରି ଚିନ୍ତା ।
ବନେ ଗୋଧନ ରଖି ଦୁର୍ବଳ କଂସ ଅହନ୍ତା ॥
ଅନୁକ୍ଷଣେ ଖେଳ ବିନୋଦରେ ବାଳକ ସଙ୍ଗେ ।
ଖର ବରଷା ଶୀତ ଦୁଃଖକୁ ଘେନଇ ଅଙ୍ଗେ ॥

ଯେତେ ଯତନେ ରନ୍ଧନ କଲେ କିଛି ନ ରୁଚି ।
ଗାବ ରଖିଆଳ ଷୀଣ ତନୁ କେମନ୍ତେ ବଞ୍ଚି ॥
ମୃତ୍ୟୁଦେଶରେ ଉଦର ଲାଗେ ଦୁର୍ବଳ କାୟୁ ।
ଫଙ୍କ ଦେଲେ ପଡ଼ିଯିବ କି କରିବ ଉପାୟୁ ॥
ଦେବର୍ଷିବୋଲେ ନନ୍ଦ କରେ ଯେ ବସ୍ତୁ ଆରାଧନ ।
ସେହି ପୁଣ୍ୟବଳେ ପୁତ୍ର ଜଗତରେ ବର୍ଦ୍ଧନ ॥
ପୂର୍ବେ ଦୁର୍ବାସାର ବରେ ବୃଷଭାନୁ ନନ୍ଦିନୀ ।
ପାକଭୋଜନେ ବଳିଷ୍ଠ ପୁଷ୍ଟ ଯଶବର୍ଦ୍ଧିନୀ ॥
ତାଙ୍କୁ ପୁରେ ଆଣି ରନ୍ଧନ କରଣ ଭୁଞ୍ଜାଅ ।
କୃଷ୍ଣ ମନ ରୁଚି ହେବ ଜଟିଳାକୁ ମଗାଅ ॥
ଗୃହ ପୁତ୍ରକୁ ଦେଖିବା ବୋଲି ଶୟନଆଳେ ।
ଯଶୋବନ୍ତୀ ଘେନ ପୌର୍ଣ୍ଣମାସୀ ପ୍ରବେଶ ହେଲେ ॥
ଦ୍ୱାର କବାଟ ଘୁଞ୍ଚାଇ ବେନି ଭିତରେ ପଶି ।
ଶ୍ୟାମ ପଲଙ୍କେ ବସିଣ ଅଙ୍ଗ କରେ ଆଉଁଷି ॥
ମାଏ ବୋଲନ୍ତି ହେ ଉଠ ଉଠ ରୁକ୍ମିଣୀଧନ ।
ନୀଳବଦନ ନିରେଖି ସୁଖୀ ହେଉ ନୟନ ॥
ପୌର୍ଣ୍ଣମାସୀ ବଜେକଲେ ତୋତେ କଲ୍ୟାଣ କରି ।
ସଙ୍ଗପୁଏ ଅଗଣାରେ ବସିଅଛନ୍ତି ମୁରି ॥
ବନ ଭ୍ରମଣ ଶ୍ରମରେ ଦେଖ ନିଦ୍ରା ଘାରଇ ।
ପ୍ରାତଃକାଳ ଶୟନରେ ଆୟୁବଳ ହରଇ ॥
ନାନାଧାତୁ ଚିତ୍ର ଲାଗି ଅଙ୍ଗ କଣ୍ଟକେ କ୍ଷତ ।
କହୁଁ କହୁଁ ନେତ୍ରୁଁ ନୀର ସ୍ତନୁ ଷୀର ସ୍ରବତ ॥
କୃଷ୍ଣ ଜନନୀ ବଚନ ଶୁଣି ଜାଗ୍ରତେ ଉଠି ।
ହାଇମାରି ଅଙ୍ଗ ମୋଡ଼ି ଉର୍ଦ୍ଧ୍ୱେ ଛନ୍ଦ ଅଙ୍ଗୁଷ୍ଠି ॥
ପୌର୍ଣ୍ଣମାସୀ ଭଗବତୀ ମାତା ଚରଣେ ନମି ।
କେଶ ସାଉଁଳି ଯତନେ ମାଏ ବଦନ ଚୁମ୍ବି ॥
ଶୋକଗଦଗଦେ ପୁତ୍ର ଅଙ୍ଗ ଆଉଁଷି ବୋଲି ।
ବଡ଼ ଦୁର୍ବଳ ଲାଗୁଛି ତନୁ ମୁଁ ତ ନ ମଲି ॥
ଗାବ ରଖି ବନଯାକ ବନେ ବନେ ବୁଲଇ ।
ଏକଇର ସୁତ ମାତା ପ୍ରାଣ କେହ୍ନେ ଧରଇ ॥
ଏମନ୍ତେଣ ମଧୁମଙ୍ଗଳ ସୁବଳ ମିଳିଲେ ।
କୃଷ୍ଣଦର୍ଶନ ଲାଳସେ ସବୁ ପୁଏ ଚାଲିଲେ ॥
ଦାସ ସାରଙ୍ଗ ରକ୍ତକଆଦି ସେବା ସେବିଲେ ।
ରତ୍ନଘଟର ସୁବାସିତ ଜଳେ ମୁଖ ପଖାଳେ ॥
ନିମ୍ବବାସେ ମୁଖ ମାଜି ବିଜେ ପୁର ଅଗନ ।
ସଖା ସେବକ ମେଳ ସଙ୍ଗେ ବେଢ଼ି ସକଳଜଣ ॥
ଗୋଶାଳାରେ ଗୋଦୋହନେ ଯାଇ ପ୍ରବେଶ ହେଲେ ।
ବତ୍ସ ମେଳିଣ ଏକଆରକେ ଦୋହନ କଲେ ॥
ଗଙ୍ଗା ଯମୁନା ଗୋଦାବରୀ ନର୍ମଦା କପିଳା ।
କାଳୀ ଶ୍ୟାମଳୀ ଧବଳୀ ନୀଳା କାଞ୍ଚନ ମାଳା ॥
ଯେଝା ନାମଧରି ଗାବ ବଛା ପିଆଇ ଲେହି ।
ବତ୍ସ ବାନ୍ଧି ଛନ୍ଦ ବସି ଆଣ୍ଠୁ ଦୁହୁଁଣେ ଦୁହିଁ ॥
ଘନ ଘନ ଗରଜନ ସେ ଗୋଦୋହନ କାଳେ ।
ଏଣେ ପୌର୍ଣ୍ଣମାସୀ ଯଶୋଦାଙ୍କୁ ପ୍ରବୋଧି ଚଳେ ॥
ପୁତ୍ରଗାତ୍ର ବପୁ ପୁଷ୍ଟ ହେବା ଚିନ୍ତା ଜନନୀ ।
ପୁରେ କେମନ୍ତେ ଆଣିବ ବୃଷଭାନୁ ନନ୍ଦିନୀ ॥
ପୂର୍ବେ ମୋତେ ଯେ ଦୁର୍ବାସା କହିଥିଲେ ଏ ବୁଦ୍ଧି ।
ରାଧା ପାକ ଭକ୍ଷଣରେ ଯଶ ଆୟୁଷ ବୃଦ୍ଧି ॥
ଗ୍ରହଶ୍ରେଷ୍ଠ ଘୋରବନେ ଦୁଷ୍ଟଜୀବ ନିର୍ଭୟେ ।
କେଉଁ ପ୍ରକାରେ ଆଣିବ ରାଈ କସ ଉପାୟେ ॥
ସୁଲକ୍ଷଣୀ ଶିରୋମଣି ନାରୀକୁଳରେ ଧନ୍ୟା ।
ମୋର କୃଷ୍ଣଙ୍କୁ ମିଳିବ ଯେବେ ଏମନ୍ତ କନ୍ୟା ॥
ଶାଶୁ ଜଟିଳା ଯତନେ ଜଗି ପୁରେ ରଖାଇ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ନ ହୁଏ ଯାର ଛାଇ ଦେଖାଇ ॥
ପର ଘର ରନ୍ଧନକୁ ସେ କେମନ୍ତେ ଆସିବେ ।
ଗୋପେ ଶୁଣିଲେ ଯେ ମୋତେ ହାସ୍ୟ କରି ହସିବେ ॥
ମୋର ଭରସା ତ ନୋହଉନାହିଁ ଏମନ୍ତ କହି ।
ଯେବେ ନ ଆଣିବ ତେବେ ପୁଣି ପୁତ୍ର ଯେ ନୋହି ॥
ଅସମ୍ଭବ ଉଦ୍‌ବେଗ ମୋତେ ଦଇବ ଦେଲା ।
ଏତେ କହି ଦେବୀ ଲୋତକରେ ପୂରିତ ହେଲା ॥
ଦେଖି ଯଶୋଦା ବିଷାଦ ତହିଁ ଧନିଷ୍ଠା କହି ।
ଅଛି କାରଣ ତୁମ୍ଭର ପୁରେ ଆସିବେ ରାଈ ॥
ତୁମ୍ଭ ବଧୂ କୁନ୍ଦଲତା ଏ ସୁଭଦ୍ରା ବନିତା ।
ବାଳିକାଙ୍କ ବନ୍ଧୁ ପ୍ରୀତି ବୃଷଭାନୁଦୁହିତା ॥
ଶାଶୁ ଜଟିଳା ତାଙ୍କର ଏହାଠାରେ ବିଶ୍ୱାସ ।
ତୁମ୍ଭ ନାମ ଧରି କହିଲେ ପେଷିବେ ଅବଶ୍ୟ ॥
ସୂର୍ଯ୍ୟପୂଜାରେ ଯେ ବିଷ୍ଣୁଶର୍ମା ବରଣ କଲେ ।
ଶାଶୁ ଥାଇ ବଧୂ ତାଙ୍କୁ ଉଭୁଜିବା ପୁଚ୍ଛିଲେ ॥

ବିପ୍ର କହିଲେ ଏ ମହାସତୀ ସାଧବୀ ବାଳା ।
ସର୍ବସୁଲକ୍ଷଣୀ ହୋଇବ ଏ ଗର୍ଭ ବିଫଳା ॥
ଶୁଣି ଜଟିଳା ଆଶ୍ଚର୍ଯ୍ୟ ପାଦେ ଭଗତି ହୋଇ ।
କୁଳରହିବ କେମନ୍ତେ ମୋତେ କହ ଗୋସାଇଁ ॥
ବିପ୍ର କହେ ବ୍ରଜେଶ୍ୱରୀ ଯେବେ କରେ ସହାୟେ ।
ଚିନ୍ତାମଣି ପରିପତିରେ ସର୍ବସିଦ୍ଧି ହୁଏ ॥
ଏହିହେତୁ ତୁମ୍ଭ ସଙ୍ଗେ ପ୍ରୀତି କରି ଶରଧା ।
କୁନ୍ଦଲତା ଗଲେ ବେଗେ ଘେନିଆସିବେ ରାଧା ॥
ଶୁଣି ଯଶୋବନ୍ତୀ ପେଷଣ କୁନ୍ଦଲତାକୁ ରାଇ ।
ମୋର ନିବେଦନ କହ ଜଟିଳାକୁ ମଣାଇ ॥
ମୁହିଁ ଶୁଣିଲି ରାଧିକା ରନ୍ଧନରେ ନିପୁଣ ।
ଜାଣେ ନାଜଣୀ ସଉଣୀ ନଳ ଭୀମ ବିଧାନ ॥
ଆଜ ହେବ ଗୋପାଳ ଭୋଜୀ ନିମନ୍ତେ ଅଛି ।
ପେଷିବ ମୋ ସଙ୍ଗେ ରାଧା ପ୍ରହରେକ ମୁହୂର୍ତ୍ତି ॥
ଏତେକହି ଦାସୀସଙ୍ଗେ ଦେଇ ଉତ୍ତମ ଦ୍ରବ୍ୟ ।
ଆଜ୍ଞା ପାଇ କୁନ୍ଦଲତା ଚଳେ ହରଷଭାବେ ॥
ତୁରିତେଣ ଯାଇ ଯାବଟରେ ପ୍ରବେଶ ହେଲେ ।
ରାଧାକୁଞ୍ଜ ତେଜ ସଖୀସଙ୍ଗେ ପୁରେ ଯେ ଗଲେ ॥
ରତିଶ୍ରାନ୍ତେ ନିଶାଉନ୍ନିଦ୍ରରେ ତନୁ ଅଳସ ।
କୃଷ୍ଣ ବିଚ୍ଛେଦ ଖେଦରେ ଗରୁ କୁଚ କଳଶ ॥
ଶୁତି ପଲଙ୍କରେ ଗତପ୍ରୀତି ସୁମରେ ମତି ।
ମନ ନୟନରୁ ନ ଛାଡ଼ଇ ସ୍ୱପନରେ ପତି ॥
ଆହା ପ୍ରାଣନାଥ ମୋର କେଣେଗଲେ ବିହିଲେ ।
ମୋତେ ଛାଡ଼ିଯାଇ ନିଶ୍ଚିନ୍ତରେ ଶୟନ କଲେ ॥
ନିଦ୍ରା ନୋହିବ କମଳନେତ୍ରେ ମୋର ବିଚ୍ଛେଦେ ।
ଏତେସୁଖ ଏଡ଼ିଗଲ ଏହି ଅରୁଣଉଦେ ॥
କେତେବେଳେ ଯାଇ ପ୍ରାଣନାଥ ମୁଖ ଦେଖିବି ।
ତେତେବେଳଯାଏ ଧୈର୍ଯ୍ୟ କେମନ୍ତେ ରଖିବି ॥
ସତେକି ଦଇବ ମୋରେ ଅନୁକୂଳ ହୋଇବ ।
ନନ୍ଦମନ୍ଦିରକୁ ସଖୀ ସଙ୍ଗେ ଘେନାଇ ଯିବ ॥
କୃଷ୍ଣଙ୍କ ନିମିତ୍ତ ପାକ ସମ୍ପାଦିବ ଯତନେ ।
କୃଷ୍ଣମୁଖ ଅବଲୋକେ ଦୁଃଖ ଯିବ ସେକ୍ଷଣେ ॥
ମନସ୍କାମନା ଅନ୍ତରେ ସେହି ଚେଷ୍ଟା ଆଭାସେ ।
କୃଷ୍ଣ ଅଙ୍ଗସଙ୍ଗ ନଖକ୍ଷତ ଚିହ୍ନ ଉଲ୍ଲାସେ ॥

ଚମକିଣ ଉଠି କହନ୍ତେଣ ସଖୀ ଚେତାଇ ।
ଶ୍ୟାମ ଅଙ୍ଗେ ଜଡ଼ ନ ଛାଡ଼ଇ ମନେ ଭାବଇ ॥
ରାଧେ ମାଜଣା ସୁବେଶ ହୋଇ ଆଳସ୍ୟ ତେଜ ।
କାମମୋହନକୁ ମୋହିବାକୁ ଶ୍ରୀଅଙ୍ଗ ସାଜ ॥
ଦନ୍ତଧାବନପୂର୍ବକ ମାତି ବେଗ ବଢ଼ାଅ ।
ବୁଢ଼ୀ ନ ଦେଖଣୁ ଉତ୍ତରଙ୍ଗ ଚିହ୍ନ ଛଡ଼ାଅ ॥
ଶୁଣି ଚଞ୍ଚଳଚିତ୍ତରେ ଶଯ୍ୟା ତେଜିଣ ଚଳେ ।
ପ୍ରାତଃକୃତ୍ୟ ବଢ଼ାଇ ମାଜଣାମଣ୍ଡପେ ମିଳେ ॥
ହେମବର୍ଣ୍ଣ ଚୂତପତ୍ରେ ଦନ୍ତଧାବନ କରି ।
ତୋଳ ସୁଦେବୀ ଦିଅନ୍ତି ହେମଝରୀରେ ବାରି ॥
ହେମପାତ୍ରରେ ରସନା ଶୋଧି ଦଶନ ଖୁଣ୍ଟି ।
ଯେଝା ସେବା ଘେନି ସଖୀଗଣ ଅଛନ୍ତି ଖଟି ॥
ଜେମା ମାଜଣା ନିମିତ୍ତ ବାସ ପରିଧାପନ ।
ସୁବାସିତ ତୈଳ ଗନ୍ଧ ଶ୍ରୀଅଙ୍ଗରେ ଲେପନ ॥
ନାନା ସୁଗନ୍ଧ କୁଙ୍କୁମ ଘାଣ୍ଟି ଶ୍ରୀଅଙ୍ଗେ ବୋଳି ।
ଛଡ଼ାଗନ୍ଧ ଦୂର କଲେ ସର୍ବସଜଣୀ ମିଳି ॥
ଶୁଦ୍ଧଜାମ୍ବୁନଦ ରସାଣିଲେ ଯେସନ୍ତ ଉଜ୍ଜ୍ୱଳ ।
ମୃଦୁମନୋହର ତନୁ ତେସନ୍ତ ଦିଶେ ନିର୍ମଳ ॥
ତୈଳ ଅଂଲାଦି ନବଗ୍ରହ ନାନା ସୁଗନ୍ଧେ ।
ସ୍ନାନ ସୁବାସଜଳେ କରାନ୍ତି ସଜଣୀବୃନ୍ଦେ ॥
ଶତ ହେମକୁମ୍ଭ ଶୀତଜଳ ମସ୍ତକେ ଢାଳି ।
କେହୁ ଅଙ୍ଗ ମାର୍ଜନା କରି କେଶ ପଖାଳି ॥
ସୂକ୍ଷ୍ମବାସେ ତନୁ ପୋଛି ପିନ୍ଧି ସୁରଙ୍ଗପାଟେ ।
ବେଶ ନିମିତ୍ତ ବିଜେ କରାଇ ରତନପୀଠେ ॥
ଘେନି ବଞ୍ଜୁଳୀ ଚମ୍ପକଲତା କେଶ ଶୁଖାଏ ।
ପାତ୍ରେଘେନି ଅଗୁରୁଧୂପ ରଙ୍ଗଦେବୀ ଦେଖାଏ ॥
ଚିତ୍ରଚିରୁଣୀରେ କରି ବେଣୀରଞ୍ଜେ ତୁଳସୀ ।
ଚନ୍ଦ୍ରଲେଖା ମୋତି ସୀମନ୍ତେ ଯେ କେତକୀଖୋସି ॥
ଘେନି ନର୍ମଦା ମାଳତୀ ନାନା କୁସୁମ ଆଏ ।
ବେଣୀରଞ୍ଜ ଅଗ୍ରେ ଥୋପାମଣ୍ଡି ପୃଷ୍ଠେଲମ୍ବାଏ ॥
ଚଉପାଶେ ବେଢ଼ି ସହଚରୀ ବେଶ କରାଇ ।
ଗନ୍ଧଚନ୍ଦନ ସିନ୍ଦୂର ହେମପାତ୍ରେ ପୂରାଇ ॥
ମୃଗମଦ କର୍ପୂର ଗୁଆଚନ୍ଦନ ଗୋଳି ।
ରଚେ ବିଶାଖା ଚନ୍ଦ୍ରମକର ସୁପତ୍ରାବଳୀ ॥

ନୀଳନଳିନ ନୟନେ ସରୁ ଅଞ୍ଜନ ରଂଜ ।
ସ୍ମରଭ୍ରୂଲତା କୋଦଣ୍ଡଗୁଣ ପ୍ରାଏ ବିରାଜ ॥
ରତ୍ନ ଆଭରଣ ଘେନଣ ଅନଙ୍ଗ ମଞ୍ଜୁଷା ।
ଅନଙ୍ଗ ଅଙ୍ଗେ ଖଞ୍ଜେ ଭୃଙ୍ଗବିଦ୍ୟା ପ୍ରମୋଦଭର ॥
ହେମଗୁଣ ମୋତିବର ତିଳଫୁଲ ନାସାରେ ।
ମଲ୍ଲିକଢ଼ି ଫୁଲଗୋଟି ଆମକର୍ଣ୍ଣଦେଶରେ ॥
ସାଚପାନ ଗୁରୁ ହେମପାତ୍ର କର୍ପୂରଯୋଗେ ।
ବିମ୍ବାଧରେଣ ଲଳିତା ଲାଗି କରେ ସଂଯୋଗେ ॥
ଗଳେ ହେମଗୁମ୍ଫସର ହେମମାଳା ପଦକ ।
ରତ୍ନବେଢ଼ରେ ମେଢ଼ ମଧ୍ୟେର ନୀଳାନାୟକ ॥
ବାହେ ତାଡ଼ କରେ ଚୂଡ଼ ରତ୍ନମୁଦ ଅଙ୍ଗୁଳି ।
ସର୍ବାଙ୍ଗରେ ଘନସାର ଗୁରୁଚନ୍ଦନ ବୋଳି ॥
ଚିତ୍ରା ଗନ୍ଧାଗୃଂଗନ୍ଧାନରେ ନାନା ବସନ ଭଙ୍ଗି ।
ବେଶ ଅନୁରୂପେ ବାସ ପୁଣି ଶ୍ରୀଅଙ୍ଗେ ଲାଗି ॥
ନୀଳ ମୃଦୁଳ ଦୁକୂଳକଟି ପରିଧାପନ ।
ହେମମେଖଳା କିଙ୍କିଣୀ ସାରବନ୍ଧ ଶୋଭନ ॥
ଉରେ ମଣ୍ଡଳେ କନକ କମନୀୟ କାଞ୍ଚୁଲି ।
ପୃଷ୍ଠଭାଗରେ ବନ୍ଧଖଞ୍ଜଣୀ ଝମ୍ପା ଓହୋଳି ॥
ସରୁ ସୁରଙ୍ଗ ଅମ୍ବର ଉପରଣ ଉପରେ ।
କିବା ଅରୁଣ ଆଚ୍ଛାଦେ ହେମଗିରିବରରେ ॥
ହୃଦେ ଅନୁରାଗଲତା ବଢ଼ି ପ୍ରୀତି ବିକଶେ ।
କୃଷ୍ଣ ତମାଳ ତରୁକୁ ଅବଲମ୍ବନ ଆଶେ ॥
ପଦ୍ମପଦ୍ମରେ ନୂପୁର ଗୁରୁ ଝୁଣ୍ଟିଆ ଖଞ୍ଜି ।
ଅତି ମନୋହର କରି ସରୁ ଅଳତା ରଞ୍ଜି ॥
ଧରି ଦର୍ପଣ ଶ୍ରୀମୁରେ ଇନ୍ଦ୍ରରେଖା ଦେଖାଇ ।
ଶ୍ୟାମମୋହନ ବେଶକୁ ଚାହିଁ ପୁଲକ ରାଈ ॥
ଲୀଳାପଦ୍ମ ବୃନ୍ଦା ନେଇ ଏହି ସମୟେ ଦେଲେ ।
ବେଶ ବଢ଼ାଇ ସଜନୀଗଣ ମଙ୍ଗଳ କଲେ ॥
ଏମନ୍ତେଣ ମିଳେ କୁନ୍ଦଲତା ଜଟିଳା ପାଶେ ।
ପାଦେ ଓଳଗନ୍ତି ବୃଦ୍ଧା କୋଳେ ଧରି ଆଶ୍ଲେଷେ ॥
ପାଶେ ବସାଇଣ ପୁଚ୍ଛେ ବ୍ରଜେଶ୍ୱରୀ କୁଶଳ ।
କହେ ସୁଭଦ୍ରବନିତା ମାଏ ସର୍ବ ମଙ୍ଗଳ ॥
ପୁଣି ପୁଚ୍ଛେ ଉପହାର ଦ୍ରବ୍ୟ ଦେଖି ସମ୍ଭାରେ ।
ବ୍ରଜେଶ୍ୱରୀ ନିମନ୍ତ୍ରଣ ଦେଇଛନ୍ତି ତୁମ୍ଭରେ ॥

ଅଘା ବକାଦ୍ଧ ସମ୍ପଦ ହତୁଥିଲେ ସବୁରି ।
ଧର୍ମବଳେ ବାଳମେଳେ ରାମକୃଷ୍ଣ ଉବୁରି ॥
ଏହୁ ଶସ୍ତ୍ରଖଣ୍ଡନକୁ ଭୋଜୀ ଗୋପାଳେ ଦେବ ।
ପୁତ୍ରବଧୂ ଘେନ ତୁମ୍ଭେ ନନ୍ଦପୁରକୁ ଯିବ ॥
ରାଧା ରନ୍ଧଣା ଯୋଗାଡ଼ ସବୁ ଅମୃତମୟେ ।
ମୋତେ କହ୍ୱଣ ପେଷିଅଛନ୍ତି ବହୁ ବିନୟେ ॥
ଅତି ଶରଧା ରାଧାକୁ ମୋର ସଙ୍ଗେ ପେଷିବ ।
ବ୍ରଜେଶ୍ୱରୀ କଥା ଘେନ ବେନି କୁଳ ତୋଷିବ ॥
ଏ ପ୍ରବୋଧ ଶୁଣି ଜଟିଳା ବଞ୍ଚାଇ କହେ ବଚନ ।
ବଧୂ ମଧ୍ୟ ଦିନେ ଦିନକର କରେ ଅର୍ଚ୍ଚନ ॥
ଦୁର୍ବାସାଙ୍କ ଆଜ୍ଞା ପୌର୍ଣ୍ଣମାସୀ ଉପଦେଶରେ ।
ବାଧ୍ୟ ହେଲେ ଶସ୍ତ୍ର ହେବ ଅଭିମନ୍ୟୁ ଆୟୁରେ ॥
ବୃଷଭାନୁ ଶାଶୁ ମୁଖରା ପ୍ରବେଶ ଏକାଳେ ।
ନାନ୍ଦୀମୁଖୀ ବନ୍ଦ୍ରମତି ବେନି ଜାଣି ମିଳିଲେ ॥
କୁନ୍ଦଲତା ଜଟିଳାର କଥା ବଷାଦେ ପଢ଼ି ।
ନାନ୍ଦୀମୁଖୀ କହେ ଉଭୟଙ୍କୁ ସଂଶୟ ଫେଡ଼ି ॥
କାର୍ଯ୍ୟକାରଣେ ଯୋଗାଡ଼ ଭଲ ରାନ୍ଧୁଣୀ ଲୋଡ଼ା ।
ଅମ୍ଭଙ୍କୁ ଅଧିକ ତୁମ୍ଭ ବଧୂ ପାକସଜଡ଼ା ॥
ମୁଖରାର ମୁଖ ଚାହିଁ ବନ୍ଦ୍ରମତି କହଇ ।
ନିମନ୍ତ୍ରଣ ଅବଜ୍ଞାରେ କର୍ମଫଳ ନୁହଇ ॥
ବେନିଜନଙ୍କୁ ଏ ବେନି ସଖୀ ଉଚିତ କହେ ।
ନିମନ୍ତ୍ରଣ ଘେନ ଚଳ ପୁତ୍ରବଧୂ ସମୂହେ ॥
ଅଭିମନ୍ୟୁ ଦୂରଗୋଷ୍ଠେ ତୁମ୍ଭେ ଗୃହ ଜଞ୍ଜାଳେ ।
ଯାଇ ନ ପାରିଲେ ବଧୂ ଯାଉ ଏହାଙ୍କ ମେଳେ ॥
ପ୍ରହରେକ ନନ୍ଦପୁରେ ରହି ଆସିବେ ରାନ୍ଧି ।
ପୁଣି ମଧ୍ୟାହ୍ନେ କରିବେ ଅର୍କପୂଜାର ବିଧି ॥
ଏମନ୍ତେଣ ବେନିକୁଳ କାର୍ଯ୍ୟ କାରଣ ରହୁ ।
କୁନ୍ଦଲତା ବୋଲେ ମାଏ ଏହୁ ପ୍ରମାଣ ହେଉ ॥
ଶୁଣି ମୁଖରା ଜଟିଳା ସନମତେ ବିଚାରି ।
ପୁଣି ଜଟିଳା କୁନ୍ଦଲତାକୁ କଥା ପଚାରି ॥
ତୁମ୍ଭ ଦିଅର କହ୍ନାଇ ଅଦଭୁତ ଚରିତ୍ର ।
ପର ରମଣୀ ରମଣେ ରତ ଅନୁବରତ ॥
କୁଳବତୀ ବ୍ରତ ନୋହିଲାଇ ଶୁଷ୍କ ବାଉଁଶେ ।
[illegible] ଚମ୍ପକଗଛି ନବକାଉଁଶେ ॥

ଧରି ଧଇର୍ଯ୍ୟ ନ ରହେ ଗୃହିଁ ମୋହନରୂପ ।
ଏହି କଥା ମନେ ବିଚାରିଣ ପାଉଛି ତାପ ॥
ଚାପି ଦଶନେ ରସନା କର୍ଣ୍ଣେ କରକୁ ଦେଇ ।
କୁନ୍ଦଲତା କହେ ଅତି ଲାଜକୁଳା କହ୍ନାଇ ॥
ପରିହାସ ଭାଷା ବଚନେ ଆମ୍ଭେ ଶୁଣି ତ ନାହିଁ ।
ତାର ଆଉଳ ପାଉଳ ଦେଖୁ କହିଲୁ ଯେହୁ ॥
ସେତ ରାତ୍ର ଦିବସରେ ଦଣ୍ଡେ ନ ରହେ ଘରେ ।
ନିରନ୍ତର ଗୋଷ୍ଠେ ବନେ ସଖା ଘେନି ବିହରେ ॥
ଆମ୍ଭେମାନେ ହାସ୍ୟ କଲେ ତାହୁଁ ଲାଜ ପଳାଇ ।
ପରବଧୂକୁ କେମନ୍ତେ ପୁଣି ମତି ବଳାଇ ॥
ଧର୍ମେ ଥିଲକୁ ସେ ଧର୍ମ ଦେଖ ପ୍ରତିପାଳଇ ।
ନୋହିଲେ କି ବକା ଅଘା ବଦନରୁ ତରଇ ॥
ପୂର୍ବେ ଗର୍ଗ କହିଛନ୍ତି ଏହୁ ଗୋପ ରଖିବ ।
କରଦାନ ଛଡ଼ାଇଣ କଂସଭୟୁ ନାଶିବ ॥
ବୋଲେ ଜଟିଳା କହିଲ ଅମା ସ୍ୱରୂପ କଥା ।
ଦୁଷ୍ଟ ସଂହାରି ଗୋକୁଳେ ଶୁଣି ବଡ଼ ସମର୍ଥା ॥
ସେହୁ ରାମକୃଷ୍ଣ କୁଶଳ ସମସ୍ତଙ୍କ ଲୋଡ଼ା ।
ନାଅ ରାଧାଙ୍କୁ ସଙ୍ଗରୁ କ୍ଷଣେ ନୋହିବ ଛଡ଼ା ॥
ମୋର ଏତେକ ମାଗୁଣି କୁଳରକ୍ଷା ନିମନ୍ତେ ।
ବ୍ରଜେଶ୍ୱରୀ ଚିନ୍ତାମଣି ବଧୂ ଲଭେ ଯେମନ୍ତେ ॥
ଶୀଘ୍ର ଆସି କରି ମଧ୍ୟାହ୍ନରେ ଅର୍କ ଅର୍ଚ୍ଚନ ।
ସନମତ ପ୍ରମୋଦରେ କୁନ୍ଦଲତା ବଚନ ॥
ନିଜ ଉରେ କର ଦେଇ ବୋଲେ ଲାଗିଲୁ ମୋତେ ।
ବ୍ରଜେଶ୍ୱରୀ ଚିନ୍ତାମଣି ବଧୂ ଲଭେ ଯେମନ୍ତେ ॥
ପ୍ରହରେକ ପାକ ସମ୍ପାଦିଣ ଆଣିବ ଜେମା ।
ସତ୍ୟ ଅସତ୍ୟ ମୋ ବାଣି ଆଜଠାରୁ ଜାଣିମା ॥
ସଖୀଜନେ ଶୁଣି ବେଗେ ରାଧାପ୍ରମୁଖେ କହି ।
ଅନନ୍ତରେ ହରଷ ବୋଲେ ଏମନ୍ତଅଛି କାହିଁ ॥
କାହା ବଧୂ ପର ଘରେ ଗମେ ରାନ୍ଧଣୀପଣେ ।
ନିଜ ଝିଅ ପଠିଆନ୍ତି ବ୍ରଜେଶ୍ୱରୀ ବରଣେ ॥
ସୂର୍ଯ୍ୟପୂଜା କରି ଯାଏ ତେଣୁ ଆସି ନ ପାରେ ।
ଗୃହଚରଗୃହରେ ତନୁ ଅତି ଅଶକତରେ ॥
ଶାଶୁ ବୋଲନ୍ତି ଗୋ ମାଏ ଲୁଚିଯାଇ ତୁମ୍ଭର ।
ସେହୁ ବ୍ରଜେଶ୍ୱରୀ ସବୁଦିନେ ହିତ ଆମ୍ଭର ॥

ପର ନୁହନ୍ତି ଆପଣା ବୋଲି ତାଙ୍କୁ ଜାଣିବା ।
ମୋର ତାହୁଁ ଶତଗୁଣେ ଇଷ୍ଟ କରି ମାନିବା ॥
ଗୃହଚରଗୃ ଏବେ ତୁମ୍ଭଙ୍କୁ କିଛି ନ ଲାଗୁ ।
ତୁମ୍ଭ ନନ୍ଦ ଗୋରସ ଆଦି ରାନ୍ଧ ସଯୋଗୁ ॥
ନନ୍ଦମନ୍ଦିରେ ସଜନୀବୃନ୍ଦ ଘେନି ବିଧାନେ ।
ପାକ ସମ୍ପାଦି ତପନ ପୂଜା ଅର୍ଘ୍ୟ ମଧ୍ୟାହ୍ନେ ॥
କୁନ୍ଦଲତା ଅମ୍ଭ ବିଶ୍ୱାସ ବଚନରେ ଥିବ ।
ଯଶୋବନ୍ତୀ ବଧୂ ପ୍ରହରେକ ରାନ୍ଧି ଆସିବ ॥
କୁନ୍ଦଲତା କରେ କର ଦେଇ ଏତେକ କହି ।
ତୁମ୍ଭେ ଘେନି ଆସି ସୂର୍ଯ୍ୟପୂଜା କରାଅ ରାଈ ॥
ପୁଣି ଲଳିତା ବିଶାଖା ସଖୀଗଣଙ୍କୁ କହେ ।
ରାଈ ରକ୍ଷାପାଳ କରି ବେଗେ ଆଣିବ ଗୃହେ ॥
ଶାଶୁ ଆଜ୍ଞାପାଇ ତୋଷ ରାଧା ସଜନୀବୃନ୍ଦେ ।
କୁନ୍ଦଲତା ଘେନି ନନ୍ଦପୁର ଗଲେ ଆନନ୍ଦେ ॥
ରାଈ ଆସିବାକୁ ଯଶୋବନ୍ତୀ ପଥ ନିରେପେ ।
ଏମନ୍ତେଣ ସଖୀ ସଙ୍ଗେ ରାଧା ମିଳେ ସମୀପେ ॥
ପାଦେ ଓଳଗନ୍ତି କୋଳ କରି ଯଶୋଦା ଘେନେ ।
ନବବଧ ନବପ୍ରବେଶରେ ଆନନ୍ଦ ଯେହ୍ନେ ॥
ଶିର ଆଉଁସି ଆଘ୍ରାଣ କରି କଲ୍ୟାଣ ବାଣୀ ।
ପତି ସଉଭାଗୀ ସୁଲକ୍ଷଣୀ କୁଳମଣ୍ଡନୀ ॥
ରୋହିଣୀ ପାଶେ ଆନନ୍ଦେ ଯେତେ ସଜନୀଗଣ ।
ପାଦେ ଓଳଗନ୍ତେ କର ଧରି କରେ କଲ୍ୟାଣ ॥
ସଖୀ ଜଣେ ଜଣେ ଓଳଗିଲେ ସମ୍ଭାବନାରେ ।
ପାଦ ପଖାଳିଣ ପାକଶାଳେ ଗଲେ ଆଦରେ ॥
କୁନ୍ଦଲତା କହେ ଜଟିଳାର ବଚନ ଯେତେ ।
ଶୁଣି ନନ୍ଦରାଣୀ ବଧୂକୁ ପ୍ରଶଂସେ ବହୁତେ ॥
ରୋହିଣୀର ସଙ୍ଗେ ରାଈ ଯାଇ ପାକ ସମ୍ପାଦି ।
କରି ଲାଗିବା ମାତ୍ରକେ ହୁଏ ସକଳ ସିଦ୍ଧି ॥
ସଖୀ ଲଳିତା ବିଶାଖା ଚିତ୍ରା ଚମ୍ପକଲତା ।
ରଙ୍ଗଦେବୀ ଯେ ସୁଦେବୀ ତୁଙ୍ଗବିଦ୍ୟା ସହିତା ॥
ଇନ୍ଦୁରେଖା ଚନ୍ଦ୍ରମୁଖୀ ଜ୍ୟେଷ୍ଠା ଧନିଷ୍ଠା ଆଦି ।
ପ୍ରିୟମାଳତୀ ବାସନ୍ତୀ ସେ ତୁଳସୀ ପ୍ରସିଦ୍ଧି ॥
ରୂପମଞ୍ଜରୀ ଗୁଣମଞ୍ଜରୀ ରତ୍ନମଞ୍ଜରୀ ।
ଏହୁ ଆଦି ଏକ ଏକ ଆଉତକ ଆବୋରି ॥

ଦେଖି ଦାସୀଙ୍କି ଲଗାଇ ଫଳମୂଳ ପଲ୍ଲବେ ।
ଜନ୍ତି ତୋହାରୁ ସେବକେ ଖୋଜାନ୍ତି ସେ ସୁଲଭେ ॥
ନାନାବିଧ ବ୍ୟଞ୍ଜନକୁ ପରିଜନେ ସଂଯୋଗି ।
ଯେତୁ ସହିଁକି ସେ ଲୋଡ଼ା ସେତୁ ଦ୍ରବ୍ୟ ନିଯୋଗି ॥
ଜିରା ଜାଇଫଳ ତେଜପତ୍ର ମେଥି ମରିଚ ।
ହିଙ୍ଗୁ ଲବଙ୍ଗ ଗୁଆଣି ଶ୍ରୀକର୍ପୂର ଏଲାଚ ॥
ଅଦା ଲବଣ ତିନ୍ତିଡ଼ିରସ ମିଠାଶର୍କରେ ।
ଷଡ଼ରସରେ ଯୋଗାଡ଼ ସର୍ବ ଘୃତପକ୍ୱରେ ॥
ଶାକ ଶାକରି ଘଣ୍ଟାମୁଗ ମହୁର ଘଣ୍ଟାତଳଆ ।
ଏକେବେଳ ତିନି ପରିବା ମିଶାଣି କରିବା ॥
ମଧୁ ରୁଚି ମନରୁଚି କରି ମରିଚପାଣି ।
ଏକ ଅନେକ ପ୍ରକାରେ ତାହା କେ ପାରେ ଗଣି ॥
ଫଳମୂଳ ଭକ୍ଷ୍ୟ ଆଦି ତିନିଶହ ବ୍ୟଞ୍ଜନ ।
ଅତି ଯତନେ ଯେମନ୍ତେ କୃଷ୍ଣ ମନରଞ୍ଜନ ॥
କ୍ଷୀରି ଶିଖରିଣୀ ଖିରସା ଖେଚଡ଼ି ବାଟୁଲା ।
ଦଧିକଡ଼ି ମାଠରୁଆ ପରିପାକେ କୋମଳା ॥
ନାନାବର୍ଣ୍ଣେ ଲୁଲସାବକ୍ଷଭରି ଚଣ୍ଡୁଳେ ।
ସର ଦୁଧସାର ନାରିକେଳ ରସ ସାକରେ ॥
ଘୃତ ପୂରାଇ ବିବିଧ ପୁରି ଖଣ୍ଡମିଶାଇ ।
କେତେ ପ୍ରମାଣେ ଜଡ଼ାଇ କସ ଦୁର୍ଗନ୍ଧ ବୁଡ଼ାଇ ॥
ନାନାପ୍ରକାରେଣ ଲଡ଼ୁ ବଡ଼ା ମହାପଷ୍ଟିକ ।
କୃଷ୍ଣ ବଡ଼ ଶ୍ରଦ୍ଧା ଅମୃତକେଳିରେ ଅଧିକ ॥
ନାଡ଼ ପାମ୍ପଡ଼ ନିପୁଣି ଝିଲି ଗୋଧୂମରୁଟି ।
ସରପୁଳି ଶ୍ରୀକର୍ପୂରକେଳି କୃଷ୍ଣ ରୁଚନ୍ତି ॥
ନାରିକେଳରସ କୋରା ରସ ଚନ୍ଦ୍ର ଉଜ୍ଜଳା ।
ଖଇଘୃତେ ପୋଇଖଣ୍ଡ ଚୂର୍ଣ୍ଣକର୍ପୂର ମେଳା ॥
ଏହିମତେଣି ଅନେକବିଧ ପାକ ସମ୍ପାଦ ।
କାମଧେନୁ ପ୍ରସାଦରୁ ହୁଏ କ୍ଷଣେକେ ସିଦ୍ଧି ॥
ନବମୃତ୍ତିକା ପାତ୍ରରେ ଭିନ୍ନ ଭିନ୍ନ ରଖାଇ ।
ଯଶୋଦାଙ୍କୁ ଆଣି ପରିଗୁନ୍ଦ କହି ଦେଖାଇ ॥
ବେଳଘଡ଼ିମାନେ ଏତେ କାର୍ଯ୍ୟ ଦେଖି ପ୍ରଶଂସେ ।
ଉତ୍ତକାଳେ ଭୃତ୍ୟଜନ ଯାଇ ଗୋଷ୍ଠକୁ ଯେପେଷେ ॥
ବେଗେଣ ରାମକୃଷ୍ଣଙ୍କୁ ଗୋପକୁମାର ସଙ୍ଗେ ।
ବୃଷଭାନୁନନ୍ଦିନୀର ପାକ ଭୁଞ୍ଜିବେ ରଙ୍ଗେ ॥

ଏକ ପରେ ଆରେକକୁ ପୁଣ ପୁଣ ପେଶନ୍ତି ।
ଦୁଧଭାରମାନ ଘେନି ଗୋପାଳେ ଆସନ୍ତି ॥
ମାଏ ପଚାରନ୍ତି କାହ୍ନୁ ମୋର କି କରୁଅଛି ।
କେହୁ କହେ କୁମର କୁମର ଗାଈ ଦୁହୁଁଛି ॥
କେହୁ ବୋଲନ୍ତି ସେ ବୃଷେ ବୃଷେ ଯୁଦ୍ଧ ଲଗାଇ ।
ମହାବଳୀସ୍ୱାର ଷଣ୍ଢକୁ ନ ପାରେ ଭଙ୍ଗାଇ ॥
କେହୁ ବୋଲନ୍ତି ବାଳକମେଳେ ଲଉଡ଼ି ଖେଳେ ।
କେହୁ ବୋଲେ ଘଣ୍ଟବେଣୀଆଣି ବନକୁ ଗଲେ ॥
ଶୁଣି ଆରତ ଉତ୍ତରେ କେ ମାଏ ଲୋକବରଗେ ।
ମୋର ସପଥ ଦେଇ କୃଷ୍ଣକୁ ଆଣିବ ବେଗେ ॥
ଆଜ ସୁହାଙ୍କୁ ଦେଖିଛି ପେଟ ଯାଉଛି ପଶି ।
ମାସଉପବାସୀ ପ୍ରାୟେ ଅତି ଦୁର୍ବଳ ଦିଶି ॥
ଭୃତ୍ୟଗଣ ପେଷି ଖଣ୍ଡେଦୂର ଯାଇ ଅନାଇଁ ।
ଦୁଧଭାର ଚଳାଇଣ ପଛେ ଥାଏ କହ୍ନାଇ ॥
ଘନ ଘନ ଭୃତ୍ୟଜନେ ଦେଖି କରେ ହକରା ।
ଆଜ ବୃଷଭାନୁ ଜେମା ଆଣି ପାକେ ତତ୍ପର ॥
ଶୁଣି ଯାନନ୍ଦେ ସୁବଳ ମଧୁମଙ୍ଗଳେ ଗୁହିଁ ।
ଜାଣି ଇଷିତେ ଇଙ୍ଗିତେ ମଧୁମଙ୍ଗଳ କହି ॥
ଭୃଙ୍ଗବିଚ୍ଛେଦରେ ପଦ୍ମ ମକରନ୍ଦ ଉନ୍ମତ୍ତେ ।
ଯେହ୍ନେ ମୁଜ ଣ ପଦ୍ମିନୀ ଆମେ କାନ୍ତପୁରତେ ॥
ପୁଣି ରକ୍ତକ ସେବକ ଯାଇ କୃଷ୍ଣଙ୍କୁ କହେ ।
ବେଗେ ପୁରେ ଚଳ ଆଜ୍ଞା ଦେଇଅଛନ୍ତି ମାଏ ॥
ବୃଷଭାନୁ ଦୁହିତାକୁ ଆଣି ପାକସଂଯୋଗେ ।
ଷଡ଼ରସରେ ଭୋଜନ ସର୍ବକୁମାର ସଙ୍ଗେ ॥
ଶୁଣି ନାଚେ ବଟୁ ଆନନ୍ଦରେ ହେଣ୍ଡି କି ମାରି ।
ଆଜ ଭୁଞ୍ଜିବାରେ ମିଷ୍ଟାନ୍ନାଦି ଉଦର ଭରି ॥
ପୁଣି କୃଷ୍ଣ ଧରି କହେ ତୋତେ ମୁରଲୀବଣ ।
ମୋତେ ତୋର ପଞ୍ଚ ଲଡ଼ୁ ଦେବୁ କର ପ୍ରମାଣ ॥
ହଉ ହଉ ଦେବା ବୋଲି କୃଷ୍ଣଚନ୍ଦ୍ର ହସନ୍ତି ।
ରାମ ସୁଦାମ ସୁଭଦ୍ର ଆଦି ଆସି ମିଳନ୍ତି ॥
ପୁରେ ପ୍ରବେଶ ହୁଅନ୍ତେ ମା ବୋଲନ୍ତି ସ୍ନେହରେ ।
ଏତେ ବିଳମ୍ବ ଯେ କଲେ ଦୁଃଖ ଦେଇ ମୋହରେ ॥
ସର୍ବେ ସ୍ନାନ ସୁବେଶ ହୋଇଣ ଭୋଜନେ ବସ ।
ଶୁଣି ଜନନୀ ବଚନ ଗୋପପୁଏ ହରଷ ॥

ସ୍ନାନ ସୁବେଶ ହେବାକୁ ଯେଝାପୁରକୁ ଗଲେ ।
ପୁରମାଜଣା ମଣ୍ଡପେ କୃଷ୍ଣ ବିଜୟ କଲେ ॥
ସୁଗନ୍ଧେଣ ତୈଳ ପୁଷ୍ପ ସୁବାସିତ ତଇଲେ ।
ଅଙ୍ଗମର୍ଦ୍ଦନ କରିଣ ସ୍ନାନ ସୁବାସ ଜଳେ ॥
କରେ ରକ୍ତକ ମାର୍ଜନ ପ୍ରକ୍ଷାଳନ ଶ୍ରୀଅଙ୍ଗ ।
କଟିଦେଶେ ପୀତବାସ ଲଗି କରେ ସାରଙ୍ଗ ॥
ପାଦେ ନୂପୁର କରେ ବଳୟ କଟି କିଙ୍କିଣୀ ।
ଉରେ ହାର ମାଳପଦକ ଏ କୌସ୍ତୁଭମଣି ॥
କର୍ଣ୍ଣେ କୁଣ୍ଡଳ ନାସେ ମୁକୁତା ଭାଲେ ତିଳକ ।
ଗନ୍ଧଚନ୍ଦନ ସର୍ବାଙ୍ଗେ କରେ ନାନାଚସକ ॥
ବିମ୍ବାଧରେଣ ତାମ୍ବୁଳ ଲଗି କରେ ଜମ୍ବିଳା ।
ନର୍ମଦାର ପୁତ୍ର ସେବେ ଗନ୍ଧ କୁସୁମମାଳା ॥
ଚୂଳ ବନାଇଣ ସୁବଳ ନାନା କୁସୁମେ ମଣ୍ଡି ।
ପଦ୍ମପାଦେ ଦାସ ଦେଲା ରତ୍ନପାଦୁକା ଯୋଡ଼ି ॥
ନବପ୍ରିୟ ପୁରପ୍ରବେଶେଣ ଯେହ୍ନେ ବଲ୍ଲଭ ।
ଅନୁରାଗେ ଉଦବେଗ ହଇ ଅତି ଦୁର୍ଲ୍ଲଭ ॥
ବେଗେ ବଢ଼ାକର ମାତଃ ମୋତେ କ୍ଷୁଧା ଲଗୁଛି ।
ମାଏ ବୋଲନ୍ତି ହେ ବାବୁ ସବୁ ସଂଯୋଗ ଅଛି ॥
ସର୍ବ କୁମାରଙ୍କୁ ଘେନ ପାଦପଖାଳ ବସ ।
ବୃଷଭାନୁଜେମା ପାକ ଭୁଞ୍ଜି ଉଦର ତୋଷ ॥
ଶୁଣି ଚରଣ ପଖାଳ ହଇ ଭୋଜନସ୍ଥଳେ ।
ହେମଆସନେ ବସିଲେ ସର୍ବକୁମାର ମେଳେ ॥
କୃଷ୍ଣ ଦକ୍ଷିଣେ ସୁଭଦ୍ର ବଳଭଦ୍ର ଶ୍ରୀଦାମେ ।
ମଧୁମଙ୍ଗଳ ସୁବଳ ଆଦି ବସିଲେ ବାମେ ॥
ରତ୍ନଝରରେ ସୁବାସବାରି ସକଳ ପାଶେ ।
ରାଧା ହେମପାତ୍ରେ ସଂଯୋଗେ ରୋହିଣୀ ପରଶେ ॥
କ୍ରମେ ପ୍ରବେଶ କରିଣ ସର୍ବଠାବରେ ଦେଲେ ।
ସ୍ୱାଦସଉରଭେ ସର୍ବବାଳେ ଭୋଜନ କଲେ ॥
ଯଶୋବନ୍ତୀ ଦ୍ରବ୍ୟ ଚହ୍ଲାଇ ଯତନେ ଭୁଞ୍ଜାଇ ।
ଏକ ଆରେକ ଛଳାଇ ପୁତ୍ର ମନ ରଞ୍ଜାଇ ॥
ଯହିଁ ଯାହାର ସ୍ପୃହା ତାହା ଅଣାଇଦିଏ ।
ହାସରସେ ବିଚୁଲିଭେ ଖାଇବାର ଉପାୟେ ॥
ଅମା ଏରୂପ ରନ୍ଧନ ଯେବେ ନିତ୍ୟେହିଁ କର ।
କୃଷ୍ଣ ମନରୁଚି ହେବ ଭୁଞ୍ଜି ଉଦର ଭର ॥
ମା ବୋଲନ୍ତି ପେଟଭରି ଯେବେ ଭୁଞ୍ଜ କହ୍ନାଇ
ତେବେ ଏରୂପ କରିବ ରାଈ ନିତ୍ୟ ଅଣାଇ ॥
ରାଈଗବାକ୍ଷ ଭିତରେ ଦେଖେ ଭୋଜନ ଲୀଳା ।
ମୁଖପଦ୍ମ ମକରନ୍ଦେ ନେତ୍ରଭ୍ରମର ମେଳା ॥
କୃଷ୍ଣଲୋଚନ ଚକୋର ଯହିଁ ଚନ୍ଦ୍ରବଦନେ ।
ବୈନଜନ ଦରଶନ ସ୍ପରଶନ ମଦନେ ॥
ପୂର୍ଣ୍ଣ ଅମୃତ ଭୋଜନେ ସର୍ବେ ଉଦର ଭରି ।
କୃଷ୍ଣ ସବୁ ଦ୍ରବ୍ୟ ଅଧେ ଅଧେ ଭୋଜନ କରି ॥
ଯତ୍ନେ ଧନିଷ୍ଠା ଥୋଇ ଅବଶେଷ ପାତ୍ରେ ପୂରାଇ ।
ଭୃତ୍ୟଜନ ଜଳ ଆଚମନ କୁଣ୍ଡେ କରାଇ ॥
କୃଷ୍ଣ ତାମ୍ବୁଳ ଭୁଞ୍ଜି ପହୁଡ଼େ ପଲଙ୍କପରେ ।
ଦେବୀଆଜ୍ଞା ଘେନଭୁଞ୍ଜେ ରାଈ ସଖୀ ସଙ୍ଗରେ ॥
ସର୍ବେ ତୋଷ ଭୋଜନରେ ରାଧା କୃଷ୍ଣ ଶେଷରେ ।
ଆଚମନ ମୁଖବାସ ଦାସ ସେବେ ପାଶରେ ॥
ଏହୁ ପଞ୍ଚମବୋଲି ସହସ୍ରପଦ ଶରଣେ ।
ଏଣେ ଭକତ ହୁଏ ନିର୍ଭୟ ଜନ୍ମମରଣେ ॥
ଶୁଣି ବଇଷ୍ଣବ ଗୋସାଇଁ ମୋ ଦୋଷ ନ ଧର ।
ସଖୀଭାବ ଉପାସନା ଜନେ କର ବିଚାର ॥
ଅନ୍ୟେ ପ୍ରକାଶ ନ କର ମୋର ବିନୟ ଘେନ ।
ଦନ୍ତେ ତୃଣ ଧରିଣ ମୋର ଏତେ ମାଗୁଣି ॥
ସଂସ୍କୃତେ ରୂପସନାତନ ଗୋସାଇଁ ଲେଖି ।
ବିଷୟୀ ହେତୁରେ ପ୍ରାଣୀ ନ ପାଇଲେ ତାଦେଖି ॥
ତେଣୁ ପରାକୃତ ଲେଖି ଆପଣାକୁ ବୁଝାଇ ।
ଦୁରାଚାର ପାଷାଣ୍ଡ ଏ ନାନାମତେ ଭଞ୍ଜାଇ ॥
ରାଧାକୃଷ୍ଣ ପ୍ରେମ ଗୂଢ଼ତର ନିଗମପର ।
ତେଣୁ ଶେଷଈଶଲୋକେ ଶେଷ ନୁହେ ଗୋଚର ॥
ଗାଢ଼ ଲଉଲ୍ୟ ନମ୍ରତା ହେଲେ ଏ ରସ ପାଇ ।
ଶ୍ରଦ୍ଧା ଶକ୍ତି ରୁଚି ଆଦି ଭାବେ ସଙ୍ଗେ ମିଳଇ ॥
ବହୁ ଜନ୍ମଜନ୍ମାନ୍ତରେ ସାଧୁ ସଙ୍ଗେ ସାଧନ ।
ଅସାଧୁର ସଙ୍ଗେ ଅରଜିଲ ଧନ ନିର୍ଦ୍ଧନ ॥
ଏହିହେତୁରୁ ସୁଜନେ ସାଧୁସଙ୍ଗ କରିବା ।
ଗୁରୁପାଦ-ନାବଆଶ୍ରେ ଭବସିନ୍ଧୁ ତରିବା ॥
ଆଶ୍ରେ କରି ଶ୍ରୀଗୁରୁ ଶ୍ରୀବୈଷ୍ଣବଚରଣ ।
ଦାଶରଥି ଦାସ ରାଧାଗୋବିନ୍ଦଙ୍କ ଶରଣ ॥

— * —

# ପ୍ରକାଶିତ ପୁସ୍ତକାବଳୀ

## ବୈଦିକ ସାହିତ୍ୟ



## ପୌରାଣିକ



## ଭଜନ, କୀର୍ତ୍ତନ ଓ ପଦାବଳୀ



## ଜୀବନୀ ଓ ସମାଲୋଚନା




ପ୍ରାପ୍ତିସ୍ଥାନ

**ଶ୍ରୀ ହରିସଂକୀର୍ତ୍ତନ ପ୍ରେସ**

ଓଡ଼ିଆ ବଜାର, କଟକ-୧

Printed at Shri Hari Sankirtana Press, Cuttack-1